# ଖୋଳ
(ଗଳ୍ପ ସଂକଳନ)

ଗାଳ୍ପିକ : ଭୂପେନ୍ ମହାପାତ୍ର

ପ୍ରକାଶକ :
**ଓଡ଼ିଶା ଲେଖକ ସମବାୟ ସମିତି ଲିଃ.**
କ୍ୱାଟରସ୍ ନଂ ୨୯/୪, ଟାଇପ୍ ଆଇ.ଭି.ଆର.
ଇଉନିଟ୍-୨, ଅଶୋକ ନଗର, ଭୁବନେଶ୍ୱର-୭୫୧୦୦୯

ଅକ୍ଷର : ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ : ଜଗନ୍ନାଥ ପ୍ରସେସ୍, କଟକ

ପ୍ରଚ୍ଛଦ : ବିଜୟ କୁମାର ପ୍ରଧାନ

ପ୍ରଥମ ପ୍ରକାଶ : ୨୦୦୧

ମୂଲ୍ୟ : ଟ ୭୫.୦୦ ମାତ୍ର

**I.S.B.N. 81- 86524 - 41 - X**

**KHOLA**
(Collection of Stories)

Author
**Bhupen Mahapatra**

Published By :
**The Orissa Writer's Co-operative Society Ltd.**
Qrs. No, 29/4, Type-IVR, Unit-II,
Ashok Nagar Bhubaneswar-9

Laser Typeset
**Sarala Graphics,** Bhubaneswar

Printed at
**Jagannath Process,** Cuttack

Cover Design
**Bijaya Kumar Pradhan**

First Edition : **2001**

Price **Rs. 75.00 Only**

**I.S.B.N. 81- 86524 - 41 - X**

## ଉତ୍ସର୍ଗ

ପିଲାକାଳେ ମୁଁ ଯାହା କୋଳରେ ଶୋଇ ଶୋଇ ଅନେକ ଗଳ୍ପ ଶୁଣିଚି ଏବଂ ଯାହାକୁ ନେଇ ମୁଁ ଏବର କାହାଣୀ ତିଆରି କରିଚି ସେଇ ମୋର ମାଆକୁ ।

ଭୂପେନ୍

## ଏହି ଲେଖକଙ୍କର ଅନ୍ୟ କେତୋଟି କୃତି

| | | |
|---|---|---|
| ୧. | ପୃଥିବୀ ଓ ପୃଥିବୀ | (ଗଳ୍ପ ସଂକଳନ) |
| ୨. | ଗୋଟିଏ ମେଣ୍ଢାପଲ | ଗଳ୍ପ ସଂକଳନ |
| ୩. | ପ୍ରମିଳା | ଗଳ୍ପ ସଂକଳନ |
| ୪. | ଭାରତ ଭାଗ୍ୟବିଧାତା | ବ୍ୟଙ୍ଗଗଳ୍ପ ସଂକଳନ |
| ୫. | ପ୍ରଥମ ପୃଥିବୀ | ଉପନ୍ୟାସ |
| ୬. | ଉପତ୍ୟକାର ଉପକଥା | ଭ୍ରମଣ କାହାଣୀ |
| ୭. | ଅପୂର୍ବ ପୂର୍ବ | ଭ୍ରମଣ କାହାଣୀ |
| ୮. | ଲୁ ତଥା ଅନ୍ୟ କାହାନୀୟା | ହିନ୍ଦୀ ଗଳ୍ପ ସଂକଳନ |
| | ଅନୁବାଦ- କୁମାର ହସନ ଓ ଜୟନ୍ତୀ ରଥ | |
| ୯. | ରବୀନ୍ଦ୍ର ନାଥଙ୍କ ଚର୍ଚ୍ଚିତ ଚିଟାଉ | ୧୦୭ ଖଣ୍ଡ ଚିଠି |
| | ଅନୁବାଦ-ଅମୀୟ ବସୁ ଓ ଭୂପେନ ମହାପାତ୍ର | |
| ୧୦. | ଚନ୍ଦ୍ରସେଣାର ଚନ୍ଦ୍ରାଲୋକ | ବ୍ୟଙ୍ଗ ଗଳ୍ପ ସଂକଳନ |

## ପ୍ରକାଶ ଅପେକ୍ଷାରେ

| | |
|---|---|
| ହାତୀର ହିଷ୍ଟ୍ରି | ଗଳ୍ପ ସଂକଳନ |
| ବସନ୍ତ ଆସୁଛି | କବିତା ସଂକଳନ |

# ନିଜକଥା

ବହିଟିଏ ପ୍ରକାଶ ପାଇବାକୁ ଗଲାବେଳେ ମୁଖବଂଧ ଏକ ଅନିବାର୍ଯ୍ୟ ଆବଶ୍ୟକତା ନୁହେଁ, ତା ସତ୍ତ୍ୱେ କୁହାଯାଏ ବହି ବିଷୟରେ ବା ନିଜ ସୃଷ୍ଟି ସମ୍ପର୍କରେ କିଛି କହନ୍ତୁ । ହୁଏତ ଏଇଥିପାଇଁ ଯେ ଲେଖାଗୁଡ଼ିକ ଭିତରେ ଅନେକ ସମୟରେ କିଛି ଅକୁହା କଥା ରହି ଯାଇଥାଏ । ତାକୁ ପ୍ରକାଶ କରିଦେଲେ ଲେଖକ ଓ ପାଠକ ଭିତରେ ସହଜରେ ଯୋଗସୂତ୍ରଟିଏ ସ୍ଥାପିତ ହୋଇଯାଏ ।

କିନ୍ତୁ ମୋର ଏ ଗଳ୍ପଗୁଡ଼ିକ ନୂଆ ନୁହେଁ । ପୂର୍ବରୁ ଏଗୁଡ଼ିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ପ୍ରାୟ ଗୋଟାଏ ପାଠକୀୟ ଚର୍ଚ୍ଚାର ବଳୟ ଭିତରକୁ ଆସି ସାରିଛି । ତା ଭିତରୁ ଅନ୍ତତଃ ଦୁଇଟି ଗଳ୍ପ ଓଡ଼ିଶା ବାହାରକୁ ମଧ୍ୟ ଯାଇ ପାରିଛି । ମୁଖ୍ୟ ଗଳ୍ପ 'ଖୋଳ' ହିନ୍ଦୀରେ ଅନୂଦିତ ହୋଇ 'ସମକାଳୀନ ଭାରତୀୟ ସାହିତ୍ୟ'ରେ ପ୍ରକାଶ ପାଇଲା ପରେ ତେଲୁଗୁ, ରାଜସ୍ଥାନୀ, ବଂଗଳା, ଉର୍ଦ୍ଦୁ, ଅସମୀୟା ଓ ମାଲାୟଲମ ପ୍ରଭୃତି ଭାଷାରେ ମଧ୍ୟ ପ୍ରକାଶ ପାଇ ସାରିଛି । ସେମିତି 'ଅନ୍ଧାରରେ ଅନିରୁଦ୍ଧ' ଯାହା ଦିନେ ମାତ୍ର ଗୋଟିଏ ଚରିତ୍ରର ଗଳ୍ପ (ଫର୍ମ ଦୃଷ୍ଟିରୁ) ଏବଂ ତାର ଅଭିନବ ବକ୍ତବ୍ୟ ପାଇଁ ପ୍ରଚୁର ପାଠକୀୟ ଆଦର ଲାଭ କରିଥିଲା; ତାହା ପରବର୍ତ୍ତୀ ପର୍ଯ୍ୟାୟରେ ହିନ୍ଦୀରେ ଅନୂଦିତ ହୋଇ 'ଭାଷା'ରେ ପ୍ରକାଶ ପାଇଲା ପରେ ଏବେ ଆଉ କେତୋଟି ଭାଷାରେ ମଧ୍ୟ ଅନୂଦିତ ହେବାକୁ ଯାଉଛି । କେହି କେହି ଏହାକୁ ମୋର ସର୍ବୋତ୍କୃଷ୍ଟ ଗଳ୍ପ ବୋଲି କହିଥିଲେ ମଧ୍ୟ ମୁଁ ସେମାନଙ୍କୁ ସେତେବେଳେ ମୋ ପ୍ରତି ତାଙ୍କର ଅସୀମ ଉଦାରତା କହି କଥାଟାକୁ ଆଡେଇ ଦେଇଛି । ଆଉ କେହି କେହି ତାକୁ ସମାଲୋଚନା କରି 'ଗଳ୍ପ ନୁହେଁ' ବୋଲି ମଧ୍ୟ କହିଛନ୍ତି । ମୁଁ କିନ୍ତୁ ସବୁବେଳେ ଉଭୟ ଆଲୋଚନା ଓ ସମାଲୋଚନାକୁ ସମାନ ଭାବରେ ସମ୍ମାନ ଦେଇ ଆସିଚି । କାରଣ ଏ ଦୁଇଜଣହିଁ ମୋ ଲେଖାକୁ ଠିକ୍ ରାସ୍ତାରେ ଯିବାରେ ସାହାଯ୍ୟ କରିଚନ୍ତି ।

ଏ ସଂକଳନରେ ଥିବା ପ୍ରତ୍ୟେକଟି ଗଳ୍ପର ସ୍ୱର ଓ ସ୍ୱାଦ ଭିନ୍ନ । ଏହାହିଁ ସାଧାରଣତଃ ସବୁ ସଂକଳନରେ ହୋଇଥାଏ । କିନ୍ତୁ ଗୋଟିଏ ବିଶେଷ ଅନୁଭବ କଥା ମୁଁ ନିଶ୍ଚୟ କହିବି । ଏଥିରେ ଥିବା 'ମୋତେ ଟିକିଏ ସ୍ନେହ ଦେବ' ଗଳ୍ପଟି ଲେଖିସାରିଲା ପରେ ମୋର ମନେ ହେଲା ଏଇଟି ଯେମିତି ମୋର ଶେଷ ଗଳ୍ପ । ତାପରେ ହୁଏତ ଆଉ ଲେଖି ପାରିବି ନାହିଁ ।

ଏ ଗଳ୍ପଟି ପାଇଁ ଏବେ ମଧ୍ୟ ମୋ ପାଖକୁ ଚିଠି ଆସୁଚି । କିନ୍ତୁ ସେଗୁଡ଼ିକ ପ୍ରଶଂସା ସୂଚକ ନୁହେଁ- ବରଂ ସେମାନଙ୍କ ଦୁଃଖ ଓ କ୍ଷୋଭ ସେଥିରେ ପ୍ରକାଶ ପାଇଚି- ମୁଁ ତାକୁ ମଧ୍ୟ ଗ୍ରହଣ କରିଛି ।

ସଂକଳନର ପ୍ରକାଶନ ଦାୟିତ୍ୱ ଓଡ଼ିଶା ଲେଖକ ସମବାୟ ସମିତି ଗ୍ରହଣ କରିଥିବାରୁ ମୁଁ ସେମାନଙ୍କ ଠାରେ ଗଭୀର କୃତଜ୍ଞତା ସ୍ୱୀକାର କରୁଚି ଏବଂ ଶେଷରେ ଗଳ୍ପଗୁଡ଼ିକ ଯେଉଁ ପତ୍ରିକାରେ ପ୍ରକାଶିତ ହୋଇ ପ୍ରଥମେ ଲୋକଲୋଚନକୁ ଆସିଥିଲା ମୁଁ ସେମାନଙ୍କ ଠାରେ ମଧ୍ୟ କୃତଜ୍ଞ ।

୧, ମାର୍ଚ୍ଚ, ୨୦୦୧ — ଭୂପେନ୍ ମହାପାତ୍ର
ରାଉରକେଲା

# ସୂଚୀପତ୍ର

# ମୋତେ ଟିକେ ସ୍ନେହ ଦେବ ?

ଚିତ୍ରା ସେଦିନ କଲେଜରୁ ଫେରି ଲମ୍ବ ହୋଇ ବିଛଣାରେ ଶୋଇ ପଡ଼ିଲା । ସେଦିନ କଲେଜରେ ପରୀକ୍ଷା ଚାଲିଥିଲା । ସେ ପରୀକ୍ଷାରେ ସମସ୍ତ ଦାୟିତ୍ୱ ପ୍ରିନ୍ସିପାଲ୍ ତା ଉପରେ ନ୍ୟସ୍ତ କରିଥିଲେ । ଅନ୍ୟ ଲେକଚରରଙ୍କ ଅପେକ୍ଷା ପ୍ରିନ୍ସିପାଲ ଚିତ୍ରାକୁ ବେଶି ବିଶ୍ୱାସ କରନ୍ତି । ଅନେକ କାରଣରୁ ଚିତ୍ରା ଯେ ବେଶି ନିର୍ଭରଯୋଗ୍ୟ, ଏ କଥା ସେ ବୁଝନ୍ତି । ସେ ଏହା ମଧ୍ୟ ଜାଣନ୍ତି ଯେ ଚିତ୍ରାକୁ ଯେଉଁ କାମ ଦେଲେ ସେ ହସି ହସି ଗ୍ରହଣ କରେ ଏବଂ ବିନା ବାକ୍ୟବ୍ୟୟରେ କାମ କରିଯାଏ । ଏପରିକି ଛାତ୍ରମାନଙ୍କର ଯେକୌଣସି ସମସ୍ୟାକୁ ଚିତ୍ରା ସହଜରେ ସମାଧାନ କରିଦିଏ । ଏଥିପାଇଁ ପ୍ରିନ୍ସିପାଲ କେବଳ ନୁହନ୍ତି, ଅନ୍ୟମାନେ ମଧ୍ୟ ସମସ୍ୟା ଉପୁଜିଲେ ଚିତ୍ରାକୁ ଖୋଜନ୍ତି ।

ସେଦିନ ପରୀକ୍ଷାରେ କପିକୁ କେନ୍ଦ୍ର କରି ଗୋଳମାଳଟିଏ ସୃଷ୍ଟି ହେଲା । ସବୁଠି ସବୁବେଳେ କିଛି ଲୋକ ଥାଆନ୍ତି, ଯେଉଁମାନେ ତାଙ୍କ ପିଲାଙ୍କୁ କପି କରିବାକୁ ଉତ୍ସାହିତ କରନ୍ତି ଏବଂ ସାହାଯ୍ୟ ମଧ୍ୟ ଯୋଗାଇ ଦିଅନ୍ତି । କିଛି ଲେକଚରର ମଧ୍ୟ ସେମାନଙ୍କୁ ସାହାଯ୍ୟ କରନ୍ତି । ଏଇ ସବୁ ଲୋକଙ୍କ ସାଙ୍ଗରେ ଚିତ୍ରାର ମୋଟେ ପଡ଼େନା।

ଗୋଳମାଳଟା ସେଇଠି । ଚିତ୍ରା ଯେତେବେଳେ ଚୁପି ଚୁପି ଯାଇ ପିଲାଙ୍କ' ହାତଟାକୁ ଧରି କପି କାଗଜଟାକୁ ଛଡ଼େଇ ନେଲା, ପିଲାଟି ଚିତ୍କାର କରି କାନ୍ଦିଲା ଏବଂ କହିଲା ମେଡ଼ମ ମୋ ହାତକୁ ମୋଡ଼ି ଭାଙ୍ଗି ଦେଲେ । ବାସ୍, ତାପରେ ତାମସା ଦେଖ । ବାହାରେ ପୁଲିସ ଜଗୁଆଳିକୁ ଉପେକ୍ଷା କରି ବସିଥିବା କିଛି ଅଭିଭାବକ ଗୋଳମାଳ ଆରମ୍ଭ କରିଦେଲେ । ସେମାନଙ୍କ ସହିତ କିଛି ଅଧ୍ୟାପକ ମଧ୍ୟ ଯୋଗଦେଲେ । ପୁଲିସ ଆସିଲା କେସ୍ ହେଲା । କଲେଜ ଇଉନିୟନର ସଭାପତି ସଙ୍ଗେ ସଙ୍ଗେ ଚିତ୍ରାର ବଦଳି ଦାବୀ କରି ଅନିର୍ଦ୍ଦିଷ୍ଟ କାଳ ପାଇଁ ଧର୍ମଘଟର ଆହ୍ୱାନ ଦେଲେ । ଶେଷରେ ଏସ୍.ପି. ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ଆସି ଅବଶ୍ୟ କଥାର ସମାଧାନ କଲେ । ତାପରେ ପ୍ରିନ୍ସିପାଲ୍ଙ୍କ ରୁମ୍‌ରେ ଚିତ୍ରାକୁ କହିଲେ, ଆପଣ ଟିକିଏ ଟେକ୍ଟଫୁଲ କାମ କରନ୍ତୁ, ଯୋଉଥିରେ

ଆଡ଼ମିନିଷ୍ଟ୍ରେସନକୁ ଅକାରଣରେ ଅସୁବିଧାରେ ପଡ଼ିବାକୁ ନ ହୁଏ ।

ଚିତ୍ରା ସେତେବେଳେ ମନେ ମନେ ଜଳି ଯାଉଥିଲେ ମଧ କିଛି କହି ପାରି ନଥିଲା ।

ବିଛଣାରେ ପଡ଼ି ଚିତ୍ରା ସେ ଦିନର କଥା ସବୁ ମନେ ପକାଉଥିଲା । ବିଶେଷ କରି ସେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ କଥାଟା ଉପରେ ବେଶି ଜୋର୍ ଦେଉଥିଲା । ତାଙ୍କ ଆକ୍ଷେପ ତାକୁ ବେଶି ଆଘାତ୍ ଦେଇଥିଲା । ସେ ଭାବୁଥିଲା, କାନ୍ଦି ପକେଇବ କି ? ସହନଶୀଳତାର ତ ପୁଣି ଗୋଟିଏ ସୀମା ଅଛି । ପ୍ରକୃତରେ ତାର କିଛି ଦୋଷ ଥିଲା କି ?

ଯା' ଭିତରେ ଶାଶୁ ଯେ ଥରେ ଘର ଭିତରକୁ ପଶି ଆସି ଚିତ୍ରାର ଅବସ୍ଥା ଦେଖି ଫେରି ଗଲେଣି. ସେକଥା ସେ ଜାଣି ପାରି ନଥିଲା । ଏକପ୍ରକାର ମାନସିକ ଦହନରେ ସନ୍ତୁଳି ହେଉଥିଲା ଚିତ୍ରା । କର୍ତ୍ତବ୍ୟର ଆହ୍ବାନକୁ ସେ କେବେ ଏଡ଼େଇ ଯାଇନି । କର୍ତ୍ତବ୍ୟକୁ ସେ କେବେ ପଛ କରି ଦେଇନି । ଯେତେ ଦୁର୍ଦ୍ଧାନ୍ତ ରୂପ ନେଇ କର୍ତ୍ତବ୍ୟ ତା ଆଗରେ ଛିଡ଼ା ହେଲେ ବି ସେ ବରାବର ତାକୁ ସାମନା କରିଚି ।

ସୁଖର କଥା, ପ୍ରିନ୍ସିପାଲ ତାକୁ ସେଦିନ ସମର୍ଥନ କରିଥିଲେ ମଧ ଏସ୍.ପି କିମ୍ବା ଜିଲ୍ଲାପାଳ, ରାଜନୈତିକ କାରଣରୁ ହେଉ ବା ଅନ୍ୟ କିଛି କାରଣରୁ ହେଉ, ତାଙ୍କ କଥାକୁ କାନ ଦେଇ ନଥିଲେ । ଚିତ୍ରା ଭାବିଲା, ସତକୁ ସତ କହିବାରେ ସେମାନଙ୍କର ଏତେ ଡ଼ର କାହିଁକି ? ପ୍ରଶାସନ ପାଇଁ ଅଡୁଆ ସୃଷ୍ଟି କରୁଚି ବୋଲି ସେ କଅଣ ଟେକ୍ଟଲେସ୍ ହେଇଗଲା ? ଦଶବର୍ଷର ଚାକିରି ଭିତରେ ଚିତ୍ରା ଏପରି ମନ୍ତବ୍ୟ କେବେ ଶୁଣି ନଥିଲା । କଥାଟାକୁ ସେ ଯେତିକି ଅଧିକ ଭାବୁଥିଲା, ସେତିକି ଅଧିକ ଭାଙ୍ଗି ପଡୁଥିଲା । ଦୁଃଖ ଓ ଘୃଣାରେ ସେ ଭିତରେ ଭିତରେ କୁହୁଳି ଉଠୁଥିଲା ।

ପପୁ ପଶି ଆସିଲା ଏବଂ ତାର ରାଇମ୍ ବହିଟାକୁ ମାଆର ମୁଣ୍ଡ ପାଖରେ ମେଲି ଧରି ଗେହ୍ଲେଇ ହେଇ କହିଲା, ମମି, ମୋତେ ଏଇଟା ଶିଖେଇ ଦିଅନା । କାଲି ମୋତେ କ୍ଲାସ୍‌ରେ ପଚାରିବେ । ପପୁ ତାର ଛୋଟିଆ ହାତକୁ ମାଆର ବେକ ଚାରିପଟେ ଗୁଡ଼େଇ ଦେଇ ସମର୍ପଣ ଭଙ୍ଗୀରେ ଅନୁରୋଧ କଲା ।

ଚିତ୍ରା ଚିଡ଼ି ଉଠିଲା । ସେ ପପୁର କାନଟା ଧରି ଖଟ ତଳକୁ ଓହ୍ଲେଇ ଦେଲା ଏବଂ କହିଲା, ଏଇଟା କଅଣ ତୋର ପଢ଼ା ବେଳ ? ଯା ଏଠୁ ।

କାନ୍ଦି ଉଠିଲା ପପୁ । ଅତି କରୁଣ ଭାବରେ ସେ ଚିତ୍କାର କରି ଉଠିଲା ପପୁର କଅଁଳ କାନ ପାଇଁ ଚିତ୍ରାର କଠିନ ହାତଟା ଅନେକ ବେଶି ହେଇଗଲା ।

ସେ ପାଖରୁ ଶାଶୁ ଦଉଡ଼ି ଆସିଲେ, ଆରେ ଇଏ କଅଣ ହେଉଛି ? ତା ଉପରକୁ ତମମାନଙ୍କର ହାତ କେମିତି ଉଠେ କେଜାଣି ! କଅଣ ସେ ଦୋଷ କଲା

ଯେ ? ସେ ପପୁକୁ କୋଳେଇ ନେଲେ । ପପୁ ତଥାପି ବିକଳ ହେଇ କାନ୍ଦୁଥିଲା । ସବିତା ଦେବୀଙ୍କ ଛାତି ଭିତରଟା ଯେମିତି କିଏ କୋରି ବିଦାରି ପକାଉଚି । ସେ ତାକୁ ବାହାରକୁ ନେଇଗଲେ । ବଗିଚା ଭିତରେ ବୁଲିବୁଲି ବାଟବଣା କଂକିକୁ ଦେଖେଇ ତାକୁ ପପୁ ପାଇଁ ଧରିବାର ଗୋଟାଏ ମିଛ ଖେଳ ଆରମ୍ଭ କରିଦେଲେ ।

ପପୁ କାନରୁ ତଥାପି ଯନ୍ତ୍ରଣା ଯାଇ ନଥାଏ । ସେ ଧକେଇ ଧକେଇ କାନ୍ଦୁଥାଏ । ସବିତା ଦେଖିଲେ, ପପୁର କାନଟା ଖୁବ୍ ଲାଲ୍ ପଡ଼ି ଯାଇଚି । ତାକୁ କାନ୍ଧରେ ପକେଇ ଯେତେ ଭୁଲେଇବାକୁ ଚେଷ୍ଟା କଲେ ବି ସେ ଭୁଲୁନାହିଁ । ସେ ଶେଷରେ ତାକୁ ନିଜ ବେଡ୍ ରୁମ୍‌କୁ ନେଇ ଗଲେ ଏବଂ ବିଛଣାରେ ଶୁଆଇ ନିଜ ଗାଁ କଥା, ବାଘ ଛେଳି ଓ ବଣ ଜଙ୍ଗଲର ମିଛ ଗପ କହିବାକୁ ଲାଗିଲେ ।

ପପୁ ଗପ ଶୁଣିବାକୁ ଖୁବ୍ ଭଲ ପାଏ । ଗପ ପାଇଁ ସେ ତା ତାତି ଭଳି ବୋଉ ଡାକୁଥିବା ଢେଙ୍କେମାଙ୍କୁ ଅସ୍ଥିର କରି ପକାଏ ।

ପପୁର ସ୍କୁଲ ମାତ୍ର ଚାରି ଘଣ୍ଟା । ଆଠରୁ ବାର । ଏଇ କେତେଦିନ ହେଲା ସେ ତା' ବୋଉ ସହିତ ଏତେ ମିଶି ଯାଇଚି ଯେ ସବୁ କଥାରେ ସେ ବୋଉକୁ ବ୍ୟସ୍ତ କରି ପକାଏ । ସବିତା ମଧ ସବୁ କାମକୁ ପଛକୁ ପକେଇ ପପୁର ଆଦେଶକୁ ଅପେକ୍ଷା କରି ଥାଆନ୍ତି ।

ସେଦିନ କିନ୍ତୁ ପପୁ ଆଉ ବୋଉ ଠାରୁ ଗପ ଶୁଣିବା ଅବସ୍ଥାରେ ନଥିଲା । ସେ କାନ୍ଦୁ କାନ୍ଦୁ କହିଲା, ଆଜି ରାଇମ୍ ନ ଶିଖିଲେ ମୁଁ କାଲି ସ୍କୁଲକୁ ଯିବିନି, ବୋଉ । ମେଡ଼ମ ମୋତେ ପିଟିବେ । ସମସ୍ତଙ୍କ ସାମନାରେ କାନମୋଡ଼ି ଉଠ ବସ୍ କରେଇବେ ।

ସବିତାଙ୍କ ଭିତରେ ଗୋଟିଏ କୋହ ଧସେଇ ପଶି ଆସିଲା । ସେ ଯଦି ରାଇମ ଜାଣିଥାଆନ୍ତେ, ତେବେ ସେ ଏଇନେ ତାକୁ ଶିଖେଇ ଦିଅନ୍ତେ । କିନ୍ତୁ ହାୟ, ସେତିକି ଆଶୀର୍ବାଦ ସେ ଈଶ୍ୱରଙ୍କ ଠାରୁ ପାଇ ପାରି ନାହାନ୍ତି । ଅନ୍ୟ ଉପାୟ ନ ଦେଖି ସେ ଘାଗଡ଼ା ଗଳାରେ ପପୁକୁ କହିଲେ, ତୁ ମୋତେ ବ୍ୟସ୍ତ ହଅନା । ତୋ ମମିର ମନ ଆଜି ଭଲ ନାହିଁ । ଆଉ ଟିକିଏ ଯାଉ । ତା ମନ ଭଲ ହେଇଯିବ । ମୁଁ ତାକୁ କହିବି, ସେ ତୋତେ ଶିଖେଇ ଦେବ ।

କଥାଟା ପପୁର ହୃଦବୋଧ ହେଲା ନାହିଁ । ସେ କହିଲା, ମୁଁ ଥରକେ ନ ଶିଖି ପାରିଲେ ସେ ମୋତେ ଆହୁରି ମାରିବ ଯଦି ?

ସବିତା ପପୁର ସାରା ଦେହଟା ଆଉଁସି ପକେଇଲା । କହିଲେ, ''ନା, ନା, ତୋତେ କିଏ ମାରିବ ? ମୁଁ ପରା ସେଇଠି ବସିବି । ସେ ତୋତେ ଗୋଟିଏ ଗୋଟିଏ କହିବ, ଆଉ ତୁ ଗୋଟିଏ ଗୋଟିଏ ଶିଖି ଯିବୁ । ତୋର ଅସୁବିଧା ହେବ କାହିଁକି ?''

॥ ୧୨ ॥

''ସେ ଯଦି କହେ, ମୁଁ ଖାତା ଦେଖୁଚି । ଗୋଳମାଳ କରନା ?'' ପପୁ ଅସହାୟ ଆଖିରେ ବୋଉକୁ ଅନେଇଲା ।

''ଏମିତି କଥା ? ତେବେ ଠିକ୍ ଅଛି । ସେ ଯଦି ଖାତା ଦେଖୁଥିବ, ସେତେବେଳେ ଗୋଳମାଳ କଲେ ଅସୁବିଧା ହେବ । ତେବେ. ଏମିତି କରିବା, ମୁଁ ତୋ ଡାଡିକୁ କହିବି । ସେ ତୋତେ ଶିଖେଇ ଦେବ । କିନ୍ତୁ ତୁ କାହିଁକି ଏତେ କଥା ଭାବୁଚୁ ଯେ ?''

''ତମେ କିଛି ଜାଣିନ ବୋଉ । ଡାଡି ଆସିଲା ବେଳକୁ ତମେ ବି ଶୋଇ ଯାଇଥିବ, ସେ ତ ମୋ କଥା ମୋଟେ ଶୁଣନ୍ତିନି ।''

ସବିତା ଦେଖିଲେ, ପପୁ ପାଇଁ ତାଙ୍କର ଉତ୍ତରର ଭଣ୍ଡାର ଆସ୍ତେ ଆସ୍ତେ ସରି ଆସୁଚି । ତାପରେ ପପୁ ଯଦି ଆଉ କିଛି ପଚାରେ, ସେ ତାର କି ଉତ୍ତର ଦେବେ ?

ଚିତ୍ରା ଆସି ଠିଆ ହେଲା ଏବଂ ପପୁକୁ କହିଲା, ଆସିଲୁ, ତୋର କଅଣ ପଢ଼ା ଅଛି, ମୁଁ ଦେଖିବି ।

ସବିତା ଦେଖିଲେ, ଚିତ୍ରା ବୋଧେ ଗୋଟାଏ ବାଧବାଧକତାରେ ପଡ଼ି ଆସିଚି । ଖୁବ୍ ଗୋଟାଏ ସେମିତି ଆନ୍ତରିକତା ଥିଲା ପରି ଜଣା ପଡୁନି । ଯୋଉ ଭାବରେ ସେ ପପୁକୁ ଡାକିଲା, ସେଥିରୁ ଅନ୍ତତଃ ସେ କଥା ଜଣା ପଡୁଥିଲା ।

ମମିର ଡାକଶୁଣି ପପୁ ପୁଣି ଥରେ ମୁହଁଟାକୁ ବୋଉ କୋଳରେ ଲୁଚେଇ ପକେଇଲା । ସେ ଯେମିତି ତାକୁ ମୋଟେ ଚାହିଁବାକୁ ଇଚ୍ଛା କରୁନଥିଲା ।

ତାର ଅନିଚ୍ଛାଟା ସବିତା ବୁଝୁଥିଲେ ମଧ୍ୟ ଚିତ୍ରାକୁ ମନା କରି ପାରିଲେନି । ସେ ପପୁର ପିଠିରେ ହାତ ବୁଲାଇ ବୁଲାଇ କହିଲେ, ଯା ବାପା, ମମି କହି ଦେବ କହୁଚି । ପପୁ ତଥାପି ମୁହଁ ନ ଉଠେଇବା ଦେଖି ସେ ଚିତ୍ରାକୁ ହସି ହସି କହିଲେ, ଏବେ ଥାଉ ନ ହେଲେ ।

ଚିତ୍ରା ଦୁମ୍ ଦୁମ୍ ହେଇ ଚାଲିଗଲା । ଚିତ୍ରା ସେଠୁ ଚାଲିଗଲା ପରେ ସବିତା କହିଲେ, ନାଇଁ ବାପା, ଏମିତି କରନ୍ତିନି । ମମି କଥା ନ ମାନିଲେ ସେ ବେଶି ରାଗିବ ।

ସେମିତି ମୁହଁ ଲୁଚେଇ ପପୁ କହିଲା, ସେ ତ ସବୁବେଳେ ରାଗୁଚି ।

ଚିତ୍ରା ସେତେବେଳକୁ ଆଉ ଥରେ ଫେରି ଆସିଲା । ସେ ସାମାନ୍ୟ କ୍ରୋଧ ପ୍ରକାଶ କରି କହିଲା, ତୁ କଥା ନ ମାନିଲେ, ଅବାଧ ହେଲେ, ମୁଁ ତୋତେ ରାଗିବିନି ? ତୁ କଅଣ ଏଇ ଶିକ୍ଷା ପାଉଚୁ ସ୍କୁଲରେ ? ମୁଁ ତୋ ମେଡମକୁ ଫୋନ୍ କରୁଚି ।

ପପୁ ଆହୁରି ଡ଼ରିଗଲା । ସେ ତା ବୋଉକୁ ଦୁଇ ହାତରେ ଜାବୁଡ଼ି ଧରିଲା

ଏବଂ ପୁଣି ଥରେ କଇଁ କଇଁ ହେଇ କାନ୍ଦି ଉଠିଲା । ସବିତା କହିଲେ, ନାଇଁ ସେ ତୋତେ ସେମିତି ଡରଉଚି ନା, ସେ କଅଣ ସତରେ ତୋ ମେଡ୍‌ମକୁ କହିବ ?

ଗେଟ୍‌ରେ କାର ପଶିବାର ଶବ୍ଦ ହେଲା । ଚିତ୍ରା ଘରୁ ବାହାରିଗଲା । ସବିତା କହିଲେ, ହେଇ ଦେଖିଲୁ, ତୋ ଡାଡି ଆଜି କେତେ ଜଲଦି ଫେକ୍ଟ୍ରିରୁ ଫେରି ଆସିଲାଣି । ଏବେ ତ ମାତ୍ର ନଅଟା ବାଜିଛି ।

ନଅଟା ବାଜିଚି ? ପପୁ ମୁହଁ ଉଠେଇ କାନ୍ଥ ଘଡ଼ିକୁ ଅନେଇଲା । କିନ୍ତୁ ଠିକ୍ କେତେଟା ବାଜିଛି, ଜାଣି ନ ପାରି ପଚାରିଲା । ତମେ ଜାଣିନ । ଏବେ ତ ଅନେକ ବାଜିଲାଣି । ନଅଟା ନୁହେଁ । ଦଶକି ବାର ହେବ ବୋଧେ । ସେ ପୁଣି ଥରେ ଘଡ଼ିକୁ ନିରୀକ୍ଷଣ କରି ଦେଖିଲା, କେତେଟା ବାଜିଚି ଜାଣିବା ପାଇଁ । ସବିତା ହସି ହସି ପଚାରିଲେ, ହଉ କହିଲୁ ଦେଖି, ଠିକ୍ କେତେଟା ବାଜିଛି ?

ପପୁ ଘଡ଼ିରୁ ଆଖି ନ ଉଠେଇ କହିଲା, କଅଣ କେତେଟା ବାଜିଚି ମ ? ହେଇ ଦେଖୁନ ଘଡ଼ିଟା ବନ୍ଦ ଅଛି ।

ସବିତା ହୋ ହୋ ହେଇ ହସି ଉଠିଲେ । ସେ ଶୁଣି ପାରିଲେ, ପୁଅ ବୋହୂ ଦୁହେଁ ସିଡ଼ିରେ ଉପରକୁ ଉଠୁଥିଲେ । ସେ ପପୁକୁ କହିଲେ, ଠିକ୍ ନଅଟା ଦଶ ବାଜିଚି, ଚାଲ ତୋ ଡାଡି ଓ ମମି ସାଥିରେ ଖାଇନେବୁ ।

ନାଇଁ ମୁଁ ତମ ସାଥିରେ ଖାଇବି, ତମେ ସେ ଆମ୍ବ ଆଚାର ମୋତେ ଖଣ୍ଡେ ଦବ ନା ?

ଆମ୍ବ ଆଚାର ? ନାଇଁ ନାଇଁ ତାକୁ ଖାଇଲେ ତୋ ମମି ରାଗିବ । ପିଲାମାନେ ତାକୁ ଖାଇଲେ ଦେହ ଖରାପ ହେବ ।

ହେଇ, ମିଛ କହିଲ । ଏକଦମ ମିଛ । ପପୁ ତାର ଛୋଟ ଆଙ୍ଗୁଠିଟାକୁ ତା ବୋଉ ମୁହଁ ପାଖରେ ରଖି ହସି ହସି କହିଲା ତୁମେ ସେଦିନ କହୁଥିଲ ନା ଗାଁରେ ପିଲାମାନେ ଆମ୍ବ ଆଚାର ଦେଇ ଭାତ ଖାଆନ୍ତି ।

ସବିତା ତା ପିଠି ଥାପୁଡେଇଲେ ଏବଂ କହିଲେ ବାୟାଟା କୋଉ ଦିନ କହିଥିଲି, ଏ ଯାଏ ମନେ ରଖିଚି ।

ଡାଡି ଓ ମମି ଆସି ଦୁଆର ମୁହଁରେ ଠିଆ ହେଲେ । ଡାଡି ପଚାରିଲେ ପପୁ ମୁଁ ଶୁଣୁଚି, ତମେ ଆଜି ହୋମଟାସ୍କ କରିନ । ଦିସ୍ ଇଜ୍ ଭେରି ବେଡ୍ । ସବୁ କଥାରେ ଅବାଧ ହେବା ମୋଟେ ଉଚିତ ନୁହେଁ । ମମି କଥା ବି ଶୁଣୁନ ।

ପପୁ ବୋଉ ପଛରେ ଏକଦମ ଲୁଚି ପଡ଼ିଲା । ବୋଉ ପିଠି ଉପରେ ମୁହଁ

ଲୁଚେଇ ସେ ତାର ଛୋଟ ହାତରେ ବୋଉକୁ କୁଣ୍ଢେଇ ଧରିବାକୁ ଚେଷ୍ଟା କଲା. ସତେ ଯେମିତି ସେ ଗୋଟାଏ ବାଘ କି ଭୂତ ଦେଖି ଡ଼ରି ଯାଇଚି ।

ଦୀପକ କହିଲା, ବୋଉ, ତୋର ଏତେ ବେଶି ତାକୁ ମୁହଁ ଦେବା ଠିକ୍ ନୁହେଁ । ତୋତେ ଗୋଟାଏ ବିରାଟ ଆଶ୍ରୟ ମନେ କରି ସେ ଆମକୁ ବି ଖାତିର କରୁନି । ଏପରି ହେଲେ ସେ ଆଉ ପାଠ ପଢ଼ିବ କଅଣ ?

ମୁଁ ତାକୁ ଆଉ କଅଣ ମୁହଁ ଦେଲିରେ ଦୀପୁ । ତୋତେ ତୋ ପିଲାକାଳେ ଯେତିକି ମୁହଁ ଦଉଥିଲି, ତାର ଚାରିଭାଗରୁ ଭାଗେ ବି ଦଉନି । ତମେ ଦିହେଁ ତ ସବୁବେଳେ ବାହାରେ ବାହାରେ, ସେ ଏ ଘରେ ଆଉ କାହାକୁ ଦେଖୁଚି ଯେ ?''

ପପୁ ସେତେବେଳେ ଯାଏ ବୋଉ କୋଳରେ ବସି ତା ଛାତିରେ ମୁହଁ ଲୁଚେଇଥାଏ, କଇଁଛ ତା ଖୋଳ ଭିତରେ ମୁହଁ ଲୁଚେଇଲା ପରି ।

ଚିତ୍ରା କହିଲା : ବୋଉ, ଆପଣ କଥାଟା ବୁଝୁ ନାହାନ୍ତି । ଏମିତି ହେଲେ ସେ ଆଉ ମଣିଷ ହେବ ? ଗୋଟାଏ ଷ୍ଟ୍ରିଟ୍....

ବିରକ୍ତ ହେଲା ଦୀପକ । କଅଣ ତମେ ଇଆଡୁ ସିଆଡୁ କହୁଚ଼ ଚିତ୍ରା ?

ଚିତ୍ରା ତମ ତମ ହେଇ ସେଠୁ ଚାଲି ଗଲା ।

କଥାଟା ସବିତାଙ୍କୁ ଖୁବ୍ ବାଧିଲା । ଜଳୁଥିବା ନିଆଁ ଖୁଣ୍ଟାଟିଏ ଯେମିତି ତାଙ୍କ ଦେହରେ କିଏ ଖେଞ୍ଚି ଦେଲା । ସେ ଗୋଟାଏ ଅନ୍ତର୍ଦାହରେ ଆଉଟି ପାଉଟି ହେବାକୁ ଲାଗିଲେ । ସେ ତଳକୁ ମୁହଁ ପୋତିଲେ । ମାଆ ତଳକୁ ମୁହଁ ପୋତିବାର ଦେଖି ଦୀପକ କଥାଟାକୁ ସରଳ କରିବାକୁ ଯାଇ ମାଆ ପାଖରେ ବସି ପଡ଼ିଲା ଏବଂ ପପୁକୁ ଉପର ଘରକୁ ଯିବାକୁ କହି କହିଲା କଥାଟା ସେମିତି ନୁହେଁ ବୋଉ । ପପୁ ଆଜିକାଲି ଅନେକ ଉଦ୍ଧତ ହେଇ ଗଲାଣି । ପ୍ରତି କଥାରେ ତାର ଦୁଷ୍ଟାମି ବାହାରୁଚି । ଆମ କଥା ଉପରେ କଥା କହୁଚି । ତୁ ତ ଦେଖିଥିବୁ, ତୁ ଆସିଲାବେଳେ ସେ କେମିତି ସୁଧାର ପିଲାଟି ପରି ସବୁ କାମ କରି ଯାଉଥିଲା । କଥା ମାନୁଥିଲା । ଏବେ ତାକୁ ଦେଖୁନୁ ।

ଛଳ ଛଳ ଆଖିରେ ସବିତା କହିଲେ, ସ୍ନେହ ଆଦର ମିଶା କଥା ପଦେ ଛଡ଼ା ମୁଁ ତାକୁ ଆଉ କିଛି କହୁନିରେ । ଆଉ କି ଦୁଷ୍ଟାମି ତାର ଅଛି ଯେ ? ତୁ ତ ଏଇ ଗୋଟିକ ପିଲା ଦେଖୁଚୁ । ମୁଁ ତୋ ପରି ହେଲା ବେଳକୁ ତିନୋଟି ପିଲାର ମାଆ ହେଇ ସାରିଥାଏ । ତମେ ସବୁ କେତେ ଦୁଷ୍ଟାମି କରୁଥିଲ, ଆମ ପଡ଼ିଶା ଅନାମଙ୍କ ଘରୁ ତମେ ସବୁ କାକୁଡ଼ି ଚୋରି କରୁଥିଲ, ବୋଲି କେତେ କଥା ହେଇନିରେ ? ପପୁତ ସେ ସବୁ ମୋଟେ କିଛି କରେନା ।

ଦୀପକ ଚୁପ ହେଇଗଲା ।

ସବିତା ପୁଣି କହିଲେ, ପିଲାବେଳତ ଦୁଷ୍ଟାମିର ବେଳ । ଆଉ ବଡ଼ ହେଲେ ସେ କ'ଣ ଦୁଷ୍ଟାମି କରିବ ? ଏଇ ବେଳଟାରେ ତ ଦୁଷ୍ଟାମି ବି ଭଲ ଲାଗେ । ଦୁଷ୍ଟାମି ଛଡ଼ା ଆଉ କଅଣ ଥାଏ ଯେ ?

ଦୀପକ ଦେଖିଲା ବୋଉ ମୁହଁ ଆଡ଼େଇ ଲୁହ ପୋଛୁଛି । ସେ ଉଠିଗଲା ଏବଂ ଗଲାବେଳେ କହିଗଲା, ତୋତେ ମୁଁ ଆଉ ବୁଝେଇ ପାରିବିନି ।

ଦୀପକ ବୋଉର କୋଠରିରୁ ବାହାରି ଯାଇ ଉପର ଘରକୁ ଗଲାବେଳକୁ ଚିତ୍ରା ସିଡ଼ିର ଉପର ମୁଣ୍ଡରେ ଛିଡ଼ା ହୋଇଥିଲା । ପପୁ ସେତେବେଳେ ଖଣ୍ଡେ ବହିଧରି ବସିଥାଏ ଗୋଟାଏ ସୋଫା ଉପରେ । ଚିତ୍ରା ଦୀପକକୁ କହିଲା, ମୁଁ ଭାବୁଚି ପପୁକୁ ଏବେ ଗୋଟାଏ ରେସିଡେନ୍ସିଆଲ୍ ସ୍କୁଲରେ ଛାଡ଼ିଦେବା । ଏଠି ରହିଲେ ସେ ମୋଟେ ପାଠ ପଢ଼ି ପାରିବନି ।

ସିଡ଼ି ତଳେ ସେତେବେଳେ ସବିତା ଛିଡ଼ା ହେଇଥିଲେ । ସେ ଚିତ୍ରାର କଥା ଶୁଣିଲେ ଏବଂ ଅତି ଧୀର ପାଦରେ ପୁଣି ନିଜ କୋଠରି ଭିତରକୁ ଯାଇ କବାଟ ବନ୍ଦ କରି ଶୋଇ ପଡ଼ିଲେ । ତାଙ୍କ ଭିତରର ଯନ୍ତ୍ରଣାଟା ଯେମିତି ତୀବ୍ରରୁ ତୀବ୍ରତର ହେଉଥିଲା ।

ତାପର ଦିନ ସକାଳ । ସବୁଦିନ ପରି ପପୁ ସ୍କୁଲକୁ ବାହାରିଲା । ଗଲାବେଳେ ତା ମମି ତାକୁ ତା ସ୍କୁଲ ବେଗ ସଜାଡ଼ି ଧରାଇ ଦେଲେ । ବେଗ୍ ସହିତ ପାଣି ବୋତଲ, ଟିଫିନ ବାକ୍ସ ଏ ସବୁ ବି ଦେଲେ ଏବଂ ସେ ଗେଟ୍ ପାର ହେବା ବେଳେ ପୋର୍ଟିକୋ ତଳେ ଠିଆ ହେଇ ରହିଲେ ।

ସବୁଦିନ ପରି ବୋଉ କିନ୍ତୁ ସେଦିନ ଆଉ ପପୁକୁ ବାଟେଇ ଦେବା ପାଇଁ ଗେଟ୍ ଯାଏ ଆସିଲେନି । ପପୁ ଦୁଇ ଚାରିଥର ପଛକୁ ଫେରି ଦେଖୁଥାଏ । ସେ ଦେଖିଲା, ବୋଉ କେବଳ ଦୁଆର ମୁହଁ ପାଖରେ ଚିତା ହେଇ ରହିଚି । ଆଗ ପରି ସେ ହସୁ ନାହିଁ କି ଟା' ଟା' ମଧ କରୁନାହିଁ । ଗେଟ୍ ବାହାରେ ସ୍କୁଲ ବସ୍‌କୁ ଉଠିବା ଯାଏଁ ପପୁ ବୋଉକୁ ଦେଖିଲା । ବସ୍‌କୁ ଉଠିଲା ବେଳେ ପପୁ ପୁଣି ଥରେ ପଛକୁ ଫେରି ଦେଖିଲା । ସେ, ଦେଖିଲା, ବୋଉ ତାକୁ ଦେଖୁଚି । ପପୁ ବସ୍‌କୁ ଉଠି ହାତ ହଲାଇ ଟା' ଟା କଲା ବେଳକୁ ବୋଉ ଅନାକର୍ଷଣୀୟ ଭାବରେ ନିଜ ହାତଟାକୁ ଟିକିଏ ହଲେଇ ଦେଲେ ଏବଂ ସଙ୍ଗେ ସଙ୍ଗେ ଏକପ୍ରକାର ଦଉଡ଼ି ଦଉଡ଼ି ଘର ଭିତରକୁ ଚାଲିଗଲେ ।

ଦୀପକ ଜଳଖିଆ ଖାଉଥିଲା ବେଳେ ସବିତା ଆସି ସାମନାରେ ବସିଲେ ଏବଂ କହିଲେ ମୁଁ ଆଜି ଗାଁକୁ ଚାଲି ଯିବିରେ ଦୀପୁ । ମୋତେ ଖାଲି ଟିକେ ଷ୍ଟେସନରେ ଛାଡ଼ିବାର ବ୍ୟବସ୍ଥା କରିଦେ ।

ଆଜି ଯିବୁ ? କାହିଁକି ? ହଠାତ୍ ? ଆଗରୁତ କିଛି କହି ନ ଥିଲୁ ? ଦୀପକର ଖାଇବା ଅଟକି ଗଲା । ଚିତ୍ରା ଆସି ଦୀପକକୁ ଆଉ ଖଣ୍ଡେ ପରଟା ଓ ଅଣ୍ଡା ସିଝାଟାଏ ଦେଇଗଲା ।

ବୋଉ କହିଲେ, ମୋର ମନେ ନଥିଲା । ଆଉ ସାତଦିନ ପରେ ପଡ଼ିବ କାର୍ତ୍ତିକ ମାସ । ମୁଁ ହବିଷ କରେ । ଘରେ ପୂଜା ମଧ ହୁଏ । ତେଣୁ ଆଜି ଗଲେ ଭଲ ।

ଦୀପକ ଟିକିଏ ଚିନ୍ତା କଲା ଏବଂ କହିଲା ହଉ, ତୋ ଇଚ୍ଛା । କିନ୍ତୁ କାର୍ତ୍ତିକ ମାସ ପରେ ପୁଣି ଆସିବୁତ ? ମୁଁ ତ କହୁଚି ସେଠି ଯାହା ଜମିବାଡ଼ି ଅଛି, ସବୁ ବିକି ଦିଅ । ସେତକ ବି କରୁନୁ । କେତେଦିନ ଏମିତି ଚାଲିବ ? ମୋତେ ତ ଦେଖୁଚୁ ଗୋଟାଏ ମିନିଟ ବିଶ୍ରାମ ନାହିଁ । ଗୋଟାଏ ଦିନ ନ ରହିଲେ କାରଖାନା ଚକ ବନ୍ଦ ହେଇଯାଉଚି । ସେ ହାତ ଧୋଇବାକୁ ଉଠିଗଲା ।

ଚିତ୍ରା ସିଡ଼ିରୁ ଓହ୍ଲେଇଲା ଏବଂ କଲେଜ ଯିବାକୁ ବାହାରି ଗଲା । ଗଲାବେଳେ ପୋର୍ଟିକୋ ତଳେ ଠିଆ ହୋଇ ଚାକରକୁ କହିଲା, ପପୁ ଆସିଲେ ତାକୁ ବସରୁ ନେଇ ଆସିବୁ ଏବଂ ଖାଇବାକୁ ଦେଇ ଦେବୁ । ମୋର ଆଜିବି ଆସିବାକୁ ଡେରି ହେବ । ତୁ ତାକୁ ଟିକିଏ ପାର୍କ ଆଡ଼େ ନେଇଯିବୁ ।

ସେଦିନ ପପୁ ସ୍କୁଲରୁ ଫେରିଲା ବେଳକୁ ଦିନ ଗୋଟାଏ । ରାସ୍ତାରେ ଗାଡ଼ିର ଚକ ପଙ୍କଚର ହେବାରୁ ଟିକିଏ ଡେରି ହେଇଗଲା । ପପୁ ଗାଡ଼ିରୁ ଓହ୍ଲେଇ ଯେତେବେଳେ ଦେଖିଲା, ଗେଟ୍ ପାଖରେ ବୋଉ ନାହିଁ, ତାକୁ ନେବାକୁ ଠିଆ ହେଇଚି ନରି, ସେ ସାଙ୍ଗେ ସାଙ୍ଗେ ପଚାରିଲା, ବୋଉ କାହିଁ ?

ନରି କହିଲା ସେ ଗାଁକୁ ଚାଲି ଯାଇଚନ୍ତି । କାର୍ତ୍ତିକ ମାସ ପରେ ଆସିବେ ।

ଗାଁକୁ ଚାଲି ଯାଇଚି ? ସେ ସେଇଠି ଠିଆ ହେଇଗଲା । ତା ଗୋଡ଼ ସେଇଠି ଯେମିତି ଅଚଳ ହେଇଗଲା । ତାପରେ ପଚାରିଲା, କେତେବେଳେ ଗଲା ? ସକାଳେ ତ ଥିଲା ?

ତୁମେ ଘରକୁ ଚାଲ । ମୁଁ କହୁଚି । ସେ ଆଜି ସକାଳ ଟ୍ରେନ୍‌ରେ ବାହାରି ଗଲେ । ଏବେତ ଅଧା ବାଟ ବି ହେଇ ନଥିବ । ନରି ପପୁ କାନ୍ଧରୁ ସ୍କୁଲ ବେଗ ଓ ପାଣି ବୋତଲ ନିଜ ହାତକୁ ନେଲା ।

ପପୁ ନରି ମୁହଁକୁ ଅନେଇ ରହିଲା । ବୋଉ ଯେ ତାକୁ ନ ଜଣାଇ ଚାଲି ଯାଇ ପାରେ ଏ କଥା ସେ ମୋଟେ ବିଶ୍ୱାସ କରି ପାରୁ ନଥିଲା । ସେ ନରିର ହାତକୁ ହଲାଇ ଦେଇ କହିଲା ବୋଉ କାହିଁକି ଗଲା ନରି ? ସେତ ମୋତେ ସାଥିରେ ନେଇଯିବ ବୋଲି କହୁଥିଲା । ତୁ ମିଛ କହୁଚୁ ନା ?

ଆରେ ମିଛ କାହିଁକି କହିବି ? ସେ ତାଙ୍କ ଘରକୁ ଯିବେ ନାହିଁ ? ସେ ଆସିବେ ଯେ । ତମକୁ ଛାଡ଼ି ସେ କଅଣ ରହି ପାରିବେ ତାଙ୍କ ଘରେ ?

ପପୁର ସବୁ କିଛି ଯେମିତି ଗୋଳମାଳ ହେଇ ଯାଉ ଥିଲା । ସେ ନରି କଥାକୁ ମୋଟେ ବିଶ୍ୱାସ କରି ପାରୁ ନଥିଲା । ସେ ହଠାତ୍ ନରିର ହାତଟାକୁ ଛାଡ଼ି ଦେଇ ଦଉଡ଼ି ଗଲା ଘର ଭିତରକୁ ଏବଂ ସିଧା ଯାଇ ବୋଉର ଶୋଇବା କୋଠରି ଭିତରକୁ ପଶି ଗଲା । ଘର ଭିତରେ ସେ ବୋଉକୁ ତନ୍ନ ତନ୍ନ କରି ଖୋଜି ପକାଇଲା । ଏପରିକି ବେଳେ ବେଳେ ବୋଉ ତା ସାଥିରେ ଲୁଚକାଳି ଖେଳୁଥିଲା ବେଳେ ଯୋଉ ଯୋଉ ଜାଗାରେ ଲୁଚି ପପୁକୁ ଦେଖି 'ଭୋ' କରେ, ସେ ସବୁ ଜାଗା ମଧ ଖୋଜି ପକାଇଲା- ସତେ ଯେମିତି ବୋଉ ସେଠି ଲୁଚିଚି । ସେ ଦଉଡ଼ି ଗଲା ଉପର ଘରକୁ । ସେଠି ତାଲା ପଡ଼ିଥିବାର ଦେଖି ଫେରି ଆସିଲା । ପୁଣି ଗଲା ରୋଷେଇ ଘରକୁ- ଠାକୁର ଘରକୁ । ଶେଷରେ ସେ ପୁଣି ଥରେ ବୋଉର ଘର ଭିତରେ ପଶି ତା ଲୁଗାପଟା ସବୁ ଦେଖିଲା । ନାଁ, ସେ ସବୁ କିଛି ନାହିଁ । ଅଥଚ ସେ ଦେଖିଲା, ବିଛଣା ଉପରେ ତାର କଣ୍ଢେଇ ସବୁ, ଯୋଉଗୁଡ଼ାକ ଅନେକ ଦିନୁ ଘରର ବିଭିନ୍ନ ଆଡ଼େ ଫିଙ୍ଗି ହେଇ ପଡ଼ିଥିଲା, ତାକୁ ଗୋଟେଇ ଆଣି ସଜେଇ ରଖାଯାଇଚି । ତା ଭିତରେ ଗୋଟାଏ କଣ୍ଢେଇ ଅଛି, ଯୋଉଟାକୁ ବୋଉ ନିଜେ ମାର୍କେଟରୁ କିଣି ଆଣି ତାକୁ ଜନ୍ମଦିନରେ ଉପହାର ଦେଇଥିଲେ ଏବଂ କହିଥିଲେ, ଏଇଟାକୁ ସାଇତି ରଖିଥିବୁ ଏବଂ ମୋ କଥା ମନେ ପକାଉ ଥିବୁ । ସେଇଟାକୁ ପୋଛା ପୋଛି କରି ଉପରେ ରଖା ଯାଇଚି । ସେ କଣ୍ଢେଇଟିକୁ ମୁଣ୍ଡ ପାଖରେ ଚିପି ଦେଲେ 'ପପୁ' 'ପପୁ' ଭଳିଆ ଗୋଟେ ଶବ୍ଦ କରେ । ପପୁକୁ ସେଇଟା ବେଶି ମଜା ଲାଗେ ।

ପପୁ ସେ କଣ୍ଢେଇକୁ ଉଠେଇଲା ଓ ବୋତାମଟାକୁ ଚିପି ଦେଲାମାତ୍ରେ କଣ୍ଢେଇଟି 'ପପୁ' 'ପପୁ' ବୋଲି ପାଟି କଲା । ପପୁର ମନେ ହେଲା, ଯେମିତି ଦୂରରୁ ବୋଉ ଡାକୁ ଡାକୁଚି । ସେ କଣ୍ଢେଇଟାକୁ ଫିଙ୍ଗି ଦେଇ ବାହାରକୁ ଦୌଡ଼ିଗଲା ବେଳେ ହଠାତ୍ ନରି ସହିତ ଧକ୍କା ଖାଇ ଅଟକି ଗଲା ଓ ନରି ତାକୁ ଧରି ପକେଇଲା । ସେ ତାକୁ କହିଲା, ଚାଲ ଖାଇବ । ଡେରି ହେଲାଣି ।

ପପୁ ତା ହାତଟାକୁ ନରି ହାତରୁ ଛଡ଼େଇ ନେବାକୁ ଚେଷ୍ଟା କଲା ଏବଂ କହିଲା, ନା, ମୁଁ ଖାଇବିନି । ମୋତେ ଭୋକ ନାହିଁ ।

ଆରେ ଦି'ଟା ବାଜିଲାଣି । ଭୋକ ନାହିଁ କାହିଁକି ? ଚାଲ, ଆଗେ ଖାଇ ଦିଅ, ତାପରେ ଯୋଉ କଥା । ସେ ଯୋର କରି ପପୁକୁ ଟେବୁଲ୍ ପାଖକୁନେଇ ବସେଇଲା ଏବଂ ଭାତ ଖୁଏଇ ଦେଲା ।

ପପୁ କିନ୍ତୁ ଖୁବ୍ ବେଶି କିଛି ଖାଇଲାନି । ଅଳ୍ପ ଦି' ଚାରିଟା କିଛି ଖାଇଛି କି ନାହିଁ, ସେ ଉଠି ପଡ଼ିଲା ଏବଂ କହିଲା, ନା, ଆଉ ମୋଟେ ଖାଇବିନି । ସେ ଚଟାପଟ ବେସିନ ପାଖକୁ ଯାଇ ମୁହଁ ଧୋଇଲା ଏବଂ ପୁଣି ବୋଉର ବେଡ୍ ରୁମ୍ ଭିତରକୁ ଯାଇ, ଯୋଉଠି ବରାବର ସେ ବୋଉ ପାଖରେ ଖାଇସାରି ଶୋଇଲାବେଳେ ଗପ ଶୁଣେ, ସେଇଠି ଯାଇ ବସିଲା । ସେ ବିଛଣା ଚାରି ପଟକୁ କେମିତି ଗୋଟାଏ କରୁଣ ଆଖିରେ ଦେଖିଲା । ତାକୁ ଯେମିତି ସବୁ ଫାଙ୍କା ଫାଙ୍କା ଲାଗିଲା । ଗୋଟାଏ ବିରାଟ ଶୂନ୍ୟତା ଯେମିତି ତା ଭିତରେ ହାହାକାର କରିଉଠିଲା ଓ ଗଦା ହେଇଥିବା କଣ୍ଢେଇଗୁଡ଼ିକ ପାଖରେ ସେ ଶୋଇ ପଡ଼ିଲା ।

ନରି ଆସି କହିଲା, ତୁମେ ଚାଲ । ମୁଁ ଉପର ଘର ଖୋଲି ଦଉଛି । ତୁମେ ସେଠି ଶୋଇବ ।

ପପୁ କହିଲା, ନାଇଁ ମୁଁ ଏଇଠି ଶୋଇବି ।

ନରି ବିଛଣାରେ ଥିବା କଣ୍ଢେଇଗୁଡ଼ିକୁ ଉଠେଇ ଗୋଟାଏ ଟୋକେଇରେ ରଖୁଥିବା ବେଳେ ପପୁ ପଚାରିଲା, ବୋଉ ଘର କେଉଁଠି, ତୁ ଜାଣିଚୁ ?

''ଶରଧାପୁର' । ତମେ ପରା ତମ ଡାଡି ମମିଙ୍କ ସହିତ ସେ ଗାଁକୁ ଯାଇଥିଲ ? ମନେ ନାହିଁ ?

ପପୁ ଶୋଇ ଶୋଇ କଅଣ ଭାବୁଥିଲା । ବୋଧେ ମନେ ମନେ ସେ ଗାଁ କଥା ଏବଂ ବୋଉର ଘର କଥା ମନେ ପକେଇବାକୁ ଚେଷ୍ଟା କରୁଥିଲା । ଏତିକି ବେଳେ ନରି କୌତୁହଳବଶତଃ ସେ କଣ୍ଢେଇର ସୁଇଚ ଟିପି ଦେଲା ମାତ୍ରେ କଣ୍ଢେଇଟି ପପୁ ପପୁ ବୋଲି ପାଟି କଲା । ନରି ମଧ କଣ୍ଢେଇ ସାଥିରେ ପାଟି କରି କହିଲା, ''ପପୁ ପପୁ'' ।

ପପୁ ଧଡ଼ପଡ଼ ହେଇ ଉଠି ପଡ଼ିଲା ଏବଂ ନରିକୁ ଚାପୁଡାଏ ପକାଇଲା । କଣ୍ଢେଇଟାକୁ ତା ହାତରୁ ଛଡ଼େଇ ନେଇ ବିଛଣା ଉପରେ ଦୂରକୁ ଫୋପାଡ଼ି ଦେଲା ଏବଂ କହିଲା, ତୁ ଏଠୁ ଗଲୁ, ମୁଁ ଶୋଇବି । ନରି ହଠାତ୍ ପପୁର ଏ ଆଚରଣ ଦେଖି ଆଶ୍ଚର୍ଯ୍ୟ ହେଲା । ଏମିତି କେବେତ ପପୁ କରେନା, ସେ ଆଉ କିଛି କହିବାକୁ ସାହସ କଲା ନାହିଁ । ଘରୁ ବାହାରକୁ ଆସିଲାବେଳେ ସେ କହିଲା, ହଉ ତୁମେ ଶୋଇପଡ଼ । ମୁଁ ବାହାରୁ କବାଟ ଆଉଜାଇ ଦେଉଚି । ଚାରିଟା ବେଳକୁ ଉଠିଲେ, ଦୁଧ ପିଇବ । ତା ପରେ ଆମେ ଆଜି ପାର୍କ ଯିବା ।

ପପୁ ଆଉ କିଛି ଉତ୍ତର ନ ଦେଇ ଶୋଇ ପଡ଼ିଲା । ତାକୁ କିନ୍ତୁ ମୋଟେ ନିଦ ହେଉ ନଥିଲା । ତେଣୁ ସେ ଶୋଇ ଶୋଇ ଚାରି ଆଡ଼କୁ ଦେଖୁଥିଲା । ହଠାତ୍ ତାର

ନଜର ପଡ଼ିଲା, ଥାକ ଉପରେ ଛୋଟ ଫଟୋଟିଏ ଥୁଆ ହୋଇଚି । ସେ ଆଶ୍ଚର୍ଯ୍ୟ ହେଲା । ଏ ଫଟୋଟିକୁ ତ ବୋଉ ପ୍ରତିଦିନ ଗାଧୋଇ ସାରି ପୂଜା କରି ନମସ୍କାର କରୁଥିଲା । ତାତି କହୁଥିଲେ, ଏଇଟା କୁଆଡ଼େ ମୋ ଜେଜେଙ୍କ ଫଟୋ । ବୋଉ ଆଖି ବୁଜି ଫଟୋ ସାମ୍ନାରେ ବସିଲା ବେଳେ ପପୁକୁ ବି ସେ କେତେଥର କୋଳରେ ବସେଇ ଥିଲେ । ପପୁ କେତେଥର ସେ ଅଜଣା ଆତ୍ମାକୁ ପ୍ରାର୍ଥନା କରିଚି । କିନ୍ତୁ ଆଜି ବୋଉ ସେ ଫଟୋଟିକୁ ଛାଡ଼ି ଚାଲିଗଲା କେମିତି ? ଯଦି ଭୁଲି ଯାଇଥିବ ତେବେ ତ ସେ ବଡ଼ ଅଡୁଆରେ ପଡ଼ିବ ।

ସେ ଫଟୋଟିକୁ ଉଠେଇଲା ଏବଂ ନିଜ ସାର୍ଟ କାନିରେ ସଫା କରି ପେଣ୍ଟ ପକେଟରେ ପୂରେଇଲା । ଫଟୋଟା ତ ଛୋଟ ଥିଲା । ସେଇଟା ସହଜରେ ତା ପେଣ୍ଟ ପକେଟରେ ପଶିଗଲା ।

ସେ ଘରୁ ବାହାରକୁ ଆସିଲା ଏବଂ ଦେଖିଲା ଦାଣ୍ଡ ଦୁଆର ଖୋଲା । ସେ ବାହାରକୁ ଆସିଲା ଓ କବାଟଟିକୁ ପୁଣି ଆଉଜାଇ ନେଲା । ତାପରେ ସେ ଦଉଡ଼ିଲା । ଗେଟ୍‌ଟା ଉପରୁ ବନ୍ଦ ଥିବାରୁ ସେ ତା ଉପରେ ଚଢ଼ିଯାଇ ଅନ୍ୟ ପାଖରେ ଓହ୍ଲେଇ ପଡ଼ିଲା । ତା ପରେ ସେ ଏକମୁହାଁ ହେଇ ଦଉଡ଼ିଲା ।

ସେ କେତେ ବାଟ ଦଉଡ଼ିଲା ଜାଣେନା । ତାର ମନେ ହେଲା, ସେ ଗୋଟାଏ ରେଳ ଷ୍ଟେସନରେ ପହଞ୍ଚି ଯାଇଚି । ଏଇ ଷ୍ଟେସନକୁ ସେ ତ ଅନେକ ଥର ତା ତାଡ଼ି ସାଙ୍ଗରେ ଆସିଚି । ସେ ଧୀରେ ଧୀରେ ପ୍ଲାଟଫର୍ମ ଭିତରକୁ ଗଲା ଏବଂ ଅପେକ୍ଷା କରିଥିବା ଗୋଟିଏ ଗାଡ଼ିରେ ଚଢ଼ିଗଲା । ସେତେବେଳକୁ ବେଳ ରତ ରତ । ଗାଡ଼ି ଛାଡ଼ିଦେଲା । ପପୁ ଦେଖିଲା, ଗୋଟିଏ ବେଞ୍ଚରେ ଦୁଇ ତିନିଜଣ ପିଲା ବସିଚନ୍ତି । ସେ ସେମାନଙ୍କ ପାଖରେ ଯାଇ ଛିଡ଼ା ହେବାରୁ ତା'ଠୁ ଟିକିଏ ବଡ଼ ପିଲାଟି ତାକୁ ଡାକିଲା ଓ ପାଖରେ ବସେଇଲା ।

କେହି ଅବଶ୍ୟ ପଚାରିଲେନି ଯେ ସେ ପିଲାଟି କିଏ କିମ୍ବା କାହା ସାଥିରେ ଆସିଚି । ଏମିତି ତ ଅନେକ ପିଲା ଅଛନ୍ତି । ଡବା ଭିତରେ କିଏ କାହା କଥା ପଚାରୁଚି । ପପୁ ତେଣୁ ଚୁପ ଚାପ ବସିଥାଏ । ଅନେକ ବାଟ ଦୌଡ଼ି ଆସିଥିବାରୁ ସେ ଥକି ଯାଇଥିଲା । ଗାଡ଼ି ଚାଲିବାରୁ ଟିକିଏ ଥଣ୍ଡା ପବନ ଲାଗିଲା ଏବଂ ସେ ଢୁଳେଇବାକୁ ଆରମ୍ଭ କଲା । ଡବାରେ ଖୁବ୍ ବେଶି ଲୋକ ନଥିଲେ । ସାମ୍ନା ବେଞ୍ଚରେ ବସିଥିବା ଜଣେ ମହିଳା ପପୁକୁ ଢୁଳାଉଥିବାର ଦେଖି ତା ପାଖକୁ ଉଠିଗଲେ ଏବଂ ତାକୁ ବେଞ୍ଚ ଉପରେ ଗଡ଼େଇ ପକେଇଲେ । ସେ ଭାବିଲେ, ଏଇ ପାଖରେ ହୁଏତ ତାର ବାପାମାଆ କେହି ଥିବେ । ପପୁ ଶୋଇଲା ବେଳେ କଅଣ ଭାବିଲା କେଜାଣି. ସେ ମହିଳାଙ୍କୁ ଥରେ

ଦେଖିଲା ଏବଂ ପୁଣି ଥରେ ଆଖି ବୁଜି ଶୋଇ ପଡ଼ିଲା ।

ଅନେକ ସମୟ ପରେ ତାର ଯେତେବେଳେ ନିଦ ଭାଙ୍ଗିଲା, ସେ ଦେଖିଲା ଗାଡ଼ି ସେମିତି ଚାଲିଚି । କିନ୍ତୁ ପାଖରେ ଯେଉଁ ପିଲାମାନେ ବସିଥିଲେ, ସେମାନେ ନାହାନ୍ତି କି ସେ ମହିଳା ମଧ୍ୟ ନାହାନ୍ତି, ଅନ୍ୟମାନେ ଅଛନ୍ତି । ପପୁକୁ ସେତେବେଳେ ଖୁବ୍ ଭୋକ ହେଉଥିଲା । ଏମିତିକା ନୂଆ ପରିବେଶଟାରେ ତାକୁ ବଡ଼ ଅଡୁଆ ଅଡୁଆ ଲାଗୁଥିଲା । ସେଥିରେ କିଛିଟା ଭୟ ମଧ୍ୟ ମିଶିଥିଲା । ସେ ଭାବିଲା, ଭୋକ ହେଉ, ଥରେ ଗାଡ଼ିଟା ରହିଲେ ସେ ଯାଇ ବୋଉ ପାଖରେ ପହଞ୍ଚି ଯିବ । ତାପରେ ଆଉ ତାର ଚିନ୍ତା ନାହିଁ । ସେ ପକେଟରେ ହାତ ମାରିଲା ଓ ଦେଖିଲା, ଫଟୋଟା ଠିକ୍ ଅଛି । ସେ ଭାବିଲା, ବୋଉଟା ସତରେ ବଡ଼ ହେଙ୍ଗେଲା, ଏମିତି ଦରକାରୀ ଫଟୋଟାକୁ ସେ କେମିତି ଛାଡ଼ି ଆସିଲା କେଜାଣି ।

ପାଖରେ ବସି ଢୁଳାଉଥିବା ଜଣେ ବୁଢ଼ା ଲୋକକୁ ସେ ପଚାରିଲା, ରାତି କେତେବେଳେ ପାହିବ ?

ବୁଢ଼ାଟିର ନିଦ ଭାଙ୍ଗିଗଲା ଏ ପ୍ରକାର ଅବାନ୍ତର ପ୍ରଶ୍ନରେ । ସେ ପିଲାଟିକୁ ଟିକେ ଅନେଇଲା ଓ ପଚାରିଲା, ତୁ କୋଉଠିକୁ ଯିବୁ ?

ପପୁ କହିଲା, ବୋଉ ପାଖକୁ । ସେ ଏମିତି ନିର୍ଭୟରେ କହିଲା ଯେ ଯେମିତି ଜଣେ ସେତିକିରୁ ସବୁ ବୁଝିଯିବ ।

ବୋଉ ପାଖକୁ ? ଆରେ ତୋ ବୋଉ କିଏ ? ସେ କୋଉଠି ଥାଏ ? ତୋ ସାଥିରେ ଆଉ କିଏ ଅଛି ?

ଏତେ ଗୁଡ଼ାଏ ପ୍ରଶ୍ନ ଶୁଣି ପପୁ ଆଶ୍ଚର୍ଯ୍ୟ ହେଲା । ବୋଉ କିଏ, ଏ ଲୋକଟା ଜାଣିନି । ସେ ଟିକିଏ ହସି ଦେଲା ଏବଂ କହିଲା, ବୋଉ ମ । ମୋ ବୋଉ, ସେ ଆମ ଘରୁ ଚାଲି ଆସିଚି । ମୋତେ ବି କହିନି । ହେଇ ଦେଖନ୍ତୁ, ଏ ଫଟୋଟାକୁ ବି ଛାଡ଼ି ଆସିଚି । ଗାଧୋଇ ସାରି କେମିତି ସେ ପୂଜା କରିବ ? ପୂଜା ନ କଲେ ତ ସେ ପାଣି ବି ପିଏନି ।

ପପୁର ଏ ପ୍ରକାର କଥାରେ ସେଠି ବସିଥିବା ଅନ୍ୟ ସମସ୍ତଙ୍କର ନିଦ ଭାଙ୍ଗି ଗଲା । ସେମାନେ ଆଶ୍ଚର୍ଯ୍ୟ ହେଇ ତାକୁ ଦେଖିଲେ ।

ବୁଢ଼ାଟି ପୁଣି ଥରେ ତାକୁ ପଚାରିଲା, ତୋ ସାଥିରେ ଆଉ କିଏ ଅଛି ?

ନିର୍ବିକାର ଚିତ୍ତରେ ପପୁ କହିଲା, ଆଉ କିଏ ରହିବ ? ମୁଁ ତ ଯାଉଚି, ଏଇଟା ବୋଉକୁ ଦେଇ ଦେବାକୁ ।

ତୁ କୋଉଠି ଓହ୍ଲେଇବୁ ? ଆଉ ଜଣେ ପଚାରିଲା ।

ପ୍ରଶ୍ନଟା ପପୁକୁ ଅଦ୍ଭୁଆ ଲାଗିଲା । ସେ ବୁଝି ପାରିଲାନି, ଠିକ୍ ଭାବେ 'କୋଉଠି ଓହ୍ଲେଇବୁ'ର ମାନେ କଅଣ ? ସେ କହିଲା ମୁଁ ତ ଯାଉଚି ମୋ ବୋଉ ପାଖକୁ । ଏ କଥାଟା କହିଲା ବେଳେ ପପୁ କେମିତି ଟିକିଏ ଥତମତ ହେଲା ।

ଲୋକମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଲେ । ସେମାନେ ଭାବିଲେ, ପିଲାଟି ହୁଏତ ଘରୁ କାହାକୁ ନ କହି ପଳେଇ ଆସିଚି । ସେ ହୁଏତ ସେଥିପାଇଁ ଠିକ୍ କଥାଟା ଲୁଚଉଚି । ସେମାନେ ପର ଷ୍ଟେସନରେ ପୁଲିସକୁ ଡାକି ପପୁକୁ ସମର୍ପି ଦେଲେ ।

ପପୁ ପୁଲିସକୁ ପଚାରିଲା, ତମେ ମୋତେ ମୋ ବୋଉ ପାଖରେ ପହଞ୍ଚେଇ ଦବ ନା ?

ପୁଲିସ କହିଲା, ଅଲବତ୍ । ତୁ ମୋ ସାଙ୍ଗରେ ଆ । ସେ ପପୁକୁ ନେଇ ଗାଡ଼ିରୁ ଓହ୍ଲେଇ ଗଲା । ପୁଲିସ ପପୁକୁ ନେଇ ଥାନାରେ ବସେଇଲା । ଥାନାବାବୁ ତାକୁ ଦେଖି କହିଲେ, ଇଏ ତ ଗୋଟାଏ ଭଲ ଫେମିଲିର ବୋଲି ଜଣା ପଡୁଚି । କିନ୍ତୁ କିଛି ଗୋଟାଏ ଗୋଳମାଳ ଅଛି, ଯୋଉଥି ପାଇଁ ସେ ହୁଏତ ଘରୁ ପଳେଇ ଆସିଚି । ସେ ପପୁକୁ ପଚାରିଲେ, ତୁ କୋଉଠି ଗାଡ଼ି ଚଢ଼ିଲୁ ?

ପପୁ କିଛି ଚିନ୍ତା କଲା ତା ପରେ କହିଲା ସେଇ ଷ୍ଟେସନରୁ ।

ସେ ଷ୍ଟେସନର ନାଁ କଅଣ ?

କେଜାଣି ? ତୁମେ ମୋତେ ମୋ ବୋଉ ପାଖକୁ ନେଇଯିବ ପରା ?

ତୋ ବୋଉ କୋଉଠି ଥାଏ ? ତା ଠିକଣା ଜାଣିଚୁ ?

ସେ ତା ଘରେ ଥାଏ । ଗାଁରେ, ମୁଁ ତା ଘର ଦେଖିଚି ।

ଥାନାବାବୁ ଦେଖିଲେ, ସବୁ ନିରର୍ଥକ । ତା'ଠୁ କିଛି ସଠିକ୍ ଉତ୍ତର ଆଶା କରିବା ବୃଥା । ସେ ତାର ମନ ବହଲେଇବା ପାଇଁ କହିଲେ, ତୁ କିଛି ଖାଇବୁ ? ଭୋକ ହଉଚି ?

ମୁଁ ଗଲେ ମୋ ବୋଉ ପାଖରେ ଖାଇବିନି କି ? ତୁମେ ଚାଲ ଆଉ ଡେରି କରନା ।

ଥାନାବାବୁ କିଛି ମିଠା ଓ ଫଳ ଆଣି ତାକୁ ଖାଇବାକୁ ଦେଲେ । ତାପରେ କହିଲେ, ଆଜି ରାତି ହେଇଗଲାଣି । ଏତେ ରାତିରେ କୁଆଡ଼େ ଯିବା ? ତୋ ବୋଉ ବି ତ ଏବେ ଶୋଇ ପଡ଼ିବଣି । ରାତି ପାହୁ । ସକାଳ ହେଲେ ମୁଁ ତୋତେ ତୋ ବୋଉ ପାଖରେ ଛାଡ଼ି ଦେବି । ତୁ ଏବେ ଏଇଠି ଟିକେ ଶୋଇପଡ଼ ।

॥ ୨୨ ॥

ପପୁ ଆଶ୍ଚର୍ଯ୍ୟ ହେଲା । କହିଲା, ବୋଉ ଶୋଇ ପଡ଼ିବଣି ? ନା ନା, ମିଛ କଥା । ମୁଁ ଶୋଇଲେ ସିନା ସେ ମୋ ପାଖରେ ଶୋଇବ ? ସେ ଏବେ ବି ମୋତେ ଅପେକ୍ଷା କରି ଚେଇଁଥିବ । ତୁମେ ଜଲ୍‌ଦି ମୋତେ ନେଇ ଚାଲ । ମୁଁ କିଛି ଖାଇବିନି ।

ଥାନାବାବୁ ବଡ଼ ଅଡୁଆରେ ପଡ଼ିଲେ । ପିଲାଟିକୁ ସେ କେମିତି ବୁଝେଇବେ ଯେ ବୋଉ ଶବ୍ଦଟା ସର୍ବବ୍ୟାପୀ ହେଇଥିଲେ ମଧ୍ୟ ତୋ ବୋଉ ତ ସର୍ବବ୍ୟାପୀ ନୁହେଁ ଯେ ତାକୁ ସମସ୍ତେ ଜାଣିଥିବେ । ସେ ତାକୁ ଆଉ ବୁଝେଇବାକୁ ଚେଷ୍ଟା ନ କରି କହିଲେ, ହଉ, ମୁଁ ଏ ପୋଷାକଟା ବଦଳେଇ ଆସୁଚି । ତୁ ଏଇଠି ବସିଥା । ଆସିଲେ ଯିବା ।

ପପୁ ଖୁସି ହେଇଗଲା । ଥାନାବାବୁ ଯିବା ପୂର୍ବରୁ ସିପାହୀକୁ କହିଗଲେ ଯା ଉପରେ ନଜର ରଖିଥିବୁ ।

ପପୁ ଅନେକ ସମୟ ପର୍ଯ୍ୟନ୍ତ ସେମିତି ବେଞ୍ଚଟା ଉପରେ ବସି ରହିଲା । ଟେବୁଲ ଉପରେ ମିଠା ଓ ଫଳ ସେମିତି ଥୁଆ ହୋଇଥାଏ । କିଛି ସମୟ ପରେ ସେ ସେଇ ବେଞ୍ଚଟା ଉପରେ ଶୋଇ ପଡ଼ିଲା । ହୁଏତ ତାର ଟିକିଏ ଆଖି ମଧ୍ୟ ଲାଗିଯାଇଥିଲା । କିନ୍ତୁ କିଛି ସମୟ ପରେ ହଠାତ୍ ଚମକିଲା ପରି ଉଠି ପଡ଼ିଲା ଏବଂ ଚାରିଆଡ଼କୁ ଅନେଇଲା । ଦୂରରେ ବସିଥିବା ସିପାହୀ ଜଣକ ଶୋଇ ପଡ଼ିଚି । ରାତି ସେତେବେଳକୁ କେତେ ହେଲାଣି ସେ କଥା ତାକୁ ଜଣା ନଥାଏ । ଯେଉଁ ପୁଲିସ ବାବୁ ଜଣକ ତାକୁ କହିଗଲେ, ପୋଷାକ ବଦଳେଇ ଆସିବେ ବୋଲି ତାଙ୍କର ମଧ୍ୟ ଦେଖାନାହିଁ । ସେ ଆଉ ଅପେକ୍ଷା କରିବାକୁ ଇଚ୍ଛା କଲା ନାହିଁ । ସାମ୍‌ନା ପଟ ଦରଜା ବନ୍ଦ ଥିବାରୁ ସେ ପଛପଟ ଦେଇ ବାହାରକୁ ବାହାରି ଆସିଲା । ସେ ଭାବିଲା, ଏଇଠି ସେମିତି ବସିଥିବା ଯାଏ ସେ କେବେ ବି ତା ବୋଉ ପାଖରେ ପହଞ୍ଚି ପାରିବ ନାହିଁ ।

ବାହାରକୁ ଆସି ସେ ଦୌଡ଼ିବାକୁ ଆରମ୍ଭ କଲା । ରାସ୍ତାର ଚୋଫା ଆଲୁଅରେ ତାକୁ ଦଉଡ଼ିବାକୁ ମୋଟେ ଅସୁବିଧା ହେଉ ନଥିଲା । ସେ ସ୍ଥିର ନିଶ୍ଚିତ ଥିଲା ଯେ ଏଇ ସହରଟା ପାର ହେଇଗଲା ବେଳକୁ ରାତି ପାହି ଯାଇଥିବ ଏବଂ ସେତେବେଳକୁ ସେ ତା ବୋଉର ଗାଁରେ ପହଞ୍ଚି ଯାଇଥିବ । ତାପରେ ତା ବୋଉକୁ ପାଇବାକୁ ମୋଟେ କଷ୍ଟ ହେବନାହିଁ ।

ତାର ମନେ ପଡ଼ିଲା, ତା ବୋଉ ତାକୁ ଅନେକଥର କହିଚି ଯେ ରାତି ଯାକ ଗାଡ଼ି ଚଢ଼ି ଆସିଲେ ଭୋର ହେବା ବେଳକୁ ଆସେ ଗାଁ । ସେଇ ଗାଁରେ ତାର ଘର । ଏବେ ତ ରାତି ପାହି ଆସିଲାଣି ବୋଧେ । ଏବେ ତାକୁ ଆଉ ଗାଁ ମିଳିବାରେ ଅସୁବିଧା ହେବ କାହିଁକି ? ସକାଳୁ ସକାଳୁ ପହଞ୍ଚି ସେ ବୋଉକୁ ଚମକାଇ ଦେବ । ସେ ଆହୁରି ଦଉଡ଼ିଲା ।

କିନ୍ତୁ ଏ କ'ଣ ? ରାସ୍ତାଟା ତ ମୋଟେ ସରୁ ନାହିଁ । ଗାଁ କାହିଁ ? ସେ କୁଆଡ଼େ ଯିବ ? କେତେବାଟ ଯିବ ? ଏ ରାସ୍ତା କୋଉଠି ସରିଚି ? ବୋଉ ତ କହୁଥିଲା, ସହର ପରେ ଗାଁ ପଡ଼ିବ । ସହର ତ କେତେ ଦୂରରେ ରହିଲାଣି । କିନ୍ତୁ ଗାଁ କାହିଁ ।

ପପୁର କଅଁଳ ପାଦ ସେତେବେଳକୁ ବିନ୍ଧିଲାଣି । ସେ ଆଉ ଯନ୍ତ୍ରଣାରେ ମୋଟେ ଚାଲି ପାରୁନି । ପାଦର କେତେ ଯାଗାରେ କଣ୍ଟା ବାଜି ବୋଧେ ରକ୍ତ ବହୁଚି । ସେଇଠି ଠିଆ ହୋଇ ପପୁ ଚାରି ଆଡ଼କୁ ଅନେଇଲା । ଚାରିଆଡ଼େ କିଟି କିଟି ଅନ୍ଧାର । ଆଗକୁ ଆଉ ରାସ୍ତା ଦେଖା ଯାଉନି । ଦୁଃଖ, ହତାଶା ଓ ଅସହ୍ୟ ଯନ୍ତ୍ରଣାରେ ସେ ଫାଟି ପଡୁଥାଏ । ସେ ଆଗକୁ ଗୋଡ଼ ଉଠେଇ ପାରୁ ନଥାଏ । ଗୋଟାଏ ଅଜଣା ଭୟର ଚକ୍ରବ୍ୟୂହ ଭିତରେ ସେ ବୁନ୍ଦି ହୋଇ ଯାଉଥାଏ ।

ରାତି ପାହିବାକୁ ତଥାପି ବାକି ଥାଏ । ଚାରିଆଡ଼େ ଭୟଙ୍କର ନିର୍ଜ୍ଜନତା । ପପୁ ଠିଆ ହୋଇ କାନ୍ଦ କାନ୍ଦ ହୋଇଗଲା । ଭାବିଲା ଏଠି ତ କେହି କୁଆଡ଼େ ନାହିଁ । ତେବେ, କିଏ ଦବ ତାକୁ ତା ବୋଉର ଠିକଣା ? କିଏ ତାକୁ ତା ବୋଉ ପାଖରେ ପହଞ୍ଚେଇ ଦେବ ? ତା ଭିତରେ କୋହ ପରେ କୋହ ଉଠି ଆସୁଥାଏ । କାନ୍ଦି କାନ୍ଦି ସେ ପାଟି କରି ଡାକିଲା, ବୋଉଉ.....ବୋଉ ମ !

ପବନରେ ସେ ପାଖରୁ ଭାସି ଆସିଲା ବୋଉଉଉ....।

*(ଝଙ୍କାର, ଜୁନ୍, ୧୯୯୮)*



# ଭୂତ

**ସେ** ଦିନ କେମିତି କେଜାଣି ଟ୍ରେନଟା ଅନେକ ଲେଟ୍ ଥିଲା । ମାନ୍ଦ୍ରାସ-ହାଓଡ଼ା କରମଣ୍ଡଳ ଏକ୍ସପ୍ରେସ୍ ଦୁଇ ଘଣ୍ଟା ଲେଟ୍‌ରେ ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲା ବେଳକୁ ସକାଳ ୬ ହୋଇ ଯାଇଥାଏ । ଶୀତ ଦିନ ସକାଳର ଦ୍ୱିତୀୟ ଶ୍ରେଣୀ ଏ.ସି. କମ୍ପାଟମେଣ୍ଟ ଭିତରୁ ମୁହଁ ମୁଁ କାଢ଼ି ବାହାରକୁ ଦେଖିଲି । ଇସ୍, ମୋଟେ କିଛି ଦେଖାଯାଉ ନଥାଏ । ସବୁ ଯେମିତି ଧୂମାଳ ହେଇଯାଇଚି । ଧୂଆଁର କୁହୁଡ଼ିଟା ତୀବ୍ର ମର୍କରୀ ଲାଇଟ୍ ଗୁଡ଼ାକୁ ମଧ୍ୟ ହାତ ମୁଠାରେ ରଖି ଦେଇଥାଏ ଯେମିତି । ଆକାଶର ଅନ୍ଧାରୁଆ ଭାବଟା କେତେ ଯେ ଶକ୍ତିଶାଳୀ, ସେ କଥା ସେଇ ଲାଇଟ୍ ପୋଷ୍ଟ ଗୁଡ଼ାକୁ ଦେଖିଲେ ହିଁ ବୁଝିହେବ । ଅନ୍ଧାରଟା ତ ସବୁବେଳେ ଶକ୍ତିଶାଳୀ । ଆଲୋକକୁ ଜବତ କରି ନିଜ ହାତ ମୁଠାରେ ରଖିବାକୁ ତା' ଭିତରେ ସବୁବେଳେ ଗୋଟାଏ ଅଦମ୍ୟ ଇଚ୍ଛା ବଡ଼ ବେପରୁଆ ଭାବରେ ରାଜୁତି କରୁଥାଏ ।

ସୁଟ୍‌କେଶ୍‌ଟା ଧରି ମୁଁ ତଳକୁ ଓହ୍ଲେଇଲି ଏବଂ କୋଉ ପଟେ ଓଭରବ୍ରିଜଟା ଅଛି ଦେଖିବାକୁ ଚେଷ୍ଟା କରୁଥିବା ବେଳେ କୁଲିଟାଏ ଆସି ମୋତେ ଦେଖିଲା ଏବଂ କହିଲା ହଜୁର୍, ଏତେଦିନ ପରେ ଆସୁଚନ୍ତି ?

ମୁଁ ଚମକି ପଡ଼ିଲି । ନିଠେଇ ଦେଖିଲା ପରେ ଜାଣିଲି ସେ ଲଛମନ । ମୋତେ ସେ ଜାଣିଚି । ବିଶେଷ କରି ବାପା ଯେତେବେଳେ ଏଠି ଷ୍ଟେସନ ମାଷ୍ଟର ଥିଲେ, ମୁଁ ସେତେବେଳେ ଏଇ ପ୍ଲାଟଫର୍ମର ପଛ ପାଖଟାକୁ ସ୍ଥାୟୀ ଭାବରେ କ୍ରିକେଟ ପଡ଼ିଆ କରି ଦେଇଥିଲି, ଲଛମନ ସେଇ ଅଘୋଷିତ ଖେଳ ପଡ଼ିଆ ମୁଣ୍ଡରେ ଯେତେବେଳେ ଗାଡ଼ି ଆସିବାର ନଥାଏ, ସେତେବେଳେ ସେ ଝଙ୍କାଳିଆ ଆମ୍ବଗଛ ମୂଳରେ ଶୁଏ । କେତେଥର ତା' ଦେହରେ ଆମ ବଲ ବାଜିଚି ।

ସେ ଆମ ଖେଳକୁ ମନା କରି ପାରେନା । ମୁଁ ଯେଉଁଦିନ ବାଲେଶ୍ୱର ଛାଡ଼ି ଦିଲ୍ଲୀ ଚାଲିଗଲି ପାଠ ପଢ଼ିବାକୁ, ସେଇଦିନ ଆମେ ସେ ପଡ଼ିଆରୁ ମଧ୍ୟ ବିଦାୟ ନେଇଗଲୁ । ମୋ ପରେ ସେ ପଡ଼ିଆକୁ ମୋ ସାଥିମାନେ ଆଉ ଆସିଲେନି । ତେଣୁ

ଲଛମନଠୁ ମଧ ଏକ ପ୍ରକାର ଆମେ ସେ ଦିନ ବିଦାୟ ନେଲୁଁ ।

ପାଠ ପଢ଼ା ଛାଡ଼ି ମୁଁ ଚାକିରି କଲି ମାଡ୍ରାସରେ । ମଝିରେ ଥରେ ଅଧେ ମୁଁ ଯେତେବେଳେ ଛୁଟିରେ ଆସେଁ ସେତେବେଳେ ସବୁଥର ଅବଶ୍ୟ ମୁଁ ଲଛମନକୁ ଦେଖେନି । ତେବେ ମୁଁ ଯେ ତାକୁ ମନେ ମନେ ନ ଖୋଜିଚି ସେ କଥା ନୁହେଁ । କିନ୍ତୁ ଦେଖା ହୁଏନା ।

ଲଛମନ ବିହାରର ଛପରା ଜିଲ୍ଲାର ଲୋକ । କୁଆଡ଼େ ପନ୍ଦର ବର୍ଷ ବୟସ ବେଳୁ ସେ ବାଲେଶ୍ୱର ଆସି କୁଲି କାମ କରୁଚି । ମୋ ବାପାଙ୍କୁ ସେ ଯେତିକି ଭକ୍ତି କରେ, ବାପା ବି ସେମିତି ତାକୁ ଶ୍ରଦ୍ଧା କରନ୍ତି । ଶୁଣେଁ, ବାପା ରିଟାୟାର କଲାପରେ ମୋତିଗଂଜରେ ଘର କରି ରହିଲା ପରେ ଲଛମନ କେତେଥର ସେଠାକୁ ଯାଇଚି । କିନ୍ତୁ ତାଙ୍କ ମୃତ୍ୟୁ ପରେ ସେ ଆଉ ସେ ଆଡ଼କୁ କେବେ ଯାଇନି ।

ଲଛମନ ତାଙ୍କ ରେଳ ପୋର୍ଟର୍ସ ଇଉନିଅନର ଗୋଟେ ଛୋଟକାଟର ନେତା । ଯଦିଓ ସେ ମୋ ଜାଣିବାରେ କେବେ ନେତୃତ୍ୱ ନେଇ ଆଗକୁ ବଢ଼ି କିଛି କରିନି ତେବେ ତା' କଥାଟା କାହିଁକି ବଡ଼ ଟାଣୁଆ ଟାଣୁଆ ଲାଗେ । ତୀର ମାରିଲା ଭଳିଆ କଥାଟା ଭେଦିଯାଏ । ଖଣ୍ଡେ କଟି ଯାଏ ଯେମିତି । କଥା କହିଲା ବେଳେ ଆଖି ଦିଟା ଯେମିତି ରଡ଼ ନିଆଁ ପରି ଜଳୁଥାଏ । ବିଶେଷ କରି ଇଉନିଅନ୍ ବିଷୟରେ କଥା କହିଲା ବେଳେ ତା' ଆଖି ଦି'ଟାକୁ ଦେଖିବାର କଥା ।

ଆମେ ତ ଅନେକ ଥର ଖେଳ ଛାଡ଼ି ତା' ପାଟି ଶୁଣିଲେ ଦଉଡ଼ି ଆସି ଦୂରରୁ ତାକୁ ଦେଖୁଁ । କୁଲିମାନଙ୍କ ଗହଳି ଭିତରେ ସେ ବଜ୍ର ପରି କଥାଗୁଡ଼ାକ ତା' ପାଟିରୁ ଫୋପାଡ଼ି ଥିବାର ଦେଖିଲା ବେଳେ ଆମେ ସବୁ ଖଣ୍ଡେ ଦୂରରେ ଠିଆ ହୋଇ ତା ଆଖିରେ ସୁଦର୍ଶନ ଚକ୍ରର ଘୋରଣିକୁ ଦେଖୁ ଏବଂ ଆମ ନିଜ ଭିତରେ କହୁ, ଦେଖିଲୁ କେମିତି ନିଆଁହୁଳା ବାହାରୁଚି । ଆମେ ଆମ ଭିତରେ ଥଟ୍ଟା ତାମସା ହେଉଥିଲା ବେଳେ ସେ ଯଦି ଆମକୁ ଦେଖି ପକାଏ, ସେ ସାଙ୍ଗେ ସାଙ୍ଗେ ସାଧାରଣ ଅବସ୍ଥାକୁ ଫେରିଆସେ ଏବଂ ତା' ନିଜ ଗାମୁଛାକୁ ମୁଣ୍ଡରୁ ଖୋଲି କାନ୍ଧରେ ପକାଏ ଏବଂ ଆମ ଆଡ଼କୁ ଆସେ କହିବାକୁ ଯେ, ତମେ ପିଲାମାନେ ଏଠି କଅଣ ଶୁଣୁଚ ? ଯାଅ ଖେଳିବ ।

ତା' ମେଘ ଗର୍ଜନର ରଡ଼ି ଶୁଣି ଆମେ ଛାନିଆ ହୋଇ ସେଠୁ ପଳାଉ । ଆମେ ଯେ ତାକୁ ଡରିକରି ପଳାଉ ତା' ନୁହେଁ, ଏଇଟା ଥାଏ ଆମର ଗୋଟାଏ ମଜା ।

ଲଛମନ ମୋ ହାତରୁ ସୁଟ୍‌କେଶ୍‌ଟା ନେଲା ଏବଂ କହିଲା, ଟେକ୍ସିରେ ଯିବେ ? ତା' ହେଲେ ଆମେ ସେ ବ୍ରିଜରେ ଯିବା । ଟିକିଏ ଦୂର ପଡ଼ିବ । ସେ କିଛି ନୁହେଁ । ଆସନ୍ତୁ ।

ବାଲେଶ୍ୱର ଷ୍ଟେସନଟା ଯା ଭିତରେ ଅନେକ ବଦଳି ଗଲାଣି । ମୁଁ ବି ତ ଆସୁଚି ଚାରି ପାଞ୍ଚ ବର୍ଷ ପରେ । ଦୁଇ ରେଳ ଲାଇନ ମଝିରେ ଇଂରେଜ ଅମଳର ପୁରୁଣା ନାଲି ବିଲଡିଙ୍ଗଟା ସେମିତି ଠିଆ ହୋଇଚି । ବୋଧେ ସେମାନଙ୍କ କଥା ମନେ ପକେଇବାକୁ କି କଅଣ, ସେ ନାଲି ରଂଗଟା ଏବେ ବି ସେମିତି ସତେଜ ଅଛି । ଏବେ ସେ ବିଲଡ଼ିଂ ପାଖରେ ଆହୁରି କେତେ କୋଠା ତିଆରି ସରିଚି । ନୂଆ ଇନକୁଆରୀ ଅଫିସ୍ କମ୍ପୁଟ୍ରାଇଜଡ୍ ଟିକେଟ କାଉଣ୍ଟର, ଆଧୁନିକ ବିଶ୍ରାମାଗାର, ଶୌଚାଳୟ ଏମିତି ଅନେକ ।

ସବୁ ବଦଳି ଯାଇଥିଲେ ମଧ ବଦଳି ନାହିଁ ଗୋଟିଏ ଦୃଶ୍ୟ । ତାକୁ ପିଲାକାଳେ ଯେମିତି ଦେଖିଥିଲି ଆଜି ବି ସେମିତି । ସେଇ ଯେ ତୃତୀୟ ଶ୍ରେଣୀ ବିଶ୍ରାମାଗାର, ଯାହାକୁ ସରକାର ଲୋକଙ୍କ ଜୀବନଧାରଣ ମାନରେ ଅନେକ ଉନ୍ନତି ହୋଇଚି ବୋଲି କହିବା ପାଇଁ ଏକା ରାତିକେ ଗୋଟିଏ କଲମଗାରରେ ତୃତୀୟ ଶ୍ରେଣୀକୁ ଦ୍ୱିତୀୟ ଶ୍ରେଣୀ କରି ଦେଲେ, ସେଇ ଛୋଟ ହଲ୍‌ର ପ୍ରବେଶ ଦ୍ୱାର ପାଖରେ ଯେମିତି ଗାଁର ଲୋକମାନେ ଆସି ଖଣ୍ଡେ ମଇଳା ଧୋତି ପିନ୍ଧି ଫୁଙ୍ଗୁଳା ଦେହରେ ଖାଲି ମୁଣ୍ଡରେ ଠେକୋଟାଏ ଭିଡ଼ି ବିରାଟ ବିରାଟ ବସ୍ତାରେ ଗରମ ମୁଢ଼ି ବିକ୍ରି କରୁଥିବାର ଦୃଶ୍ୟ ଏବେ ବି ସେମିତି ଅଛି । ସେମାନେ ସେଠି ଧାଡ଼ି ବାନ୍ଧିଚନ୍ତି । ଦିନ ଦଶ ସରିକି ସେମାନେ ପଳାନ୍ତି । ଖରାବେଳେ ଆଉ ଦଳେ ଆସନ୍ତି ଏବଂ ସଞ୍ଜ ହେଲେ ଆଉ ଦଳେ । ସେମାନେ ଏମିତି ଭାଗ ବଣ୍ଟୁରା ହୋଇ ଆସନ୍ତି ଓ ଯାଆନ୍ତି । ତେଣୁ ରାତି ଦଶଟାରେ ମଧ ସେଠି ଗରମ ମୁଢ଼ି ମିଳେ । ପାଖରେ ଆଳୁଦମ ବି ମିଳେ । ଏକଦମ୍ ଲାଲ୍ ଟକ୍ ଟକ୍, ଦେଖିଲେ ପାଟିରୁ ଲାଳ ଗଡ଼ିପଡ଼େ ।

ମୁଁ ଏ ଦୃଶ୍ୟ ଦେଖିଲା ମାତ୍ରେ ମୋ ଭିତରେ କେମିତି ଗୋଟାଏ ଅନେକ ଦିନର ଜମି ରହିଥିବା ମୁଢ଼ି ପ୍ରତି ଅପରାଜେୟ ଲୋଭର ସହସ୍ର ଜିଭ ଉନ୍ନତ ହୋଇ ଉଠିଲେ । ଆଃ, ଏଇନେ ମୁଁ ସେଇ ବାଲେଶ୍ୱରିଆ ଟୋକା ହୋଇ ଥାଆନ୍ତି କି, ହା, ସେଇଠି ସେଇ ପୁରୁଣା ପୋଲ ତଳେ ସେତେବେଳେ ଆମର ଖଟି । ଆମେ କେତେ ସଚିତ୍ର ସନ୍ଧ୍ୟାରେ ଶାଳପତ୍ର ଦନାରେ ମୁଢ଼ି ଆଳୁଦମର ଅଜସ୍ର ଶ୍ରାଦ୍ଧ ନ କରିଚୁ ।

''ଅରୁଣଟା ମରିଗଲା ହଜୁର ।'' ଲଛମନ ସୁଟ୍‌କେଶ୍‌ଟାକୁ ମୁଣ୍ଡେଇ ଚାଲୁ ଚାଲୁ କହିଲା ।

ଆକାଶର ଅନେକ ଉଚ୍ଚରେ ଖଣ୍ଡ ଖଣ୍ଡ ମେଘମାଳା ପାର ହୋଇ ଉଡ଼ି ଯାଉଥିବା ଉଡ଼ାଜାହାଜଟି ହଠାତ୍ ତଳେ କଚାଡ଼ି ହୋଇ ପଡ଼ିଲା ପରି ମୁଁ ପିଲା କାଳର ମୁଢ଼ିଖିଆ ମଉଜରୁ ଆସି ବାସ୍ତବତା ପାଖରେ ବାଡ଼େଇ ହୋଇଗଲି ।

କୋ଼ଉ ଅରୁଣ ?

ସେଇ ମ । ଆପଣଙ୍କ ବେଳେ ନେତାଗିରି କରୁ ନଥିଲା ? ଏବେ କେତେ ବର୍ଷ ହେଲା ସେ ତ ବେଶ୍ ନାଁ ବି କରିଥିଲା । ତାକୁ ଏଠି କିଏ ନ ଜାଣେ ? କେତେଥର ଜେଲ ଯାଇଚି ।

ଓହୋ, ଅରୁଣ ଚୌଧୁରୀ । କେମିତି ? କଅଣ ହୋଇଥିଲା ?

ଲଛମନ ଷ୍ଟେସନ ପାର ହେବାକୁ ଓଭରବ୍ରିଜର ସିଡ଼ି ଚଢୁଥିଲା ।

ମୁଁ ଦେଖିଲି ସେ ଟିକିଏ ବେଶ୍ ଦୁର୍ବଳ ହୋଇ ପଡ଼ିଚି । ଆଗର ତାକତ୍ ତା' ଦେହରେ ଆଉ ନାହିଁ । ବୟସ ତ ହୋଇଚି ନିଶ୍ଚୟ । ଦେହ ଆଉ କଥା ମାନୁନି ବୋଧେ । କିନ୍ତୁ ମନ ତା'ର ଏବେ ବି ସେମିତି ଅଛି । ଯାହା ଦେଖିଥିଲି ୨୦ ବର୍ଷ ତଳେ । ଏବେ ବି ବାଘ ଗର୍ଜନର ଗଳାର ସ୍ୱର । ଗୋଟାଏ ବେପରୁଆ ଦାମ୍ଭିକତାର/ ଲଗାମ୍‌ଛଡ଼ା ଘୋଡ଼ା ଯେମିତି । ଏବେ ବି ଅଣ୍ଟା ନଇଁନି । ମନ ବି ।

ସେ ମୋ କଥାର କିଛି ଉତ୍ତର ନ ଦେବାରୁ ମୁଁ ଥମକି ଅପେକ୍ଷା କଲି । କହିଲି, ସୁଟ୍‌କେଶ୍‌ଟାକୁ ମୋ ହାତକୁ ଦଉନ । ଆଉ ଟିକିଏ ଉପରକୁ ଗଲେ ନବ ।

ସେ ସେମିତି ଆଗ ପରି ହସିଲା । କହିଲା, ଆପଣ ଯଦି ସୁଟ୍‌କେଶ୍ ଧରିବେ ତେବେ ମୁଁ କଅଣ ଧରିବି ?

ତାକୁ ତ ମୁଁ କେବେ ବି କଥାରେ ପାରୁ ନଥିଲି. ଅବଶ୍ୟ ପାରିବାକୁ କେବେ ଚେଷ୍ଟା ବି କରିନି । ଟିକିଏ ରହି ପଚାରିଲି, କେମିତି ମଲା ଅରୁଣ ? ତା'ର ତ ସେମିତି କିଛି ବୟସ ହୋଇ ନଥିଲା । କେତେ ଆଉ ହୋଇଥିବ ? ଏଇ ଚାଳିଶ ପାଖାପାଖି ନା ଆଉ କେତେ ?

ହଁ ସେଇ ପଇଁଚାଳିଶ ଖଣ୍ଡେ ହେବ । ତା' ପରେ ସେ ଟିକିଏ ଦମ୍ ନେଲା ଏବଂ କହିଲା, ମରୁ ଶଳା ! ତା'ର ମରିବା ଉଚିତ୍ । ବଞ୍ଚି ଆଉ କଅଣ କରିଥାଆନ୍ତା ଯେ ?

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଆରେ ଲଛମନ ଏମିତି କଅଣ କହୁଚି ? ମରୁ ଶଳା ? କଅଣ ଯାର ମାନେ ?

ସିଡ଼ିର ବୁଲାଣି ପାଖରେ ମୁଁ ଠିଆ ହୋଇଗଲି । ସେ ବି । ସୁଟ୍‌କେଶ୍‌ଟାକୁ ତଳେ ଥୋଇ ତା'ର ନାଲି ଗାମୁଛାରେ ପଗଡ଼ିଟାକୁ ଟିକେ ସଜାଡ଼ିଲା ।

କଅଣ ତୁମେ କହୁଛ ମୁଁ ବୁଝି ପାରୁନି । ମୁଁ ପଚାରିଲି ।

ହେଇ ଦେଖୁନାହାନ୍ତି । ସେ ମୋତେ ଦେଖେଇ ଦେଲା ବ୍ରିଜ୍ ଦେହରେ ମରା

ହୋଇଥିବା ଗୋଟାଏ ବିରାଟ ପୋଷ୍ଟରକୁ । ସେଥିରେ ଲେଖା ଅଛି, ବେଶ୍ ବଡ଼ ବଡ଼ ଅକ୍ଷରରେ-

'ଅରୁଣ ଚୌଧୁରୀର ଶବର ଶୋଭାଯାତ୍ରା ଓ ବିରାଟ ଶୋକସଭା । ଆସନ୍ତୁ ହଜାର ହଜାର ସଂଖ୍ୟାରେ ଯୋଗ ଦିଅନ୍ତୁ, ଜଣେ ମହାନ୍ ତଥା ବିପ୍ଲବୀ ବୀରର ପରଲୋକଗତ ଆତ୍ମା ପ୍ରତି ସମ୍ମାନ ଜଣାନ୍ତୁ ।'

ଏ ପ୍ରକାର ପୋଷ୍ଟର ମୁଁ ଆଗରୁ କେବେ କୋଉଠି ଦେଖିଥିବାର ମନେ ହେଉନି । ତେଣୁ ପୋଷ୍ଟର ଦେଖି ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି ।

କଅଣ ବନ୍ଧୁ କେବେ ଆସିଲ ? ମୋର ପୁରୁଣା ବନ୍ଧୁ ଛଗନ ଲାଲ ଜୟପୁରିଆ ମୋ ହାତକୁ ଟାଣି ନେଇ କର ମର୍ଦ୍ଦନ କରୁ କରୁ ପଚାରିଲେ । ମୋ ଆଖିଟା ସେତେବେଳଯାଏ ପୋଷ୍ଟର ଉପରେ ଥିଲା ।

ମୋତେ କିଛି କହିବାକୁ ସୁଯୋଗ ନ ଦେଇ ସେ କହିଲା, ଓହୋ ସେ ଅରୁଣର ମୃତ୍ୟୁକଥା ଦେଖୁଚ କି ? ସେ ହୋ ହୋ କରି ହସି ଉଠିଲା ।

ମୁଁ ଆହୁରି ଆଶ୍ଚର୍ଯ୍ୟ ହୋଇଗଲି, ଏ ଲୋକଗୁଡ଼ା ପାଗଳ ହୋଇଗଲେ ନା କଅଣ ? ଲୋକଟା ମରିଗଲା (ହୁଏତ ଆକସ୍ମିକ ଭାବରେ) ଆଉ ଏମାନେ ହସୁଚନ୍ତି ?

ମୁଁ ଛଗନଲାଲକୁ ମୋର ଉତ୍ସୁକତା ଚାପି ନ ପାରି ପଚାରିଲି, ଆରେ ଭାଇ କଅଣ ହୋଇଚି ମୋତେ ଆଗ କହିଲ ।

କୋଉ କଥା ? ଏଇ ଅରୁଣ କଥାଟି ? କେମିତି ଜାଣିବି ? ତୁମେ ଯେତିକି ଶୁଣିଚ ମୁଁ ବି ସେତିକି । ମୁଁ ନା ସେ ଶବ ଶୋଭାଯାତ୍ରାରେ ଯାଇଚି ନା ସେ ଶୋକସଭାରେ ଯାଇ ଅଶ୍ରୁ ତର୍ପଣ କରିଚି । ଖାଲି ଶୁଣିଚି ଟାଉନ୍‌ହଲ ପଡ଼ିଆରେ ଗୋଟାଏ ବିରାଟ ସଭା ହୋଇଥିଲା ଏବଂ ସେଥିରେ କୁଆଡ଼େ ସମସ୍ତେ ଏକ ସମୟରେ ଉଚ୍ଚସ୍ୱରରେ କାନ୍ଦିଥିଲେ ।

ଲଛମନ ସେତେବେଳକୁ ସିଡ଼ି ତଳକୁ ଓହ୍ଲେଇ ଗଲାଣି । ସେ ଡାକିଲା ହଜୁର, ଆସନ୍ତୁ ଡେରି କରନ୍ତୁନି । ଏଇ ରଘୁବୀରର ଟେକ୍ସିଟା ସେ ଆଡ଼କୁ ଯିବ । ତେଣୁ ଆପଣ ଯାହା ଦେଲେ ନେଇଯିବ । ସେ ଟେକ୍ସିର ଡିକି ଖୋଲିବାକୁ ଆରମ୍ଭ କଲାଣି ।

ଏଆଡ଼େ ଛଗନଲାଲ ସେତେବେଳକୁ ଉପରକୁ ଉଠିଲାଣି । ମୁଁ ଆସି ଟେକ୍ସି ପାଖରେ ପହଞ୍ଚିବା ମାତ୍ରେ ଲଛମନ ହାତକୁ ଦଶ ଟଙ୍କିଆ ନୋଟଟା ବଢ଼େଇ ଦେଲି । ସେ ନୋଟଟା ନେଉ ନେଉ କହିଲା, ଅରୁଣ ଚୌଧୁରୀ କଥା ମୁଁ ପରେ କହିବି ହଜୁର । ଆସିବି କେତେବେଳେ ସୁବିଧା ଦେଖି । ସେ ଆଉ ଗୋଟେ ଗ୍ରାହକ ପାଇବା ଆଶାରେ ବୋଧେ ତରତର ହେଉଥିଲା ।

ଶେଷ

ଟେକ୍ସି ଡ୍ରାଇଭର ରଘୁବୀର ତାକୁ ଚାହିଁ କହିଲା । ଓ ଅରୁଣ ଚୌଧୁରୀ କଥା ? ବାବୁ ଜାଣି ନାହାନ୍ତି ବୋଧେ । ଖବର କାଗଜ ଭର୍ତ୍ତି ହୋଇଗଲା ।

ତା'ପରେ ସେ ହସିଦେଲା । ରଘୁବୀରର ଦାନ୍ତଗୁଡ଼ାକ ବେଏତା ଭାବେ ବଢ଼ିଥିବାରୁ ସେ ହସିଲା ବେଳେ ସମଗ୍ର ପାଟିଯାକ ମେଲିଯାଏ ଏବଂ ବଡ଼ ଭୟଙ୍କର ଦେଖାଯାଏ ।

ଲଛମନ ସେତେବେଳକୁ ଉଭାନ ହୋଇଗଲାଣି । ମୁଁ ଆଉ ରଘୁବୀରକୁ ସେ ବିଷୟରେ କିଛି ପଚାରିବାକୁ ସାହସ ନ କରି ପଛ ସିଟ୍‌ରେ ବସୁ ବସୁ କହିଲି ମୋତେ ଟିକିଏ ମୋତିଗଂଜରେ ମିଲନ୍ କୋଠିରେ ପହଞ୍ଚେଇ ଦିଅ ।

ମୁଁ ଜାଣେ ଆଜ୍ଞା । ଆପଣ ବସନ୍ତୁ ।

ଆମ ଗାଡ଼ି ଷ୍ଟେସନ ବଜାର ପାର ହୋଇ ଗ୍ରୁପ୍ ରୋଡ୍‌ରେ ନ ଆସି ନୂଆ ବଜାର ଆଡ଼କୁ ଆସି କୋର୍ଟ ପାଖ ଦେଇ ମେନ୍‌ରୋଡ୍‌ରେ ଆସିଲା । ମୁଁ ମୋର ପ୍ରିୟ ସହରର ନୂତନ ରୂପ ଉପରେ ଆଖି ପକାଉ ପକାଉ ପୁଣିଥରେ ରଘୁବୀରକୁ ପଚାରିଲି, ଅରୁଣର କଅଣ ହୋଇଥିଲା କହି ପାରିବ ? ଏଇଟା କେବର କଥା ?

ରଘୁବୀର କହିଲା, କଥାଟା ତ ସେଇଠି । ଅରୁଣ ବାବୁର କଅଣ ହୋଇଥିଲା ସେ କଥା କେହି କହିପାରୁ ନାହାନ୍ତି । ତେବେ ହଠାତ୍ ମରି ଯାଇଥିବାରୁ ସେ ହାର୍ଟଫେଲ୍ କରିଥିବେ କିମ୍ବା ହୁଏତ ଆତ୍ମହତ୍ୟା କରିଥିବେ, କିଏ କେତେ ରକମ କହୁଚନ୍ତି ।

ମୁଁ ଆହୁରି ଆଶ୍ଚର୍ଯ୍ୟ ହେଲି । ହାର୍ଟଫେଲ୍ ପୁଣି ଆତ୍ମହତ୍ୟା । ପଚାରିଲି, କିନ୍ତୁ କେହି ଜାଣିନାହାନ୍ତି କେମିତି ? ଗୋଟେ ଲୋକର ଆକସ୍ମିକ ମୃତ୍ୟୁ ହେଲା । ଏତେବଡ଼ ଲୋକ । ସହରର ଅତି ଜଣାଶୁଣା । ସେ ପରି ଲୋକଟିଏ ହଠାତ୍ ମରିଗଲା । ଅଥଚ କାରଣଟା କେହି ଜାଣି ନାହାନ୍ତି କେମିତି ?

ରଘୁବୀର କହିଲା, କିଏ କହୁଚି ସେ ହଠାତ୍ ଏତେ ଟଙ୍କା ପାଇଲା ଯେ, ସେଥିରେ ଖୁସି ହୋଇ ହାର୍ଟଫେଲ୍ କଲା । ଆଉ କିଏ କହୁଚି ସେ.... ସେ ହଠାତ୍ ଅଟକି ଗଲା ଏବଂ କହିଲା, ଏବେ ପୋଲିସ୍ କୁଆଡ଼େ କଥାଟା ଇନ୍‌କ୍ୱାରୀ କରୁଚି । ମୃତ୍ୟୁ ପରେ ଏଥିପାଇଁ ଚାରିଆଡ଼େ ଗୋଟାଏ କୋକୁଆ ଭୟ ସୃଷ୍ଟି ହୋଇଚି । ଚାରିଆଡ଼େ ସିଆଇଡ଼ିମାନେ ବୁଲୁଚନ୍ତି । ଜନରବ ଅନେକ ବେଶି । ତେଣୁ କେହି କିଛି କହୁନାହାନ୍ତି । ସମସ୍ତଙ୍କ ପାଟି ସିଲେଇ ହୋଇଯାଇଚି ଯେମିତି ।

କାହିଁକି କେଜାଣି ମୋତେ ରଘୁବୀରର କଥାଟା ଗୋଟାଏ ଗାଁ ଟାଉଟର କଥା ପରି ଲାଗିଲା । ମୁଁ କହିଲି ତମେ ଟିକିଏ ଗାଡ଼ି ରଖ ।

ବଜାର ମଝିରେ ଗାଡ଼ି ରହିଲା । ରାସ୍ତା କଡ଼ରେ ଅନେକଗୁଡ଼ିଏ ଛୋଟ ଛୋଟ ପାନ, ଚା' ଓ ଜଳଖିଆ ଦୋକାନ ଥିଲା । ସେଠି ପାଖରେ ରାଇସ୍ ମିଲ୍‌ରେ କାମ କରୁଥିବା କୁଲିମାନେ ସେ ସବୁ ଦୋକାନର ମାଲିକ । ରାଇସ୍ ମିଲ୍‌ଟା ଏବେ ବନ୍ଦ ହୋଇଗଲାଣି । ତେଣୁ ସେ କୁଲିମାନେ ଏବେ ସେଇ ଉଠା ଦୋକାନ କରି ଚଳୁଛନ୍ତି । ମୁଁ ଜାଣେ ଅରୁଣ ସେ ଲୋକମାନଙ୍କର ଏକଦା ଅତି ପ୍ରିୟ ଥିଲା । ଦିନର ଅନେକ ସମୟ ସେତେବେଳେ ଅରୁଣକୁ ସେଇଠି ଦେଖିବାକୁ ମିଳୁଥିଲା । ଘଣ୍ଟା ଘଣ୍ଟା ସେ ସେଠି ଚା' ଖାଉଥାଏ ଓ ସିଗାରେଟ୍ ବା ବିଡ଼ି ଟାଣୁଥାଏ । ବେଳେ ବେଳେ ସେ ବସ୍ତିରେ ରାତିରେ ଖାଏ ମଧ୍ୟ । ବେଶି ରାତି ହୋଇଥିଲେ ସେଠି ମଧ ଶୋଇପଡ଼େ । ତା'ର ଶୋଇବା ପାଇଁ ସେମିତି କିଛି ଦରକାର ନଥାଏ । ବାସ୍, ଖଣ୍ଡେ ଦଉଡ଼ିଆ ଖଟ ଆଉ ଗୋଟାଏ ଚାଦର ହେଲେ ହେଲା । ସକାଳୁ ଉଠି ସେ ତା' ରାସ୍ତାରେ ଚାଲିଯାଏ ।

ମୁଁ ଏକଥା ମଧ ଜାଣିଥାଏ, ଅରୁଣ କୁଆଡ଼େ ଗତ ଏମରଜେନ୍ସି ସମୟରେ ସେଇ ବସ୍ତିରେ ଗୋଟାଏ ବର୍ଷ ଲୁଚି ରହିଥିଲା । ତାକୁ ଧରାଇଦେଲେ ସରକାର ଏକ ଲକ୍ଷ ଟଙ୍କା ଦେବେ ବୋଲି ମଧ ଘୋଷଣା କରିଥିଲେ । ତଥାପି ପୋଲିସ୍ ତା'ର ପତ୍ତା ପାଉଲାନି । ସେମାନେ ସେଇ ବସ୍ତିକୁ ରାତିଅଧିଆ କେତେଥର ଘେରାଓ କରିଚନ୍ତି । କିନ୍ତୁ ତାକୁ ପାଇପାରି ନାହାନ୍ତି । ସେ କେମିତି ସେଠୁ ଖସି ପଳାଏ କେଜାଣି । ଏ ବିଷୟରେ ଏମରଜେନ୍ସି ପରେ ଅନେକ ଗୁଡ଼ିଏ କାହାଣୀ ସୃଷ୍ଟି ହୋଇଗଲା, ଅରୁଣ କେମିତି ପୋଲିସ୍‌କୁ ବୁଦ୍ଧୁ ବନଉଥିଲା ସେ ଗପ କହି ଲୋକମାନେ ହସି ହସି ଗଡ଼ି ଯାଉଥିଲେ ।

ସେତେବେଳେ ଏଇ ସବୁ କାରଣରୁ ଲୋକେ ଅରୁଣକୁ ସୁଭାଷ ବୋଷ କିମ୍ୱା ବାଘା ଯତୀନ୍ ସହିତ ତୁଳନା କରୁଥିଲେ ।

ମୁଁ ଗୋଟେ ପାନ ଦୋକାନ ପାଖରେ ଠିଆ ହୋଇ ଦଶ ବାର ବର୍ଷର ପିଲାଟିକୁ କହିଲି ଚାରିଖଣ୍ଡ ସାଧା ଧଣିଆ ଦିଆ ପାନ ଭାଙ୍ଗିବାକୁ, ତା' ପରେ ଗୋଟାଏ ସିଗାରେଟ୍ ମଧ ମାଗିଲି । ସେ ମୋତେ ସିଗାରେଟ୍‌ଟା ବଢ଼େଇ ଦେଲା ବେଳକୁ ମୁଁ ଦେଖିଲି ଆଖ ପାଖରେ ଆଉ କେହି ନାହିଁ । ମୁଁ ପିଲାର ଆଉ ଟିକିଏ ପାଖକୁ ଯାଇ କହିଲି, ଆରେ ବାବୁ କହି ପାରିବୁ ଅରୁଣର କଅଣ ହୋଇଥିଲା ? ମୋ କଥାଟା ବୋଧେ ପାଖ ଚା' ଦୋକାନୀ ଶୁଣି ପାରିଲା । ସେ ମୋ ପାଖକୁ ଆସି କହିଲା କଅଣ ଆଉ ହବ ଆଜ୍ଞା । ଯାହାର ମରିବାର ବେଳ ଆସିଲା ସେ ମଲା । ତାକୁ ବା କିଏ ଅଟକେଇବ ? ତା' ଭାଗ୍ୟରେ ସେଇଟା ଲେଖା ଥିଲା । ତା'ପରେ ହଠାତ୍ ମୋତେ ପଚାରିଲା, ଆପଣ କେଉଁଠୁ ଆସିଲେ ?

ମୁଁ ଜାଣିଲି ଏଠି ମଧ ମୋ ଉଦ୍ଦେଶ୍ୟ ସାଧିତ ହେବ ନାହିଁ । ମୁଁ କହିଲି, ମୁଁ

ପରା ମୋତିଗଞ୍ଜର ଲୋକ । ଏଇଠି ଆମର ଘର । ଏବେ ସିନା ବାହାରକୁ ଚାଲିଗଲୁଁ ।

ସେ ସାଙ୍ଗେ ସାଙ୍ଗେ କହିଲା, ଓହୋ ଆପଣ ପ୍ରବୀର ସାଆନ୍ତରାଙ୍କ ପୁଅ କି ? ଏବେ କଅଣ ଦିଲ୍ଲୀରେ ନାଁ କୋଉଠି ଚାକିରି କରୁଚନ୍ତି ପରା ? ମୁଁ ହସିଲି ।

ସେ କହିଲା, ଆପଣ ତ ତେବେ ଅରୁଣ ବାବୁଙ୍କୁ ଭଲ ଭାବେ ଚିହ୍ନି ଥିବେ ।

ଆରେ ଚିହ୍ନିଚି ମାନେ ? ଆମେ ପରା ଏକା କଲେଜରେ ପଢ଼ୁଥିଲୁ । ସେ ମୋର ଦୁଇବର୍ଷ ଉପରେ । ଆମେ ସେତେବେଳେ ଖୁବ୍ ସାଙ୍ଗ ଥିଲୁ । କିନ୍ତୁ ବାଲେଶ୍ୱର ଛାଡ଼ିବା ପରଠୁ ମୋର ଆଉ ତା' ସହିତ କିଛି ସମ୍ପର୍କ ନଥିଲା ।

ତେବେ ତ ଆପଣ ଆମ ନିଜ ଲୋକ । ତା' ପରେ ସେ କହିଲା ଆଜିକାଲି ଯୁଗରେ କିଏ କେତେବେଳେ ମରୁଚି ହଜୁଚି ତା'ର ଖବର କିଏ ରଖୁଚି ।

ମୁଁ ଦେଖିଲି, କଥାଟାକୁ ଏତେ ସହଜରେ ସେ କହିଗଲା ଯେ ସେଥିରେ ଭିତରେ କଅଣ ଅଛି ସେ କଥା ଜାଣିବା ମୁସ୍କିଲ । ମୁଁ ଗାଡ଼ିକୁ ଫେରି ଆସିଲି ।

ସେ ଦିନ ସଞ୍ଜବେଳେ ମୋର ହଠାତ୍ ଅବନୀ ସହିତ ଦେଖାହୋଇଗଲା । ଅବନୀ ମୋ ସହିତ କଲେଜରେ ପଢ଼ୁଥିବା ବେଳେ ପୋଲିସ ବିଭାଗରେ ଚାକିରି ପାଇ ଚାଲିଗଲା । ଏତେଦିନ ପରେ ତାକୁ ଦେଖି ମୁଁ ଭାବ ବିହ୍ୱଳ ହୋଇପଡ଼ିଲି । ପୁରୁଣା ପ୍ରେମିକା କି ପୁରୁଣା ସ୍ମୃତି ସହିତ ହଠାତ୍ କେମିତି କେତେବେଳେ ଭେଟାଭେଟି ହୋଇଗଲେ ଆଉ ଛାଡ଼ିବାକୁ ଇଚ୍ଛା ହୁଏନି । ବେଶ୍ କିଛି ସମୟ ଜାବୁଡ଼ି ଧରି ହୃଦୟ ସହିତ ହୃଦୟ ମିଶେଇ ଦେଇହୁଏ । ଆଉ ଯେତେ ସବୁ ଜରୁରୀ କାମ ଥିଲେ ବି ତାକୁ ପଛକୁ ରଖି ଦେଇହୁଏ । ସେଇ କେତେଟା ମୁହୂର୍ତ୍ତ ମଣିଷ କେମିତି ଗୋଟାଏ ଆତ୍ମ ବିଭୋର ହୋଇଯାଏ । ଆଉ ସେଠୁ ଫେରିଲା ପରେ ମନଟା ସଫା ଓ ହାଲ୍କା ହୋଇଯାଏ । ବେଶ୍ ଫୂର୍ତ୍ତି ଲାଗେ ।

ଅବନୀ ମୋତେ କୁଣ୍ଢେଇ ପକେଇଲା । କହିଲା ତୋତେ ଏତେଦିନ ପରେ ଦେଖିବି ବୋଲି ମୁଁ ମୋଟେ ଭାବି ନଥିଲି । ଅବନୀ ମୋର ରୁମ୍‌ମେଟ୍ । ଆମେ ଏକା ସାଥିରେ ଫୁଟବଲ୍ ଖେଳୁଥିଲୁଁ । ସିନେମା ବି ଦେଖୁଥିଲୁଁ । ଏମିତିକି ବରାବର ଆମେ ଗୋଟାଏ ସିଗାରେଟ୍ ନେଇ ଦୁହେଁ ଟାଣୁଥିଲୁ । ଆମେ ଦୁହେଁ କଲେଜରେ ଏମିତି ଯୋଡି ଥିଲୁ ଯେ, ଖାଲି ଖେଳିବା, ବୁଲିବା ଓ ସିନେମା ଦେଖିବା ଇତ୍ୟାଦି ଭଲ କାମ ସାଥି ହୋଇ କରୁଥିଲୁଁ ତା' ନୁହେଁ, ବେଳେ ବେଳେ ସାଥିହୋଇ ଖରାପ କାମ ମଧ କରୁଥିଲୁ । ଖରାପ କାମଟାକୁ ଖରାପ ବୋଲି ଜାଣି କରିବାର ଦୁଃସାହସ ଆଜିକାଲି ଯେମିତି ଅଛି ଆଗେ ସେମିତି ନଥିଲା । ତଥାପି ଆମେ କରୁଥିଲୁଁ ।

ଥରେ ତ ଏମିତି ହୋଇଥିଲା । ଆମେ କ୍ଲାସରେ ଦୁହେଁ କଥାବାର୍ତ୍ତା ହୋଇ

ବିଛଣା ଉପରକୁ ଦୁଇ ପାଖରୁ ଦୁଇଟା ଗୋଲାପ ଫୁଲ ଫୋପାଡ଼ି ଦେଲୁଁ । ଏବଂ ତା' ପରେ ପୂରାପୂରି ଅନ୍ୟମନସ୍କ ହୋଇଯିବାର ଛଳନା କଲୁଁ । ଯେମିତି କିଛି ଜାଣିନୁଁ କଅଣ କରିଛୁଁ । ସେତ ମୋ ଉପରକୁ ଚିହିଁକି ଆସିଲା । ମୁଁ ଗୋଟିଏ ଫୁଲ ଫୋପାଡ଼ିଥିଲି । ସେ ମୋ ଉପରକୁ ଏକାଥରେ ପାଞ୍ଚିଏ ଖରାପ ଶବ୍ଦ ଫୋପାଡ଼ିବାରେ ଲାଗିଲା । ମୋ ଅବସ୍ଥା ଦୟନୀୟ ହେବାର ଦେଖି ଅବନୀ ସେ ପଟୁ ଆସି କହିଲା, ଆରେ ମୁଁ ବି ତ ଗୋଟାଏ ଫୋପାଡ଼ିଚି । ମୋତେ କିଛି କହୁନ ଯେ ? ସତେ ଯେମିତି ଏ ଅବସ୍ଥାରେ ଗାଳିଟା ବି ମିଠା ଲାଗେ ।

ଅବନୀ ଜବରଦସ୍ତ ତା' ପୋଲିସ ଜିପ୍‌ରେ ମୋତେ ବସେଇ ଥାନାକୁ ନେଇଗଲା । ମୁଁ ମୋ ଜୀବନରେ କେବେ ଥାନାକୁ ଯାଇ ନଥିଲି କି ଦେଖି ନଥିଲି । ସେଥର ଥାନାରେ ଅଦ୍‌ଭୁତ କଥା କେତେଟା ଦେଖିଲି । ଥାନାର ବିରାଟ ଲମ୍ବା ବାରଣ୍ଡାଟାରେ ଗୋଟାଏ ପାଖରେ ଗୋଟାଏ ଲୋକକୁ ଜଣେ ପୋଲିସ ନିର୍ଘାତ ବାଡ଼ଉଥାଏ ଏବଂ ସେ ଲୋକଟା ମାଆଲୋ ବୋପାଲୋକହି ତଳେ ଗଡ଼ି ଯାଉଥାଏ । ସେଇ ବାରଣ୍ଡାର ବିପରୀତ ପାଖରେ ଗୋଟାଏ କୋଣରେ ବୋଧେ ଥାନାକୁ ଧରା ହୋଇ ଆସିଥିବା କୌଣସି ଗୋଟାଏ ଅପେକ୍ଷାକୃତ ମଧ୍ୟବୟସୀ ଏବଂ ଆପାତତଃ ଟିକେ ଭଲ ଦେଖା ଯାଉଥିବା ସ୍ତ୍ରୀ ଲୋକ ସହିତ ଆଉ ଜଣେ ସାଧାପୋଷାକଧାରୀ ପୋଲିସ ଏତେ ପ୍ରେମାଳାପରେ ବ୍ୟସ୍ତ ଯେ, ସେ ସ୍ତ୍ରୀଲୋକଟି ହସି ହସି କାଉଳି ହୋଇଯାଉଥାଏ । ସେମାନେ ଏମିତି ମସ୍‌ଗୁଲ ଥିଲେ ଯେ, ସେମାନେ ଆମର ଆଗମନ କଥା ମୋଟେ ଜାଣିପାରିଲେନି ।

ମୋ' ଗୋଡ଼ ଟିକିଏ ଅଟକି ଗଲା । ଅବନୀ ମୋତେ ଡାକିଲା ତା' ରୁମ୍ ଭିତରକୁ । ଆ, ସେ ସବୁ କଅଣ ଦେଖୁଚୁ ? ଏଠି ସେମିତି ଚାଲେ ।

ମୁଁ କହିଲି ତୋର ଏଠି ବିଚିତ୍ର କଥା ସବୁ ଦେଖିବାକୁ ମିଳୁଚି ।

ଆରେ ବିଚିତ୍ର ଆଉ କଅଣ ? ଏଇଟା ହେଉଚି ରିଏଲ୍ ପୃଥିବୀ । ଏଠି ଗୋଟିଏ ଘର ଭିତରେ ତୁ ହସ କାନ୍ଦ, ସୁଖ ଦୁଃଖ, ନ୍ୟାୟ ଅନ୍ୟାୟ ଏବଂ ଏପରିକି ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସବୁ ଦେଖିପାରିବୁ । ଖାଲି ସେତିକି ? ହେଇ ଦେଖିନୁ, ମୋ ପଛପଟେ କାନ୍ଥରେ ଗାନ୍ଧୀ, ନେହେରୁ ଓ ଅରବିନ୍ଦଙ୍କ ଫଟୋ ସବୁ ଥିଲାବେଳେ ମୋ ସାମ୍ନା ପଟେ ଏ ସହରର ବିଖ୍ୟାତ ଅପରାଧିମାନଙ୍କର ଫଟୋ ବି ଶୋଭା ପାଉଚି । କଅଣ ଯାର ଅର୍ଥ ? ତା'ର ଅର୍ଥ ଏଇଆ ଯେ, ମୁଁ ଗାନ୍ଧୀ, ନେହେରୁଙ୍କୁ ପଛ କରି ପାରେଁ, କିନ୍ତୁ ଏ ମହାତ୍ମାମାନଙ୍କୁ ମୋତେ ସବୁବେଳେ ସାମନାରେ ରଖିବାକୁ ପଡ଼ିବ । ଆଉ ତୁ ଜାଣିଚୁ ନା, ଏଇମାନଙ୍କ ଭିତରୁ ଆଜି କେତେଜଣ ଏ ସହରର ମାନ୍ୟଗଣ୍ୟ ବ୍ୟକ୍ତି ।

ମୋର ହଠାତ୍ ଅରୁଣ କଥା ମନେ ପଡ଼ିଗଲା । ଏତେବେଳ ଯାଏ ମୁଁ ତା' କଥା ପୂରାପୂରି ଭୁଲି ଯାଇଥିଲି ।

ମୁଁ ପଚାରିଲି, ଆରେ ଅବନୀ, ତୁ ଏ ଅରୁଣର ମୃତ୍ୟୁ କଥା କିଛି ଜାଣିଚୁ ?

ଅରୁଣ ? କୋଉ ଅରୁଣ ? ସେ ଆଶ୍ଚର୍ଯ୍ୟ ହୋଇ ମୋତେ ପଚାରିଲା ।

ଆରେ ତୁ ଅରୁଣକୁ ଜାଣିନୁ ? ଅରୁଣ ଚୌଧୁରୀ ?

ଓହୋ, ଅରୁଣ ଚୌଧୁରୀ । ଗତ ଚାରିଦିନ ଭିତରେ ତିନିଜଣ ଅରୁଣ ଏଠି ମଲେଣି । ସେଇଥିପାଇଁ ପଚାରିଲି । ସେ ଟିକିଏ ରହିଲା, ତା'ପରେ କହିଲା, କୋଉ କବିରେ ସିଏ ଯିଏ ଥରେ କହିଥିଲେ,

'ଆଉ ମୁଁ ପାରୁନି ପ୍ରିୟତମା ମୋର, ଆଉ ମୁଁ ପାରୁନି ଦେଖି,
ବୁଜିଦିଅ ତୁମେ, ବୁଜିଦିଅ ଆଜି, ଏ ମୋର ଦୁଇଟି ଆଖି ।
ଭରିଦିଅ ତହିଁ ସାରା ଜଗତର ନିବିଡ଼ ଅଂଧକାର,
ଟାଣିଦିଅ ତୁମେ, ଟାଣିଦିଅ ଘନ ତିମିରର ଯବନିକା ।'

ଏଃ, ଆଉତ ମନେ ପଡୁନି । ଆଉ ଏଇ କବିତାଟାକୁ, ତୋର ମନେ ଅଛି ନା, ସେ ଧୋତି ପିନ୍ଧା କବି ଜଣକ, ଯିଏ କହୁଥିଲେ ବିନା ବିପ୍ଳବରେ କିଛି ହୋଇପାରିବନି, ଯେତେବେଳେ ଆବୃତ୍ତି କରି ଗାଉଥିଲେ, ଆସରଟା ଆମର ଜମି ଯାଉଥିଲା, ନୁହେଁରେ ? କିଏ କହିଲୁ ? ବ୍ରଜ ରଥ ନା ?

ଅବନୀ ସିଗାରେଟ୍ ନେଲା ଏବଂ ମୋ ଆଡ଼କୁ ବଢ଼େଇ ଦେଇ କହିଲା, ଆରେ ଭାଇ କୁଆଡ଼େ ଗଲା ସେ ଦିନ ?

ମୁଁ ଦେଖିଲି ଅବନୀର ଏବେ ମଧ କବି ଭାବ ଯାଇନି । ସେତେବେଳେ ସେ ବେଳେ ବେଳେ କବିତା ଲେଖୁଥିଲା । କହିଲା, ହଉ, ମୁଁ ତୋତେ ଅରୁଣ ଚୌଧୁରୀ କଥା କହୁଥିଲି ପରା ?

ନୋ ଅଫିସିଆଲ ରିପୋର୍ଟ । ସେ ନିଃସଂକୋଚରେ କହିଗଲା । ତାପରେ କହିଲା, ଆଉ କହ । ତୁ ସେ ଅରୁଣ ଫରୁଣ କଥାଗୁଡ଼ା କହନା । ସେ ସବୁ ପଲିଟିକାଲ କଥା । ଆଜି ଏ ସନ୍ଧ୍ୟାଟାକୁ ଆମେ ପଲିଟିକ୍ସ ଆଲୋଚନା କରି ନଷ୍ଟ କରିଦବାନି । ତୁ ତୋ କଥା କହ, ତୋ ବିବି କଥା, ତୋ ପିଲାଛୁଆ କଥା, ତୋ ଚାକିରି କଥା, ତୋ ପ୍ରେମ କଥା । ଯଦି ତୋ'ର ସେମିତି କିଛି ଥାଏ । ତା'ପରେ ସେ ପାଟିକଲା, ଏ ପହରା....।

କନେଷ୍ଟବଲଟିଏ ଆସି ଠିଆ ହେଲା ।

ଯା. ବାହାରୁ କବାଟ ଆଉଜାଇ ନେ । କାହାକୁ ଏଠାକୁ ଆସିବାକୁ ଦବୁନି, ବୁଝିଲୁ ? ମୋତେ ଖୋଜିଲେ ନାହାନ୍ତି ବୋଲି କହିଦେବୁ ।

ମୁଁ ଦେଖିଲି ଅବନୀ ପାଟିରେ ବାଡ଼ବତା ରହୁନାହିଁ । ସେ ଏମିତି ପ୍ରଗଳ୍ଭ ବରାବର । ସେ ଏବେ ତା ପୂର୍ବ ଜୀବନକୁ ଫେରି ଆସିଚି । କିନ୍ତୁ ଅରୁଣ କଥା ଯେ ତା'ଠୁ ଆଉ ମିଳିବନି ଏଥିରେ ମୁଁ ନିଃସନ୍ଦେହ । ତେବେ ପଲିଟିକ୍ସ କଥାଟା ଶୁଣି ମୁଁ ଆହୁରି ସମସ୍ୟାର ଜାଲରେ ଛନ୍ଦି ହୋଇପଡ଼ିଲି ।

ଅବନୀ ସେଦିନ ମୋତେ ଗୋଟାଏ ହୋଟେଲକୁ ଡିନର ପାଇଁ ଡାକିଥିଲା । କହିଲା ୧୦ଟା ବେଳକୁ ଆସିବୁ । ଆମେ ତ ପୋଲିସିଆ ଲୋକ । ରାତି ହେଲେ ଆମର କାମ ଆରମ୍ଭ ହୁଏ । ମାନେ ପୃଥିବୀକୁ ଯେତେବେଳେ ଅନ୍ଧାର ଗ୍ରାସିପକାଏ, ଆମେ ସେତେବେଳେ ବାହାରି ପଡୁ । ଅନ୍ଧାରରେ ଆମେ ସତ୍ୟର ଅନୁସନ୍ଧାନ କରୁ । ଦିନରେ ବେଶୀ ଆଲୁଅ ଥାଏ କି ନା । ଦେଖି ହୁଏନି । ଆଖି ଝଲସି ଯାଏ । ସତ୍ୟ ଦେଖାଯାଏନା ।

ସେ ହୋ ହୋ ହୋଇ ହସିଲା । ତା' ପରେ କହିଲା ଟିକିଏ ଡେରି ହେଲେ ଭଲ । ଆଃ, ରାତି ପାହୁ ସେଇଠି । କ୍ଷତି କଅଣ ? ବଡ଼ ଗମ୍ଭୀର ହୋଇ ସେ ପୁଣି କହିଲା କେତେ ରାତି ଆମର ଏମିତି ନ ପାହିଚିରେ ?

ଠିକ୍ ରାତି ଦଶଟା ବେଳକୁ ମୁଁ ପହଞ୍ଚିଲି ହୋଟେଲ୍ ପାମ୍ ବିଚ୍‌ରେ । ଗୋଟାଏ ନୂଆ ହୋଟେଲ୍ । କେହି ଜଣେ ଏନ୍.ଆର.ଆଇ. ସେଠି ଏ ଛ ଦୁଇ ତିନି ବର୍ଷ ହେଲା ତିଆରି କରିଚି । ହୋଟେଲ୍‌ର ସ୍ଥାପତ୍ୟ ଦେଖିଲେ ଆଖି ଲାଖିଯାଏ । ଏମିତି ଗୋଟାଏ ନିର୍ଜନ ଜାଗାରେ ଏତେ ସୁନ୍ଦର ହୋଟେଲଟିଏ ଜଣେ ଏନ୍.ଆର.ଆଇ. କାହିଁକି ତିଆରି କଲେ ବୁଝି ହୁଏନା । ବାଲେଶ୍ୱର ଭଳିଆ ଗୋଟାଏ ଛୋଟ ସହରରେ ଏବଂ ଅପେକ୍ଷାକୃତ କମ ଦର୍ଶନୀୟ ସ୍ଥାନ ଥିବା ସହରରେ ଏ ହୋଟେଲ୍ କୋଉ କାମକୁ ଆସିବ ? ପାଶ୍ଚାତ୍ୟ ଆଭିଜାତ୍ୟରେ ଭରପୂର ଏଇ ହୋଟେଲ୍ ସଞ୍ଜ ହେଲେ ସ୍ୱପ୍ନପୁରୀ ହୋଇ ଠିଆ ହୋଇଯାଏ । କିନ୍ତୁ ତା' ଚାରି ପାଖରେ ଲୋକ ଗହଳିର ସ୍ୱଚ୍ଛତା ଦେଖିଲେ ମନଟା ଆପେ ଆପେ ଛୋଟ ହୋଇଯାଏ ।

ପ୍ରଥମ ହଲ ପାର ହୋଇ ମୁଁ ଯେତେବେଳେ ବାର୍ କରେ କରେ ଯାଇ ୩୩୨ ନମ୍ବର ରୁମ୍‌କୁ ଯାଉଥିଲି, ସେତେବେଳେ ମୋର ହଠାତ୍ ବାଁ ପଟେ ଥିବା ଗୋଟିଏ ଛୋଟ କାଫେରେ ନଜର ପଡ଼ିଲା । ଅବନୀ କୋଉଠି ଆସି ମୋତେ ଅପେକ୍ଷା କରିଥିବ ବୋଲି ମୋର ଧାରଣା ହେଉଥିଲା । ଚାରିଆଡ଼େ ଆଲୁଅ ସେତେବେଳକୁ ନିସ୍ତେଜ ଓ ନିସ୍ତବ୍ଧ ହୋଇ ଆସିଲଣି । ସେ ଘରଟାରେ ସେମିତି କିଛି ଭଲ ସାଜସଜା ନଥିଲା ।

ତେବେ ସାଧାରଣ ବୋଲି ମଧ କୁହାଯାଇ ପାରିବନି । 'ସିମ୍ପଲ ଇଜ ବିଉଟିଫୁଲ' ନ୍ୟାୟରେ ସେଥିରେ ଆଭିଜାତ୍ୟର ଅହଂକାରଟିଏ ଥିଲା । ମୁଁ ଅବନୀକୁ ଖୋଜିବା ପାଇଁ ତା' ଭିତରେ ପଶିଗଲି । ନଜର ପଡ଼ିଲା, ସେ ଛୋଟ ହଲଟାର ଏକଦମ୍ ଗୋଟାଏ କୋଣକୁ । କିଏ ଜଣେ ବସିଚି ଏକୁଟିଆ । ଉପର ଲାଇଟ୍‌ରୁ ବେଶ୍ ଉଜ୍ଜଳ ଆଲୋକର ରେଖାଟିଏ ତା ମୁଣ୍ଡ ଉପରେ ଅଜାଡ଼ି ହୋଇ ପଡୁଚି ।

ସାମନା ଟେବୁଲ୍ ଉପରେ ଗୋଟାଏ ଲମ୍ବା ହୁଇସ୍କି ବୋତଲ । ଠିପି ଖୋଲା ହୋଇନାହିଁ । ଗୋଟାଏ ମାତ୍ର ଗ୍ଲାସ ଓ ଗୋଟିଏ ପ୍ଲେଟରେ କିଛି ଖାଦ୍ୟ ବୋଧେ ମାଂସ ପକୋଡି ହେବ କି କଅଣ । ହୁଏତ ଲୋକଟି କାହାକୁ ଅପେକ୍ଷା କରିଚି ।

ଉପରକୁ ଉଠିଥିବା ଗୋଟାଏ ଓଭାଲ୍ ଟାଇପର ସିଡ଼ିକୁ ଅତିକ୍ରମ କରି କେତେଟା ଫୁଲ କୁଣ୍ଡକୁ ଆଡ଼େଇ ମୁଁ ଯେତେବେଳେ ଆଉ ଟିକିଏ ଆଗେଇ ଗଲି, ଗୋଟାଏ ଗୋଲାକାର ଖମ୍ବ ପାଖରେ ମୁଁ ଥମକି ଛିଡ଼ା ହୋଇଗଲି । କିଏ ଏ ଭଦ୍ରଲୋକ ? ସେ ଖୁବ୍ ଚିନ୍ତାମଗ୍ନ ଥିଲେ । ସେ ସୋଫା ଉପରେ ବସି କପାଳ ଉପରେ ଝୁଲୁଥିବା କେତେକ କୃତ୍ରିମ ଫୁଲର ପେଣ୍ଡାକୁ ଦେଖୁଥିଲେ । ତାଙ୍କ ଆଖି ସେଇଠି ଲାଖି ଯାଇଥିଲା ।

ମୁଁ ଚମକି ପଡିଲି । ଇଏ କଅଣ ଅରୁଣ ? ଠିକ୍ ସେମିତି ଦେଖାଯାଉଚି । ମୁଁ ଖମ୍ବ ପଛପଟେ ଲୁଚିଗଲି । କିନ୍ତୁ ମୋର ଲୁଚିଯିବା ବୋଧେ ତା ଆଖିରୁ ଖସିଲା ନାହିଁ । ସେ ଜାଣି ପାରିଲା, କେହି ଜଣେ ହୁଏତ ତାକୁ ଦେଖି ଲୁଚିଗଲା । ମୁଁ ଆଉ ଥରେ ଖମ୍ବ ପାଖରୁ ମୁହଁ କାଢ଼ି ତାକୁ ଦେଖିଲି । ଆରେ ଇଏତ ଅରୁଣ ଛଡ଼ା ଆଉ କେହି ନୁହେଁ । କିନ୍ତୁ ଏହା କିପରି ସମ୍ଭବ ? ଅରୁଣ ତ ମରି ସାରିଚି । ତା ପାଇଁ ଶୋକସଭା ମଧ ହୋଇସାରିଚି । ପୋଷ୍ଟର ମୁଁ ନିଜେ ଦେଖିଚି । ଏତେ କଥା ମିଛ କେମିତି ହେବ ?

ଲୋକଟା ଚେଆର ଛାଡ଼ି ଧୀରେ ଧୀରେ ଉଠିବାକୁ ଆରମ୍ଭ କଲା । ତା'ର ଦୃଷ୍ଟି ମୋର ଲୁଚିଥିବା ଖମ୍ବ ଉପରେ ନିବଦ୍ଧ ଥିଲା । ସେ ହୁଏତ ମୋତେ ଚିହ୍ନିବାକୁ ଚେଷ୍ଟା କରୁଚି । ହେଇ ତ, ସେ ଆସ୍ତେ ଆସ୍ତେ ମୋ ଆଡ଼କୁ ଆସିବାକୁ ଚେଷ୍ଟା କରୁଚି ।

ହଲ୍ ଭିତରେ ଆଉ କେହି ନଥିଲେ । ସମଗ୍ର ନିସ୍ତବ୍ଧତା ସେତେବେଳକୁ ଛାଇ ଅନ୍ଧାର ଭିତରେ ଭୟଙ୍କର ରୂପ ନେଇସାରି ଥିଲା । ମୋ ଦେହରୁ ଗମ୍ ଗମ୍ ଝାଳ ବହିବାକୁ ଲାଗିଲା । ଶୀତତାପ ନିୟନ୍ତ୍ରଣ ଯନ୍ତ୍ର ସେ କୋଠରୀରେ ମୋଟେ କାମ କରୁ ନଥିଲା ପରି ମୋତେ ଲାଗିଲା । ମୋ ଛାତିର ସ୍ପନ୍ଦନ ଖୁବ୍ ବଢ଼ିଗଲା । ଏଥର ମୁଁ ଦେଖିଲି ବେଶ୍ ଲମ୍ବା ପାହୁଣ୍ଡ ପକେଇ ସେ ମୋ ଆଡ଼କୁ ମାଡ଼ି ଆସୁଚି ।

କିନ୍ତୁ ଇଏ କଅଣ ? ଅରୁଣ କଅଣ ଏତେ ଲମ୍ବା ? ତା'ର ହାଇଟ୍ ତ ସାଢ଼େ

ପାଞ୍ଚ ଫୁଟରୁ ଅନେକ ବେଶି ଦେଖାଯାଉଚି । ଏଇଟା ଗୋଟାଏ ନହଁକା କଙ୍କାଳ ପରି ଲାଗୁଚି । ତା'ର ଚାଲି ମୋତେ ଗୋଟାଏ କଙ୍କାଳର ଚାଲି ପରି ଲାଗିଲା । କିନ୍ତୁ ସେ ତ ମୋ ଆଡ଼କୁ ଆସୁଚି । ହଁ, ମୋ ଆଡ଼କୁ ।

ମୁଁ ପଛକୁ ଫେରି କବାଟ ଦେଇ ବାହାରକୁ ଯିବା ଉଦ୍ଦେଶ୍ୟରେ ଖମ୍ବ ଛାଡ଼ି ସେ ଆଡ଼କୁ ଚାଲିଲି । ତା'ପରେ ବାରଣ୍ଡାକୁ ଆସିଲି । ଲମ୍ବା ଓ ପ୍ରଶସ୍ତ ବାରଣ୍ଡାରେ ସେତେବେଳେ ପ୍ରାୟ ଲାଇଟ ନଥାଏ, କହିଲେ ଚଳେ । ମଳିଚିଆ ଜହ୍ନ ଆଲୁଅ ପରି ସାମାନ୍ୟ କିଛି ଥାଏ ।

ଅନ୍ଧାର ଭିତରେ ମୋ ଭିତରର ଭୂତ ମୋତେ ସାମାନା ସାମନି ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲା । ମୁଁ ନିଜକୁ ରକ୍ଷା କରିବା ଉଦ୍ଦେଶ୍ୟରେ ମୋର ସମସ୍ତ ଶକ୍ତି ସଂଚୟ କରିବାକୁ ଚେଷ୍ଟା କରୁଥାଏଁ । ଭାବୁଥିଲି ଦୌଡ଼ି ପଳାଇବି କି ?

କିନ୍ତୁ ଏ କଅଣ ? ଅରୁଣ ତ ମୋ ଆଗରେ ମୋତେ ବାଟ ଉଗାଳି ଠିଆ ହୋଇଚି । ସେ ତ ମୋ ସାମନାରେ । ହଠାତ୍ ମୁଁ ଶୁଣିଲି ସେ ମୋତେ କହୁଚି, ଆରେ ତୁମେ ପ୍ରଣବ ନା ? ମୁଁ ଅରୁଣ । ମୋତେ ଚିହ୍ନି ପାରୁନା ?

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ନିଜ କାନକୁ ବିଶ୍ୱାସ କରି ପାରିଲିନି । ଅରୁଣ ? ସତରେ କଅଣ ଇଏ ଅରୁଣ ?

ସେ ଆହୁରି ମୋ ପାଖକୁ ଆସୁଥାଏ । ଆରେ ତୁମେ ଏମିତି କାହିଁକି ହେଉଚ ? ତୁମେ ମୋତେ ଭୟ କରୁଚ କି ? ମୁଁ ମରି ଯାଇଚି ବୋଲି ତମେ ଭାବୁଚ କି ? ମୁଁ ମରିନି । ଏଇ ଦେଖୁନ ମୁଁ ମରିନି । ମୁଁ ବଞ୍ଚିଚି ।

ମୁଁ ପାଦ ପଛକୁ ପକେଇଲି । ହଠାତ୍ ଯେମିତି ମୋ ପଛକୁ ମୋତେ କିଏ ଅଟକେଇ ଦେଲା । ମୁଁ ଚିତ୍କାର କରି ଉଠିଲି । କିନ୍ତୁ ତା' ପରେ ଦେଖିଲି ମୋ ପଛରେ ଖମ୍ବଟାଏ ।

ଏଥର କିନ୍ତୁ ଅରୁଣ ଏକଦମ୍ ମୋ ସାମନାରେ । ମୁଁ ତାକୁ ଛାଇ ଆଲୁଅରେ ପରିଷ୍କାର ଦେଖି ପାରୁଥିଲି । ସେ କହିଲା ତମେ ବିଶ୍ୱାସ କର, ମୁଁ ମରି ନାହିଁ । ହେଇ ଦେଖ, ମୋ ଦେହରେ ହାତ ମାର ।

ମୁଁ କିନ୍ତୁ ମୋର ଦୁଇ ହାତକୁ ପଛକୁ ନେଇ ଚୁପ୍‌ଚାପ୍ ଠିଆ ହୋଇଗଲି । ପଛପଟେ ଖମ୍ବ ଓ ତା ସହିତ କାନ୍ଥ ।

ସେ ପୁଣି କହିଲା ମୋର ମୃତ୍ୟୁ କଥା ଗୋଟିଏ ରାଜନୈତିକ ଅପପ୍ରଚାର । ମୁଁ କେବଳ ମୋ ନିଜ ଦଳ ଛାଡ଼ି ଏବେ ଶାସକ ଦଳରେ ଯୋଗ ଦେଇଚି । ଯୋଉ

ବଳରେ ଜନ୍ମ ନେଇଥିଲି ତା'ର ସଂଗ୍ରାମୀ ଚରିତ୍ର ସହିତ ମୁଁ ଆଉ ବେଶିଦିନ ରହି ପାରିଲିନି । ଆସ ମୁଁ ତୁମକୁ ସବୁ କଥା କହୁଚି । ସେ ମୋ ହାତ ମୁଠାକୁ ଜୋର କରି ଧରି ପକେଇଲା ଏବଂ ସେଇ ହଲ୍ ଭିତରକୁ ଟାଣିଲା ।

ମୁଁ ଭୟରେ ଚିତ୍କାର କରି ଉଠିଲି । କହିଲି, ଆଃ ଛାଡ଼ନା । ମୁଁ ମୋ ହାତ ଦି'ଟାକୁ ତା' ଠାରୁ ଛଡ଼େଇ ଆଣି ଏକମୁହାଁ ହୋଇ ଦଉଡ଼ିବାକୁ ଆରମ୍ଭ କଲି । ବାରଣ୍ଡା ପରେ ଲନ୍, ଲନ୍ ପରେ ଆହୁରି କେତେ ବାଟ ମୁଁ ସେମିତି ଦଉଡ଼ିଚି । ମୋତେ ଜଣାଯାଉଥାଏ, ବୋଧେ ସେ ଅନ୍ଧାରୁଆ ବାଟ ମୋଟେ ସରୁ ନ ଥାଏ ।

*(ଆଗାମୀ ଶତାବ୍ଦୀ, ଜୁଲାଇ, ୧୯୯୮)*



# ଖାଲି ହାତରେ

**ସେ** ଦିନ ଅଫିସରୁ ଫେରି ଘରେ ବସି ଚା' ପିଇଲା ବେଳକୁ ମୋ ସ୍ତ୍ରୀ ଆଣି ଚିଠିଟା ଟେବୁଲ ଉପରେ ଥୋଇ ଦେଲେ । ଜାଣିଲି ଚିଠିଟା ମାଆ ଲେଖିଚି । ଚା' ଖିଆ ଅଧା କରି ଚିଠିଟା ଖୋଲିଲି । ବେଶ୍ ଲମ୍ବା ଚିଠି ପୂରା ଗୋଟାଏ ପୃଷ୍ଠା । ମୁଁ ଚା' ଓ ଚିଠି ଉଭୟର ଭରପୂର ସଦୁପଯୋଗ କରିବାକୁ ଆରମ୍ଭ କଲି । ମାଆ ଯେମିତି ବରାବର ଲେଖେ । ସେମିତି ଲେଖିଚି । ତା ଲେଖାରେ ବାଗ ବର୍ଗ ନଥାଏ । କିନ୍ତୁ ସବୁ କଥା ଥାଏ । ଗାଁ କଥା, ଚାଷବାସ କଥା । ନଈର ମାଛ କଥା । ଗାଁ ଠାକୁରାଣୀ କଥା । ହାଟ ବଜାରର ଦର ଦାମ ଠାରୁ ଆରମ୍ଭ କରି କାହା ବାଡ଼ିରୁ କଅଣ ଚୋରି ହେଲା । କିଏ ଧରା ପଡ଼ିଲା ଏବଂ ଆମ ସାଇ ପଡ଼ିଶା ତାକୁ କେମିତି ସବୁ ବେଳେ ଧାର ଉଧାର ମାଗି ହଇରାଣ ହରକତ କରୁଛନ୍ତି ଏସବୁ କଥା ସହିତ ତାର କେମିତି ପେଟବଥା ହେଉଛି. ଭାସ୍କରଲବଣ ଓ ଚିରେଇତା ପାଣି ଆଉ କାମ ଦଉନି, ଏ ସବୁ କଥା ମଧ ସେଥିରେ ଥାଏ । ସେ ସେଥିରେ ଆହୁରି ମଧ ନିଶ୍ଚୟ ଲେଖେ- 'ତୁ ପିଲାମାନଙ୍କୁ ନେଇ କେବେ ଆସୁଚୁ ? ଖରାଦିନ ଛୁଟି କେବେଠୁ ଆରମ୍ଭ ହେଉଚି ? ଏଠି ତ ସ୍କୁଲ ଛୁଟି କରି ଗାଁ ମାଷ୍ଟର ଚଇତନ ଗଲା କାଲି ତା ଘରକୁ ଚାଲିଗଲା । ତୋର ସବୁବେଳେ ଡେରି । ଆସୁ ଆସୁ ବି କହିବୁ ଛୁଟି ସରିଗଲା । ମାତ୍ର ସାତ ଦିନ ଆଣିଥିଲି । ପିଲାମାନେ ଆମ୍ବ, ପଣସ, ସପୁରୀ କି ବାତାପି ଦି'ଟା ଖାଇ ପାରିବେନି । ଏଥର ପିଜୁଳି ବହୁତ ବଡ଼ ବଡ଼ ହେଇଚି । କିନ୍ତୁ ଏ ମଲା ବାଦୁଡ଼ି କଅଣ ରଖୁଚି । ରାତି ଯାକ ଗଛରେ ଯୋଉ କୀର୍ତ୍ତନ କରୁଚି, ମୁଁ ମୋଟେ ଶୋଇ ପାରୁନି । ହାଡ଼ିଆକୁ କହି ସୋମବାର ହାଟରୁ ଗୋଟାଏ ଖାଲି ଟିଣ କିଣିଆଣିଚି । ବାଦୁଡ଼ିର କିଚିରି ମିଚିରି ଶବ୍ଦରେ ନିଦ ଭାଙ୍ଗିଗଲେ ତାକୁଇ ଢ଼ଣ କୋଇଲା ହାଣ୍ଡି ପରି ଖୁବ୍ ଜୋର୍‌ରେ ପିଟି ଦଉଚି, ତଥାପି ସେମାନେ କଅଣ ମାନୁଛନ୍ତି ?

ମାଆ ଇମିତି ବରାବର ଲେଖେ । ମୋତେ ଗାଳି ଦିଏ । ବାବାଙ୍କୁ ବି ଗାଳି ଦିଏ । ମୋ ବାବା ବି କୁଆଡ଼େ ଘର ଜମିବାଡ଼ି କଥା କିଛି ବୁଝୁ ନଥିଲେ । ମୁଁ ଏବେ

ଚାକିରି କରୁଚି । ତା' ଭାଷାରେ ଆମେ ସବୁ ପର ଦୁଆରୀ । ପର ଓଳିରେ ହାଣ୍ଡି ଟାଙ୍ଗିଚୁ । ସେ ବେଳେ ବେଳେ କହେ ନିଜ ଘର ଛାଡ଼ି ଭଡ଼ା ଘରେ ରହି, ପାଣି କିଣୁଚ, ଆଳୁଅ କିଣୁଚ, ସେଥିରେ କି ଗର୍ବ ? ଭିଟାମାଟି ଛାଡ଼ି ପର ଦୂଆରେ ପଡ଼ିଚ । ସେଥିରେ ପୁଣି ଏତେ କଥା ।

ମୁଁ ଚା' କପଟା ଥୋଇଦେଲି । ସୁରମା ପଚାରିଲେ ଚା' ଟା ତ ଏକଦମ୍ ଥଣ୍ଡା ହେଇ ଯାଇଥିଲା, କେମିତି ପିଇଲ ? ଆଉ ଦିନେ ହେଇଥିଲେ ମୁଣ୍ଡକୁ ପିତ୍ତ ଚଢ଼ି ଯାଇଥାଆନ୍ତା । ସେ କପ୍‌ଟା ଉଠେଇ ନେଇ ଚାଲି ଯାଉଥିଲେ ।

ମୁଁ କହିଲି ମାଆ ଲେଖିଚି । କେବେ ଯିବା ? ପିଲାମାନେ ତ ଉଚ୍ଛନ୍ନ କଲେଣି । ଏ ଆଡ଼େ ଛୁଟି ପଡ଼ିବାକୁ ଆହୁରି ଆଠ ଦିନ ବାକି ଅଛି ।

ସେ କହିଲେ ତମେ ଏଥର ପିଲାମାନଙ୍କୁ ନେଇ ଚାଲି ଯାଅ । ମୁଁ ଯାଇ ପାରିବିନି । ତମ ଗାଁ ନଈରୁ ପାଣି ବୋହି ବୋହି ମୋ ଅଣ୍ଟା ବଙ୍କେଇ ଗଲାଣି ।

ସୁରମା ତିନୋଟି ସନ୍ତାନର ଜନନୀ । ଗୋଟିଏ ପୁଅ ଓ ଦୁଇଟି ଝିଅକୁ ମୋତେ ଦେଇ ସେ ନିଶ୍ଚିନ୍ତ । ପୁଅ ବଡ଼ । ତାକୁ ଦଶ ଚାଲିଲା । ଆଉ ମାନେ ତା ତଳକୁ ତଳକୁ । ତାଙ୍କ ଜୀବନ କାଳରେ ସେ ମୋ ମାଆ ପାଖରେ ଗାଁରେ ଯେତିକି ଦିନ କଟେଇଛନ୍ତି, ମୋ ପାଖରେ ସହରରେ ମଧ ସେତିକି ଦିନ କଟେଇଛନ୍ତି । ଗାଁର ଅସୁବିଧାରେ ସେ ଯେମିତି ଆପତ୍ତି କରି ନାହାନ୍ତି । ଏଠି ସହରରେ ଅପେକ୍ଷାକୃତ ଆରାମରେ କଟେଇ ସେମିତି ସେ କେବେ ଆହ୍ଲାଦିତ ହେଇ ନାହାନ୍ତି ।

ଗାଁକୁ ଗଲେ ସୁରମାଙ୍କୁ ନଈରୁ ପାଣି ଆଣିବାକୁ ପଡ଼େ । ସେ କଥା ମୋ ମାଆ ମଧ କରେ । ମୋ ବାପାଙ୍କ ମାଆ କରୁଥିଲା । ସେ କାମ ଶହେ କି ଦି ଶହ ବର୍ଷ ତଳେ ଯେମିତି ଥିଲା ଆଜିବି ସେମିତି ଅଛି । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀରେ ବି ସେ ପ୍ରଥା ଅପରିବର୍ତ୍ତିତ ।

ପ୍ରାୟ ୩୦ ବର୍ଷ ତଳେ ଥରେ କୁଆଡ଼େ ପଞ୍ଚାୟତ ତରଫରୁ ଆମ ଗାଁ ଦାଣ୍ଡ ଗୋହିରୀରେ ପାଣି କଳଟିଏ ବସିବ ବୋଲି କଥା ହେବାରୁ ଆଉ କେତେଜଣ ଟୋକା ବାହାରିପଡ଼ି କହିଲେ ସେଠି କରଣ ଖେଲରେ ନଳ କଅଣ ହେବ ? ସେମାନେ ତ ନଈ ପାଖରେ ଅଛନ୍ତି । ଆମେ ସବୁ ଦୂରରେ । ଆମକୁ ବେଶି କଷ୍ଟ । ଆମରି ଏଠି ହେବା କଥା । କିଛିଟା ଯୁକ୍ତିତର୍କ ପରେ ସେଥିରେ ରାଜନୀତି ପଶିଗଲା । ସୋସିଆଲଷ୍ଟି ଓ କଂଗ୍ରେସ ମିଶି ଦୁଇଭାଗ ହୋଇଗଲା ଗାଁଟା । ତାପରେ ମାର୍ ପିଟ । ଥାନା ଓ କୋର୍ଟଯାଏ କଥା ଗଲା । ଗାଁର ଅଧେ ଉଚ୍ଛନ୍ନ ହେଇଗଲେ ।

ଗାଁରେ ରାଜନୀତିର ଘାଆ ଥରେ ହେଲେ କେବେ ଶୁଖେନା । ମରୁନଥିବା

ରୋଗ ପରି ବଢ଼ି ବଢ଼ି ଯାଏ । ଗୋଟାଏ ପୀଢ଼ିରୁ ଆଉ ଗୋଟିଏ ପୀଢ଼ିକୁ ତେଇଁ ତେଇଁ ଚାଲିଯାଏ । ଗାଁର ଗଳି କନ୍ଦିରୁ ଘର ପରିବାରର ଅନ୍ଧାରୁଆ ନିବୁଜ ଜାଗାକୁ ସମସ୍ତଙ୍କ ଅଜାଣତରେ ଚାଲିଯାଏ । ସେଠି ଲୁଚିଛପି ବସିଯାଏ । ଦିନରେ କି ରାତିରେ ଯିଏ ସେ ପାଖକୁ ଯାଏ ତାକୁ ଡ଼ରାଏ । ଯିଏ ତାକୁ ଭୟ କରେ ତାକୁ ଆକ୍ରମଣ କରେ । ଯିଏ ତାକୁ ଭୟ ନକରେ ତା କାନ୍ଧରେ ବସିଯାଏ ।

ଆମ ଗୋହିରୀରେ କଳ ବସିବା କଥା ସେଇଠୁ ବନ୍ଦ । ଆଜିଯାଏ ଆଉ ଏ ପ୍ରସ୍ତାବ କେବେ ପଡ଼ିନି କି କେହି ସେକଥା ମନେବି ପକେଇ ନାହାନ୍ତି ।

ଖରାଦିନେ ନଈଟାର ପାଣି ଦୂରକୁ ଚାଲିଯାଏ । କୂଳରେ ବାଲିଛାଡ଼ି ଦିଏ । ତେଣୁ ଦୂରରୁ ପାଣି ଆଣି ଅତଡ଼ାରେ ଉଠିବାକୁ ହୁଏ । କମ କଥା ନୁହେଁ ।

ଆଉ ବର୍ଷାଦିନେ ? କୁହନା ସେ କଥା । ଗୋଳିଆ ପାଣିକୁ ଆଣି ସେଥିରେ ଚୂନ କି ଫିଟିକିରି ପକେଇ ପିଇବାକୁ ହୁଏ । ଗାଧୁଆ ପାଧୁଆ ସେମିତି ଚଳିଯାଏ । ଆମ ଗାଁରେ ଯୁଗ ଯୁଗରୁ ଏଇ କଥା ଚଳି ଆସୁଚି ।

ବାପାଙ୍କ ପରେ ମୁଁ ଚାକିରି କରିବାକୁ ଆସିବା ପରେ ବି ମାଆ ଗାଁଆଁ ଛାଡ଼ିଲାନି । ତାକୁ ଯେତେ କହିଲେ ସେ ମୋଟେ ମଙ୍ଗିଲାନି । କହିଲା- ତୁ ତୋର ସେ ଭଡ଼ାଘରକୁ ଯାଉନୁ । ମୋତେ କାହିଁକି ଡାକୁଚୁ ? ମୁଁ ଯଦି ଆଜି ଏଠୁ ଚାଲିଯିବି ଏ ଘର ଦୁଆର, ବାଡି ବଗିଚାକୁ କିଏ ସମ୍ଭାଳିବ ? ତାକୁ ଦେଖିବ କିଏ ? ବର୍ଷେ ଛଅମାସରେ ଯେ ତୁ ଥରେ ଆସି ଠିଆ ହେଇ ପଡୁଚୁ ସେତକ ବି ତୋତେ ଆଉ କରିବାକୁ ପଡ଼ିବନି । ତାପରେ, ଲୋକମାନେ ଯାହା ହେଲେଣି, ମୁଁ ନଥିଲେ ଚାଳରୁବି ବତା ବାଉଁଶ ନେଇ ପଳେଇବେ ।

ଅନେକ ଥର ସେ ମୋ ସ୍ତ୍ରୀକୁ କହିବାର ଶୁଣିଚି । ଦେଖ୍ ବୋହୂ, ମୋ ପରେ ତୁ ଏଠି ଆସି ରହିବୁ । ସେତେବେଳେ ତୋ ପିଲାମାନେ ବଡ଼ ହେଇ ଯାଇଥିବେ । ତୋର ଆଉ ଚିନ୍ତା କଅଣ ? ଏଇ ସାଇ ପଡ଼ିଶାଙ୍କୁ ମୋଟେ ବିଶ୍ୱାସ କରିବୁନି । କାହାକୁ କୁଟା ଖିଏବି ଦବୁନି । ଆଉ ଯଦି ସେମାନଙ୍କୁ ବିଶ୍ୱାସ କରିବୁ, ଭଲେଇ ଭଲେଇ ସବୁ ତୋଠୁ ନେଇଯିବେ । ତାପରେ ରାଗରେ ମନକୁ ମନ କହେ, ଯେତେ ନେଲେବି କଣ ହେବ ? ବରାବର ସେଇଆ ।.ଯୋଉ ଭିକ ମଗାକୁ ସେଇ ଭିକ ମଗା ।

ମୋ ମାଆ ଏକ ଭିନ୍ନ ଦୁନିଆର ମଣିଷ । ଅନେକ କାରଣରୁ ଏବର ଶିଳ୍ପାୟନ ପରେ ଯେଉଁ ନୂଆ ସଭ୍ୟତା, ନୂଆ ସଂସ୍କୃତି ଏବଂ ସର୍ବୋପରି ନୂଆ ସମାଜଟିର ସୃଷ୍ଟି ହେଲା, ତା ସହିତ ସେ ନିଜକୁ ମୋଟେ ଖାପ ଖୁଆଇ ପାରିଲାନି । ଖାଲି ଖାପ ଖୁଆଇ ପାରିଲାନି କହିବା ବି ଠିକ୍ ହେବ ନାହିଁ ବରଂ ସେ ତାର ବିରୋଧ କଲା । ମଧ୍ୟଯୁଗୀୟ

ଯୌଥ ପରିବାରରେ ବଢ଼ିଆସିଚି ସେ ଓ ତାର ପିତୃପୁରୁଷ । ବଂଶାନୁକ୍ରମେ ସେମାନେ ଗୋଟିଏ ଚିନ୍ତାଧାରା ଭିତରେ ରହି ଆସିଥିବାରୁ ଏବର ପରିବର୍ତ୍ତନକୁ ସେ ସମର୍ଥନ କରିପାରୁ ନଥିଲା ।

ମାନବୀୟ ସଭ୍ୟତାରେ ପରିବର୍ତ୍ତନର ପ୍ରକ୍ରିୟାଟିକୁ ସବୁବେଳେ ସବୁକାଳେ ସମସ୍ତେ ବିରୋଧ କରିଥାଆନ୍ତି । ତା ସତ୍ତ୍ୱେ ପରିବର୍ତ୍ତନ ଯେମିତି ଅବଶ୍ୟମ୍ଭାବୀ, ବିରୋଧ ମଧ ସେମିତି ଅବଶ୍ୟମ୍ଭାବୀ । ଯୁଗେ ଯୁଗେ ସେମାନେ ପରସ୍ପରକୁ ବିରୋଧ ସତ୍ତ୍ୱେ ଦୁହେଁ ହାତ ଧରାଧରି ହେଇ ଚାଲନ୍ତି । ସବୁଠି ଓ ସବୁକାଳେ । ଏହାହିଁ ଇତିହାସ ।

ମୋ ମାଆର ଧାରଣା ଆଜିକାଲି ଯିମିତି ଲୋକେ ଘର ଛାଡ଼ି ଗାଁରୁ ସହରକୁ ପଳଉଛନ୍ତି ଚାକିରି ପାଇଁ, ଏଇଟା ମୋଟେ ଶୁଭ ଲକ୍ଷଣ ନୁହେଁ । ସେ କହେ ଚାକିରିଟା ଆସ୍ଥାୟୀ । ତାଳଗଛ ଛାଇ । ତା ଉପରେ ନିର୍ଭର କରି ନିଜ ବିଶ୍ୱାସର ମହାଦ୍ରୁମକୁ ଦୂରକୁ ହଟେଇ ଦେବା ନିର୍ବୋଧତା ଛଡ଼ା ଆଉ କିଛି ନୁହେଁ ।

ଗାଁର ସଂସ୍କୃତି ଉପରେ ତାର ଅଗାଧ ବିଶ୍ୱାସ । ପରିବାର ଉପରେ ତାର ଅମାପ ଭରସା ।

ସେ କହେ, ତା ଯଦି ହେଇ ନଥାଆନ୍ତା, ତେବେ ମାତ୍ର ପଚାଶ ବର୍ଷ ବୟସରେ ତୋ ବାପା ଯୋଉ ଦିନ କାହାକୁ କିଛି ନ କହି, ଆଗତୁରା କିଛି ବି ସୂଚନା ନ ଦେଇ ଯେମିତି ସମସ୍ତଙ୍କୁ ଲୁଚି ହଠାତ୍ ସେ ପାରିକୁ ପଳାଇଲେ, ସକାଳୁ ବିଲବାଡ଼ିକୁ ଯିବା ପାଇଁ ଯେମିତି ଲୋକେ ମୁଢ଼ି ଗଣ୍ଡେ ପାଟିରେ ପକେଇ ବାହାରି ଯାଆନ୍ତି ଏବଂ ସେତେବେଳେ ତୁ ଯେମିତି ବକଟେ ହେଇ ଗାଁ ସ୍କୁଲରେ ପାଠ ପଢୁଥିଲୁ, ମୋର ଆଉ ସାହାଭରସା କିଏ ଥିଲା ? କିଏ ମୋତେ ଦମ୍ଭ ଦେଲା ? କିଏ ମୋତେ ସବୁବେଳେ ମୋ କାନେ କାନେ କହି ସାନ୍ତ୍ୱନା ଦେଲା, ''ଏୟ, ଲୁହ ପୋଛ । ଏମିତି କଅଣ ହଉଚୁ ? ପିଲାଟିଏ କି ? ନାକରେ ଦୁଧ ଖାଉଚୁ ? ଡରୁଚୁ ? ପାରିବୁନି ବୋଲି ଭାବୁଚୁ ? ଅନାଗତ ଭବିଷ୍ୟତକୁ କେହି କଅଣ କେବେ ଡ଼ରେ ? ଯାହାକୁ ଦେଖିନୁ, ଯାହାର ସାମନା ହେଇନୁ, ସେ ବାଘ କି ଭାଲୁ, ତାର ଆକାର ପ୍ରକାର ଯଦି କିଛି ଜାଣିନୁ ତେବେ ଡ଼ର କାହାକୁ ? ଅଣ୍ଟାରେ ଶାଢ଼ୀ ଭିଡ଼ି ଦେ । ଦେଖ ବଳ ଛାଆଁକୁ ଛାଆଁ ଆସିଯିବ । ଆରେ ସେ ସିନା ଚାଲିଗଲା । ତାର ବେଳ ହେଲା ଚାଲିଗଲା । ତୋର ବେଳ ନହେବା ଯାଏ ତୁ କୁଆଡ଼େ ଯିବୁ ? ଯାଇ ପାରିବୁ ? କିନ୍ତୁ ହେଇ ମନେରଖ, ତୋତେ ସେ ଏକୁଟିଆ ଛାଡ଼ି ଯାଇନି । ତୋତେ ଘର ଦୁଆର, ବାଡ଼ି ବଗିଚା, ଗଛ ଗାଛିଲି ସବୁ ଦେଇଛି । ଆଉ ବଡ଼ ସାହସ ଯୋଉଟା ତୋ କତିରେ ଛାଡ଼ିଯାଇଚି- ତୋ ପୁଅ । ତା ମୁହଁକୁ ଅନେଇଲୁ ? ଦେଖ ।''

ସେ କାହାକୁ ଅନେଇଚି ? ତୋତେ, ଆଉ କାହାକୁ ନୁହେଁ । ସେ ଯେ ଯାକେ ତୋ ମୁହଁକୁ ଅନେଇଥିବ, ତୋତେ ବି ତାକୁ ଅନେଇବାକୁ ପଡ଼ିବ । କେବଳ ସେଇ କାମଟା ସେ ତୋ ପାଇଁ ଛାଡ଼ି ଯାଇଚି । ସବୁ ପୂରା କର । ସେତକ ପୂରା ନ ହେବା ଯାଏ ତୋର ବିଶ୍ରାମ କାହିଁ ? ସେତକ ସଇଲା ପରେ, ସେ ତୋତେ ଯାହା ଯାହା ଦେଇଯାଇଚି ସେ ସବୁକୁ ତୁ ତୋ ପୁଅ ଜିମା ଦେଇ ତୁ ସିନା ଆଖି ବୁଜିବୁ ।

ସେଇଦିନଠୁ ମାଆ କେବେ ପଛକୁ ଚାହିଁନି । ଯୋଉ ବିଲ ବାରିକୁ ସେ ଏ ଘରକୁ ଆସିବା ଦିନଠୁ କେବେ ଯାଇ ନଥିଲା, ସେଠି ଯାଇ ଠିଆ ହେଇଚି । ମୂଲିଆ ମଜୁରୀଆଙ୍କୁ କହି ଗଛ ପତର, ଧାନ, ମୁଗ, ବିରି, ନଡ଼ିଆଠାରୁ ଶାଗ ପଟାଳିଯାଏ ସବୁ ହିସାବ ରଖିଲା । ଗୋଟି ଗୋଟି କରି ଆଣି ସାଇତିଲା । ବେଳେ ବେଳେ ହାଟକୁ ପଠେଇ ବିକିଲା ।

ମୁଁ ଆସିଲେ ମୋ ହାତକୁ ବଢ଼େଇ ଦିଏ । ''ଏଇଟାରେ ବୋହୂ ପାଇଁ ସାବିତ୍ରୀ ଓଷାକୁ ଖଣ୍ଡେ ଶାଢ଼ୀ ଆଣିବୁ । ଆଉ ଏତକରେ ଲୁଲୁ ପାଇଁ (ମାନେ ମୋ ପୁଅ ପାଇଁ) ପ୍ରଥମାଷ୍ଟମୀ ଦିନ ଖଣ୍ଡେ ପେଣ୍ଟ ଓ ସାର୍ଟ ଆଣିବୁ । ଆଉ ଏତକ ନେ, ସେଇ ଯୋଉ କାଳୀ ଚଣ୍ଡୀ ଦି'ଟା ଅଛନ୍ତି (ମୋର ଦୁଇ ଝିଅ) ତାଙ୍କ ପାଇଁ ବି ଖଣ୍ଡେ ଖଣ୍ଡେ ସେମାନଙ୍କ ଜନ୍ମଦିନକୁ ଆଣିବୁ ।

ମୁଁ ଯଦି କହେ, ଆରେ ଏସବୁ ତୁ ରଖ । ମୋତେ କାହିଁକି ଦଉଚୁ ? ତୋ ପାଖରେ ଥିଲେ କାମରେ ଆସିବ । ତା ଛଡ଼ା ମୁଁ କଅଣ ସେମାନଙ୍କ ପାଇଁ ଆଣୁ ନାହିଁ ?

ସେ ଘାଗଡ଼ା ଗଳାରେ କହେ, ଆରେ, ରଖି ଆଉ କଣ କରିବି ? କାହା ପାଇଁ ରହିବ ଯେ ? ତା ଛଡ଼ା ଏଠି ରହିଲେ ବିପଦ । ଏ ଲୋକମାନେ କମ କି ? ଜାଣିଗଲା ମାତ୍ରେ ଧାଡ଼ି ବାନ୍ଧି ପକେଇବେ ।

ମୁଁ କହେଁ, ସେମାନେ କେମିତି ଜାଣିବେ ? ତୁ ମନା କରିଦେବୁ । କହିବୁ ମୋ ପାଖରେ ମୋଟେ ନାହିଁ ।

''କଥାଟା ତ ସେଇଠି । ମୋ ପାଟିକୁ କଅଣ ମିଛ ଆସିବ ? ସେତକ ପାରୁ ନାହିଁ ବୋଲି ତ ଏତେ କଥା ।' ତା ପରେ ଟିକେ ହାଲୁକା ହେଇ କହେ, ଆରେ ନେଲେ କ୍ଷତି ନାହିଁ । ଦିଅନ୍ତେ କି ? ନା, ଥରେ ହାତରୁ ଗଲେ ଗଲା । କଅଣ କହିବେ ଜାଣିଚୁ ? ପୁଅ ରାଣ, ଆଜି ଦେଇ ଥାଅ । ଆଗ ହାଟ ପାଳିରେ ସବୁ ଫେରେଇ ଦେବି । ସେ ହାଟପାଳି ଆଉ ଆସେନା । ମାଗିବାକୁ ଗଲେ ଲୁଚି ଯାଆନ୍ତି । ଘରେ ଥାଇ ମନା କରନ୍ତି ।

ସେଇ ମାଆ ଆଜି ଚିଠି ଦେଇଚି । ଲେଖିଚି, ଶୀଘ୍ର ଆସିବୁ । ତାର ସେ ଚିଠିଟା

ମୋ ପାଇଁ ଯେତେ ଦରକାରୀ ନୁହେଁ, ମୋ ଅପେକ୍ଷା ମୋ ପିଲାଙ୍କ ପାଇଁ ବେଶି ଦରକାରୀ । ସେମାନେ ତାର ସ୍ନେହ- ପଣତରେ ବନ୍ଧା । ମୁଁ ସେଠି କିଛି ନୁହେଁ ।

କିନ୍ତୁ କରିବି କଅଣ ? କାରଖାନା ଚାକିରିଟା ଯେ ଗାଁ ଏଲ୍.ପି. ସ୍କୁଲର ଟିଚରସିପ୍ ନୁହେଁ ଏ କଥା ମୋ ମାଆକୁ ମୁଁ କେମିତି ବୁଝେଇବି ? ଓଲଟି କହିବ ଆରେ, ନରି ଶେଣୀ ପୁଅ କଟକରୁ ମାସକୁ ଚାରିଥର ଆସୁଚି । ଭରତୀ ବୁଢ଼ୀ ପୁଅ ଗଜିଆ ବାରିପଦାରୁ ଫି ଶନିବାର, କହିବାର ନାହିଁ । ଆଉ ସବୁ ଯିଏ ଦୂର ଦୂରାନ୍ତରେ ଅଛନ୍ତି ସେମାନେ ଅନ୍ତତଃ ମାସକୁ ଥରେ ନିଶ୍ଚୟ । ସେମାନେ ସମସ୍ତେ ତାଙ୍କ ପିଲା କୁଟୁମ୍ବକୁ ଗାଁରେ ଛାଡ଼ି ଦେଇଚନ୍ତି । ଦେଶକୁ, ବାହାରକୁ ଆଉ ଘରକୁ କେତେ ସୁନ୍ଦର ଦୃଶୁଚି । ଗାଁ ସାଇ ପଡ଼ିଶା ସମସ୍ତେ କେତେ ଖୁସି । ଆଉ ତୋର ଏଇଟା ଏମିତି କି ଚାକରି ହେଇଚି ଯେ ଛଅ ମାସକୁ ଥରେ ଦିନକ ପାଇଁ ଆସି ସଙ୍ଗେ ସଙ୍ଗେ ବାଟ କାଟୁଚୁ ? ଗବର୍ଣ୍ଣର ନା ହାକିମ ହେଇଚୁ ଯେ ? କମାର ଶାଳରେ ଲୁହା ପିଟୁଚୁ, ମୁଁ ଏକଥା ଜାଣିନି କି ?

ଥରେ ସେ ମୋତେ ହଠାତ୍ ଡକେଇଲା । ଗଲି । ଦେଖିଲି, ତାକୁ ଟିକିଏ ମେଲେରିଆ ଜର ହେଇ ଯାଇଥିଲା । ଟିକିଏ ଝଡ଼ି ଯାଇଚି, କିଛି ଖାଉନି । କ୍ଷୀର ଗ୍ଲାସଟିଏ ଧରି ଯେତେବେଳେ କହିଲି ପିଇ ଦବାକୁ ସେ କୁନ୍ଥେଇ କୁନ୍ଥେଇ ଉଠି କହିଲା, ଆଉ ପାରୁନିରେ, ଆଉ ବଳ ପାଉନି ।

ମୁଁ କହିଲି, ଆରେ ସାମାନ୍ୟ ଟିକିଏ ଜର ହେଇଥିଲା । ଏବେ ତ ଠିକ୍ ହେଇଗଲାଣି । ଆଉ କଅଣ ? ଚାଲ ଏଥର ମୁଁ ତୋତେ ନେଇଯିବି । ସେଠି ତୋତେ ଏତେ ଦଉଡ ଧାପଡ଼ କରିବାକୁ ପଡ଼ିବନି । ଖାଲିଖାଇବୁ, ଶୋଇବୁ ଓ ଠାକୁର ପୂଜା କରିବୁ । ତୋତେ ବି ଟିକିଏ ଡାକ୍ତରଖାନାରେ ଭଲ କରି ଚେକ୍ କରେଇ ଆଣିବି । ମୁଁ ଆଉ କେତେ ଏଠିକୁ ଦଉଡ଼ିବି କହନା ?

ସେ ରାଗି ଯାଇ କହିଲା, ଭିକନ କୁଶି ଯେମିତି ବାରଦ୍ୱାର ବୁଲି ଅଇଁଠା ପତର ଚାଟୁଥାଏ, ତୁ ସେମିତି ହେବୁ ଯଦି ଏ ଘର ଛାଡ଼ି ଦେଉନୁ । ସେ କଥା ତୁଣ୍ଡରେ ଧରନା । ଟିକିଏ ରହି ସେ ପୁଣି କହିଲା, ସେ କଥା ନୁହେଁ ଯେ, ଏଇ ଆଜିକାଲି ଟିକିଏ ବେଶି ଡର ମାଡୁଚି । ଏକେଲା ମଣିଷ କିନା । କେତେବେଳେ କେମିତି ଯଦି ତୋ ବାପ ପରି...ମୋ ଆଡୁ ମୁହଁ ଫେରେଇ ନେଇ ସେ ଆଖି ପୋଛି ପକେଇଲା ।

ମୁଁ ଜାଣିଲି ତାକୁ ତା ମନର ଭୂତ ଗୋଡ଼ଉଚି । ସେ ଭୂତ ମୋତେ ବି ଗୋଡ଼ଉଚି । ରହି ରହି ଛପି ଛପି ଦିନରେ କିମ୍ବା ରାତିରେ ମୁଁ ଘରେ ଥାଏଁ ବା ଅଫିସରେ ଥାଏଁ, ସେମିତିକା ଖଣ୍ଡିଆ ଭୂତ ସହିତ ମୋର ଅନେକ ସମୟରେ ସାମନା ସାମନି ହେଇ ଯାଇଚି । ଆଉ ସବୁଠୁ ଆଶ୍ଚର୍ଯ୍ୟର କଥା ଯେ ଏମିତି ଭେଟାଭେଟି ହେଇଗଲେ...

ନା ସେ ମୋତେ କିଛି କହିପାରେ ନା, ମୁଁ ପାଟି ଖୋଲି ପାରେ । କେଇଟା ମୁହୂର୍ତ୍ତ ପରେ ଆମେ ଦୁହେଁ ବାଟ ଆଡ଼େଇ ଚାଲିଯାଉ । ମୁଁ ଚାଲିଗଲେ ମଧ୍ୟ ତାର ଅକୁହା କଥାର ସତର୍କ ଘଣ୍ଟିଟା ମୋ କାନରେ ସେମିତି ବାଜୁଥାଏ ।

ଆମେ ସବୁ ସେଥର ଖରାଛୁଟି ପଡ଼ିବାର ଦୁଇଦିନ ପରେ ଘରକୁ ଗଲୁଁ । ଜଳେଶ୍ୱର ଷ୍ଟେସନରେ ଉତ୍କଳ ଏକ୍‌ସପ୍ରେସ ପହଞ୍ଚିଲା ବେଳକୁ ରାତି ୩ଟା । ବେଶ୍ ଘଣ୍ଟାଏ ଦୁଇଘଣ୍ଟା ଷ୍ଟେସନରେ ଟହଲିବା ପରେ ଭୋର ୫ଟା ବେଳକୁ ଆମେ ଗାଁକୁ ବାହାରିଲୁଁ । ଷ୍ଟେସନରୁ ଆମ ଗାଁକୁ ପକ୍‌କା ପାଞ୍ଚ ମାଇଲ । ସେଇ ପାଞ୍ଚ ମାଇଲ ମୁଁ ପିଲାବେଳେ ଅନେକ କଷ୍ଟରେ ଅତିକ୍ରମ କରିଚି । ବର୍ଷା ଦିନେ ତ ଯିବାର ପ୍ରଶ୍ନ ଉଠୁନି । ତେବେ ନୌକାରେ ଯାଇ ହେଉଥିଲା । ଷ୍ଟେସନରୁ ତିନି କିଲୋମିଟର ପାର ହେଇ ସୁବର୍ଣ୍ଣରେଖା କୂଳରେ ରାଜଘାଟରେ ପହଞ୍ଚି ସେଠୁ ନୌକାରେ ଗଲେ ଆମ ଗାଁରେ ଆରାମରେ ପହଞ୍ଚି ହେଉଥିଲା ।

ଏବେ ଅବସ୍ଥା ଅନେକ ସୁଧାରି ଯାଇଥିଲେ ମଧ୍ୟ ରାସ୍ତାଟିଏ ଏଯାଏ ହେଇନି । ତେଣୁ ଧାନ କଟା ପରେ ଗହିର ବିଲରେ ହିଡ କାଟି ଗୋରୁଗାଡ଼ି ଯିବାପାଇଁ ଯୋଉ ରାସ୍ତା ହେଇଥାଏ ତାହାହିଁ ଏକମାତ୍ର ଅବଲମ୍ବନ । ସେଥର ଗୋଟାଏ ପଟା ରିକ୍ସାରେ ଆମେ ପାଞ୍ଚଜଣ ଆମର ଜିନିଷପତ୍ର ନେଇ ବସି ସାରିଲା ପରେ ରିକ୍ସାବାଲା ସେ ହିଡ଼ ରାସ୍ତାରେ ଚଳେଇ ନ ପାରି ନିଜେ ଉହ୍ଲେଇ ପଡ଼ି ଟାଣି ଟାଣି ନେଉଥିଲା ବେଳେ କାଣ୍ଡ ପରି ବଙ୍କେଇ ଯିବାର ଦୃଶ୍ୟ ମୁଁ ଅନେକ ଥର ଦେଖିବି ଏବଂ ସେତେବେଳେ ତାକୁ ଟିକିଏ ସାହାଯ୍ୟ କରିବା ପାଇଁ ମୋ ପିଲାମାନଙ୍କୁ ନେଇ ମୁଁ ଉହ୍ଲେଇ ପଡ଼ି ବେଶ୍ ଗୁଡ଼ାଏ ରାସ୍ତା ଚାଲି ଚାଲି ଯାଇଚୁ ।

ଆମେ ଯାଇ ଆମ ଘର ସାମନା ଗୋହରୀରେ ପହଞ୍ଚିଲା ବେଳକୁ ଦେଖିଲୁଁ, ଆମ ଘର ଆଗରେ କିଛି ଲୋକ ଜମା ହେଇଚନ୍ତି । କିଏ ଏମାନେ ? କାହିଁକି ଏତେ ଲୋକ ? କଅଣ ହେଇଚି ?

ମୋତେ ଦେଖି ସେମାନଙ୍କ ନଜର ଆମ ଆଡ଼େ ଚାଲି ଆସିଲା । ଆମେ ସବୁ ଦଉଡ଼ି ଗଲୁ ରିକ୍ସା ଛାଡ଼ି । କଅଣ ହେଇଚି ? ମାଆ କାହିଁ ?

କେହି କିଛି କହୁ ନଥାନ୍ତି । ସମସ୍ତଙ୍କଠି ଗୋଟାଏ ଅସ୍ୱାଭାବିକ ନିରବତା । ସମସ୍ତେ ଆମକୁ ଚାହିଁ ପୁଣି ତଳକୁ ମୁହଁ ପୋତିଲେ ।

ମୁଁ ଦେଖିଲି ମାଆ କାନ୍ଥକୁ ଆଉଜି ତଳେ ବସିଚି । ମୁହଁଟା ଏକଦମ ଗମ୍ଭୀର । ଆଖି ଦିଟା ସ୍ଥିର । ଯେମିତି ସମସ୍ତଙ୍କୁ ଦେଖୁଚି କିନ୍ତୁ କିଛି ଦେଖିପାରୁନି । ସବୁ କଥା ଶୁଣୁଚି, କିନ୍ତୁ କିଛି ଶୁଣି ପାରୁନି । ଆରେ, ମୋତେ ଦେଖି ମଧ୍ୟ ଦେଖୁନି । ମୋତେ

ନ ଦେଖିଲା ନାହିଁ ମୋ ପିଲାଙ୍କ ପାଖରେ ତ ତା ପ୍ରାଣଟା ଲାଖି ଥାଏ । ସେମାନଙ୍କୁ ଦେଖି ମଧ ଚୁପ୍ ହେଇ ବସିଚି । ସେ ହୋସ୍‌ରେ ଅଛି ତ ? ମୁଁ ତା ପାଖକୁ ଦୌଡ଼ି ଯାଇ କହିଲି, ମାଆ ! କଅଣ ହେଇଚି ? ମୁଁ ବସିପଡ଼ି ତା କାନ୍ଧକୁ ହଲେଇ ଦେଲି ।

ସେ ସେମିତି ନିର୍ବିକାର ଏବଂ ନିସ୍ପନ୍ଦ ।

ମୁଁ ଅନ୍ୟମାନଙ୍କୁ ଅନେଇଲି । ତୁମେ ସବୁ କହୁନ କଅଣ ହେଇଛି ?

''କଅଣ ଆଉ ହବ ମ ? କିଛି ନୁହେଁ ବୋଲି ଜାଣ ।'' ହାଡ଼ିଆ ମାଆ କଥା ଆରମ୍ଭ କଲା ।

ଆଜି ବଡ଼ି ଭୋର୍‌ରୁ ସନିଆ ପୁଅ ସେ ମହନା, ସେଇ ସାନଟା ମ, ଆଉ ଆମ ପତନୀ, ଆମ ବୁଲେଇ ଭୋଇ ପୁଅ, ଏ ଦି'ଜଣ ଆସି ତମ ଗୋହିରୀ ପାଖ ଆମ୍ବ ଗଛ ତଳେ ନସର ପସର ହେଉଥିଲେ ଆମ୍ବ ଗୋଟେଇବା ପାଇଁ । ଆମ୍ବ ତ ଏଯାଏ ଭଲ ପାଚିନି, ତେବେ ବେଳେ ବେଳେ କୋଇଲି ପାଡା ଆମ୍ବଗୁଡ଼ା ପାଚି ଖସି ପଡ଼େ । ତା'ରି ପାଇଁ ଏ ଦୁହେଁ ଭୋର୍‌ରୁ ଆସି ନସର ପସର ହେଲେଣି । ତାଙ୍କୁ କଣ ଜଣା...?

ସେ ସେତକରେ ରହିଗଲା ।

ମୁଁ ପଚାରିଲି, କଅଣ କହୁନ ?

ସନିଆ ଠିଆ ହେଇଥିଲା ଟିକିଏ ଦୂରରେ । ସେ ପାଖକୁ ଘୁଞ୍ଚିଆସି କହିଲା ''କଅଣ ଆଉ ହେବ ? ତମ ମାଆବି ବଡ଼ିଭୋରରୁ ଜଗିଥିଲେ ଆମ୍ବଗଛ । ମୁଁ କେତେଥର ଦେଖିଚି ସେ ରାତିରେ ଉଠି ଡ଼ିବିରି ଜାଳି ଆମ୍ବ ଗଛ ତଳୁ ଆମ୍ବ ଗୋଟାନ୍ତି । ଏବେବି ଦେଖୁନ ତମ ଶୋଇବା ଘର କୋଣରେ ଖଟ ତଳେ ବାଲି ବିଛେଇ ବୁଢ଼ୀ ତା ଉପରେ ସାଇତି ରଖିଥିବେ । କହୁଥିଲେ ପିଲାମାନେ ଆସିଲେ ଆମ୍ବ ନୂଆ ହେବେ । ମୁଁ ବିରକ୍ତ ହେଲି । କହିଲି, ତୁମେ ଆଜିକା କଥା କୁହ । ତାପରେ କଅଣ ହେଲା ?

ସେ କହିଲା, ହଁ ସେଇ କଥା । ଆଜି ସେ ଯେମିତି ଦେଖିଚନ୍ତି ଅନ୍ଧାରରେ ଏ ଦି'ଟା ପିଲାଙ୍କ ମୁହଁ, ସେ ପାଟି କଲେ, କିଏରେ ସେଠି ?

ମହନା କମ୍ ଖଣ୍ଡେ କି ? ଛଅ ପୁରିନି ତାକୁ । ବହପ ଦେଖ । ପାଟିକରି କହିଲା, ଆମେ ଆମ୍ବ ପଡ଼ିଚି କି ଦେଖୁଚୁ ।

ବୁଢ଼ୀ ରାଗି ଗଲେ । କହିଲେ ଯା ପଳା ସେଠୁ । ଯିଏ ସେ ଆମ୍ବରେ ହାତଦେବ ତା ହାତ ଭାଙ୍ଗିଦେବି ।

ଦୁହେଁ ବୁଢ଼ୀର ରାଗ ଦେଖି ଡାଟି ଡେଇଁ ଗୋହିରୀକୁ ପଳେଇ ଆସିଲେ,

ତାପରେ ଟିକେ ଚିଗୁଳେଇ ହୋଇ କହିଲେ, ''ତୁମର ଏଠି ଆଉ କିଏ ଅଛି ଯେ ଆଇ ଆମ୍ବ ଖାଇବ ? ଆମେ ଏଇ ତଳେ ପଡ଼ିଥିବା ଆମ୍ବ ଦି'ଟା ନେଇ ଥାଆନ୍ତୁ ନା ।''

ଆଉ ବୁଢ଼ୀକୁ ଦେଖେ କିଏ ? କହିଲେ, କଅଣ କହିଲୁ ? ମୋର କିଏ ଖାଇବ ? ଆରେ ମୋର କିଏ ନାହିଁ ? ତୋ ମାଆର ସଭିଏଁ ଅଛନ୍ତି ? ତୁ ମୋତେ କହୁଚୁ ମୋର କିଏ ଅଛି ? କିଏ ଖାଇବ ? ଆରେ ମୁଁ ବାଞ୍ଝ ହୋଇଚି କି ? ମୋର କେହି ନାହିଁ ? ଆରେ ଆଉ ଘଡ଼ିଏ ପରେ ପରା ଏ ଘର ବୁଲୁକିବ । ଦାଣ୍ଡ କମ୍ପିବ । ବାଡ଼ିପଡ଼ା କହୁଚି, ତୁମର କିଏ ଅଛି ? ରାଗରେ ତୁମ ମାଆ ସେ ଶୁଖିଲା ଆମ୍ବ ମୂଳୀ ଖଣ୍ଡେ ପଡ଼ିଥିଲା, ତାକୁ ଉଠେଇ ଫୋପାଡ଼ି ଦେଇ କହିଲେ ଯାଉଚୁ ନା ଦେଖିବୁ ଏଇନେ ? ବୁଢ଼ୀର ଏତେ ବଳ କୁଆଡୁ ଆସିଲା କେଜାଣି । ମୂଳିଟା ଯାଇ ବାଜିଲା ମହନର ମୁଣ୍ଡରେ । ଧାର ଧାର ହେଇ ରକ୍ତ ବହିଗଲା ।

ଇସ୍, ମୋ ପାଟିରୁ ଅଚାନକ ବାହାରି ପଡ଼ିଲା । ତାପରେ କହିଲି କାହିଁ ସେ ପିଲା ?

ତାକୁ ସନିଆ କାନ୍ଧରେ ବସେଇ ନେଇ ଯାଇଚି ଡାକ୍ତର ଖାନା ।

ମୁଁ କହିଲି ତମେମାନେ ବ୍ୟସ୍ତ ହୁଅନା । ମୁଁ ଯାଉଚି ତାକୁ ଦେଖି ଆସିବି । ତାର ସବୁ ବ୍ୟବସ୍ଥା ମୁଁ କରିଦେଉଚି । ଦରକାର ହେଲେ ତାକୁ ଜଳେଶ୍ୱର କି ବାଲେଶ୍ୱର ନେଇଯିବି ।

ମୁଁ ମୋ ସ୍ତ୍ରୀକୁ ମାଆ କଥା ବୁଝିବାକୁ କହି ବାହାରି ଗଲି ଡାକ୍ତରଖାନା ।

ମହନାର ମୁଣ୍ଡରେ କାଠ ମୂଳିଟା ବାଜି ବେଶ କିଛି ରକ୍ତ ବାହାରି ଯାଇଥିଲେ ମଧ ତାର ସେମିତି କିଛି ହେଇ ନଥିଲା । ମୁଁ ତାର ଏକ୍ସରେ ଇତ୍ୟାଦି କରେଇ ଔଷଧ ପତ୍ର ଆଣି ଘରକୁ ଫେରିଲା ବେଳକୁ ଦିନ ୫ଟା । କିନ୍ତୁ ଘରେ ଆସି ପହଞ୍ଚି ଯାହା ଦେଖିଲି ସେଥିରେ ମୋ ପାଟିରୁ ଆଉ କଥା ବାହାରିଲାନି ।

ମୋ ସ୍ତ୍ରୀ କହିଲେ ତୁମେ ଗଲାବେଳୁ ମା ଶୋଇଚନ୍ତି ଯେ ଶୋଇଚନ୍ତି । ଆଉ ଉଠୁ ନାହାନ୍ତି କି କିଛି କହୁନାହାନ୍ତି ।

ମୁଁ ତା ମୁଣ୍ଡରେ ହାତ ମାରିଲି । ଦେଖିଲି ସ୍ୱାଭାବିକ ଉତ୍ତାପ । ମୁଁ ଡାକିଲି ମାଆ ମାଆ, ଉଠ । କିଛି ବି ଖାଇନୁ ଯେ ।

ସେ ମୋତେ ଖାଲି ଟିକିଏ ଦେଖିଲା ଏବଂ ପୁଣି ଆଖି ମୁଦି ଦେଲା ।

ମୁଁ ଜାଣିଲି ଗୋଟାଏ ସକ୍ ହୋଇଯାଇଚି । ରାଗରେ କାଠ ମୂଳିଟା ସିନା ଫୋପାଡ଼ି ଦେଇଥିଲା ।କିନ୍ତୁ ସେଇଟା ଥିଲା କେବଳ ପିଲାଙ୍କୁ ଡ଼ରେଇବା ପାଇଁ ।

ମାରିବା ପାଇଁ ନୁହେଁ । ଏମିତି ଗୋଟାଏ ଅଘଟଣ ଏଇ ଛୋଟ କଥାରେ ଘଟିଯିବ ବୋଲି ସେ କଳ୍ପନାବି କରି ନଥିଲା ।

ମାଆ ପାଖରେ ମୋ ପୁଅ ଝିଅମାନେ ବସିଚନ୍ତି । ସେମାନେ ଏମିତି ଗୋଟାଏ ଅସ୍ୱସ୍ତିକର ପରିସ୍ଥିତିରେ ହତଭମ୍ବ ହେଇ ପଡ଼ିଛନ୍ତି ।

ମୁଁ ମୋ ସ୍ତ୍ରୀଙ୍କୁ କହିଲି ତମେ ଟିକିଏ ଲେମ୍ବୁ ସରବତ୍ ଆଣ । ମୁଁ ପିଆଇ ଦିଏ । ନଚେତ୍ ପିତ୍ତ ପଡ଼ିଯିବ ଯେ ।

ସେ ଆଣିଲେ । ମୁଁ ମାଆର ପାଟିଟାକୁ ଉପରକୁ କରି ଟିକିଏ ଢ଼ାଳି ଦେଲି । ଦେଖିଲି ବଡ଼ କଷ୍ଟରେ ସେ ସେତକ ଢୁକିଲା । ତାପରେ ଆଉ ଟିକିଏ ଢ଼ାଳିଲି । ସେତକ ଆଉ ଗଲା ନାହିଁ । ସେ ମୁହଁ ବୁଲେଇ ଦେଲା । ପାଣି ଟିକକ ପାଟିରୁ ବାହାରି ଆସିଲା ।

ଆଉ ଆମକୁ ସେ ଦେଖିଲାନି କି ଆମ କଥା ଶୁଣିଲାନି । ପିଲାମାନେ କାନ୍ଦି ଉଠିଲେ ।

ମୋ ପାଟିରୁ ଆଉ କଥା ବାହାରିଲାନି । ଯେ ଆମ ପାଇଁ ଘରଦ୍ୱାର, ଜମିବାଡ଼ି, ଧାନ, ଚାଉଳ ଆଦି ବିଶେଷ କରି ଆମ ପିଲାଙ୍କୁ ଆମ୍ବ କେତେଟା ପାଇଁ ନଡ଼ି ଭୋରରୁ ଉଠି ଲୋକଙ୍କ ସାଥିରେ ରୀତିମତ ଯୁଦ୍ଧ ଆରମ୍ଭ କରିଦେଇଥିଲା ସେ ମାତ୍ର କେଇଟା ଘଣ୍ଟା ପରେ ସେଇ ସବୁ ଆଦରର ବସ୍ତୁ ଯାହାକୁ ସେ ଏତେଦିନ ଯାଏଁ ମୋର ମୋର କହି ଜାବୁଡ଼ି ଧରୁଥିଲା ତାକୁ ପଛ କରି ମୁହଁ ଫେରେଇ ଏକଦମ ଖାଲି ହାତରେ କାହାକୁ କିଛି ନ କହି ଚୁପଚାପ୍ ଚାଲିଗଲା । କିଛିବି ସେ ନେଲା ନାହିଁ ସାଥିରେ ।

*(ସହକାର, ଅଗଷ୍ଟ, ୧୯୯୭)*



# ଖୋଳ

**ମେ** ମାସର ଧୁ ଧୁ ଖରାବେଳ । ଅଗ୍ନି ବର୍ଷୁଥାଏ ଯେମିତି । ରାଉରକେଲା ଆକାଶରୁ ଖଣ୍ଡ ଖଣ୍ଡ ନିଆଁ ଖସିପଡୁଥାଏ । ଗଛପତ୍ରଗୁଡ଼ାକ ଢଳି ଯାଉଥାଏ । ମାଟିରେ ଘାସର ଚିହ୍ନବର୍ଣ୍ଣ ନଥାଏ । ଜାଣିବା ଶୁଣିବା ଲୋକେ କହନ୍ତି ସେ ଦିନ କୁଆଡ଼େ ସେ ବର୍ଷର ଉତ୍ତାପ ଥିଲା ସର୍ବୋଚ୍ଚ ।

ସୁନ୍ଦରଗଡ଼ରୁ ଲମ୍ବି ଥିବା ରାଉରକେଲାର ରାଜରାସ୍ତା ଉପରେ ଥିଲୁଁ ଆମେ ଦୁଇଜଣ । ମୁଁ ଓ ମୋର ସହକାରୀ ଭୂୟାଁ ବାବୁ । ଆମେ ସେ ଦିନ ସେ ଜାତୀୟ ରାଜପଥର ମରାମତି କାମ କେତେଦୂର ଗଲା ତା'ର ତଦାରଖ ଓ ସେଥିରେ କର୍ମରତ କର୍ମଚାରୀଙ୍କ ସହ ଆଲୋଚନା ପାଇଁ ଯାଇ ଥାଉଁ ।

ତା'ର କାମ ଧିମେଇ ଯାଉଚି, ଅର୍ଥ ଅପବ୍ୟୟ ହେଉଚି, କାମରେ ମାରପେଞ୍ଚ ଚାଲିଛି ଓ ଠିକାଦାରଙ୍କୁ ଅନୁଚିତ ସୁବିଧା ଦିଆଯାଉଚି ଇତ୍ୟାଦି ଅନେକ ଅଭିଯୋଗ ଆମକୁ ଅସ୍ତବ୍ୟସ୍ତ କରି ପକାଇ ଥାଏ । ସମ୍ବାଦପତ୍ର ପ୍ରଭୃତି ଗଣମାଧ୍ୟମମାନେ ଦୁର୍ନୀତିର ଉଚ୍ଚାରଣରେ ଉଚ୍ଚଟିତ । ରାଜନେତାମାନେ ବିଧାନସଭାରେ 'ପ୍ରଶ୍ନ'ର ଆୟୁଧ ଧରି ଠିଆ ହେବେ ବୋଲି ଧମକ ଦେଲେଣି । ଆମ ମୁଣ୍ଡ ଉପରେ ଖଣ୍ଡା' ଏକ ଅତର୍କିତ ଆକ୍ରମଣ ପାଇଁ ନିଜର ପ୍ରସ୍ତୁତି ପର୍ବ ଆରମ୍ଭ କରି ଦେଇଥାଏ ।

ବର୍ଷୁଥିବା ଅଗ୍ନିର ତେରଛା ତୀରମାନଙ୍କୁ ଆଡ଼େଇ ଆଡ଼େଇ ଆମେ ଦି'ଜଣ ଗୋଟାଏ ମୋଟର ସାଇକେଲରେ ସାଧାରଣ ବେଗରେ ଆଗଉ ଥିଲୁଁ । କାରଣ ତୀରଗୁଡ଼ାକ ଆମ ମୁହଁ ଉପରେ ବର୍ଷି ଯାଉଥିଲା ଅବାରିତ ଭାବରେ ।

ମୋଟେ ପତ୍ର ନଥିବା ଦରମଲା ପରି ଦେଖାଯାଉଥିବା ଗୋଟିଏ ଶାଳଗଛ ତଳେ ଆମେ ମୋଟର ସାଇକେଲ ଅଟକାଇ ଠିଆ ହେଲୁଁ । ୱାଟର ବଟଲରୁ କିଛି ପାଣି ବାହାର କରି ମୁଁ ଭୂୟାଁବାବୁଙ୍କୁ ଦେଲି ମୁଣ୍ଡ ଓ ମୁହଁରେ ମାରିବା ପାଇଁ । ମୁଁ ମଧ ମୁନ୍ଦାଏ ପାଣି ମୁହଁରେ ମାରି ମୋଟର ସାଇକେଲ ବାକ୍ସରେ ଆଣିଥିବା କିଛି କଟା ଲେମ୍ବୁ

ଓ ଲୁଣ ବାହାର କରି ଦି'ଖଣ୍ଡ ପାଟିରେ ପକେଇଲି ଏବଂ ତାଙ୍କୁ ମଧ୍ୟ ଦେଲି ।

ଆମେ ପୁଣି ଚାଲିଲୁଁ । ଆମକୁ ଆହୁରି ଅନ୍ତତଃ ଦଶ କିଲୋମିଟର ପଥ ଅତିକ୍ରମ କରିବାକୁ ହେବ । ପ୍ରାୟ ଗୋଟାଏ କିଲୋମିଟର ଅତିକ୍ରମ କଲାପରେ ଦେଖିଲୁଁ ରାସ୍ତାରେ ନୂଆ ପିଚୁ ଢ଼ଳା ହେଇଚି । ଏଇ ଦିନେ ଦି ଦିନ ହେଲା ବୋଧେ ସେ କାମ ହେଇଚି । ଭୂୟାଁବାବୁ କହିଲେ ତେବେ ତ କାମ ଅନେକ ବାକି ଅଛି ।

ମୁଁ ଆଉ ସେ କଥାର କିଛି ଉତ୍ତର ଦେଲି ନାହିଁ । ନିଆଁର ଗୋଟାଏ ଝଲକ ମୋ ମୁହଁରେ ଅଛାଡ଼ି ହୋଇ ପଡ଼ିଲା । ମୁଁ କହିଲି ଆଉ ମୋଟର ସାଇକେଲ ଚଳେଇ ହେବନାହିଁ । ମୋତେ ଝାଇଁ ମାରିଯିବା ପରି ଲାଗୁଛି । ଭୂୟାଁବାବୁ କହିଲେ ହେଇ ପରା ଆଗରେ ଲୋକ କାମକରୁଛନ୍ତି । ଆଉ କେତେବାଟ କି ? ଆମକୁ ତ ସେଇ ପର୍ଯ୍ୟନ୍ତ ଯିବାକୁ ହେବ ।

କଷ୍ଟେମଷ୍ଟେ ଆମେ ଯାଇ ସେଠି ପହଞ୍ଚିଲୁଁ । ଗୋଟାଏ ଗଛ ମୂଳରେ ଛତା ଧରି ଠିଆ ହେଇଥାଏ ଠିକାଦାର ରମେଶ ଶର୍ମାର ମୁନସି । ପାଞ୍ଚ ଛ'ଟା ରେଜା ଓ କୁଲି ରାସ୍ତା ଉପରେ ଗୋଡ଼ରେ ମୋଟା ମୋଟା ଜୋତାମାନ ପିନ୍ଧି ପିଚୁ ଢ଼ାଳୁ ଥାଆନ୍ତି । ଆଉ କିଛି ଲୋକ ଚଳନ୍ତା ରୋଡ ରୋଲର ଦେହକୁ ପୋଛୁ ଥାଆନ୍ତି ।

ଅଳ୍ପ ଦୂରରେ ଗୋଟାଏ ଅସ୍ଥାୟୀ ସେଡ୍ । ସେଇଟା ହିଁ ଜୁନିୟର ଇଞ୍ଜିନିୟର ଓ ତାଙ୍କ ସହକର୍ମୀଙ୍କ ଅଫିସ । ଅଳ୍ପ ଦୂରରେ ଲମ୍ବା ଲମ୍ବା ଗାତ ଖୋଳି ପିଚୁ ତରଳା ଯାଉଥାଏ । ଏବଂ ପାଖାପାଖି ସମଗ୍ର ଅଞ୍ଚଳଟାରେ ଖାଲୁଆ ଜାଗାଗୁଡ଼ିକରେ ତରଳା ତାତିଲା ପିଚୁ ଏମିତି ପଡ଼ିଥାଏ ଯେ ଟିକିଏ ଅସାବଧାନ ହେଇ ଚାଲିଲେ ଗୋଡ଼ ପଡ଼ିଯିବାର ସମ୍ଭାବନା ଅଛି । ଥରେ ଗୋଡ଼ ପଡ଼ିଗଲେ ଆଉ ରକ୍ଷା ନାହିଁ । ଅନେକ ଦିନ ଯାଏ ହସପିଟାଲରେ ପଡ଼ିବାର ଯୋଗ ଅଛି, ତା'ଛଡ଼ା ଚାଲିବାର କ୍ଷମତା ଯେ ଜଣେ ଚିରଦିନକୁ ନ ହରେଇବ ସେ କଥା କିଏ କହିବ ?

ଆମେ ସବୁ ସେ ସବୁ ବିପଦ ସହିତ ଅଭ୍ୟସ୍ତ । ଅନେକ ଜାଗାରେ ଆଉଟା ପିଚୁ ଉପରେ ଧୂଳି ଓ ଶୁଖିଲା ପତ୍ର ପଡ଼ିଥାଏ । ତେଣୁ ତଳେ ଗରମ ପିଚୁ ଅଛି ବୋଲି ବେଳେ ବେଳେ ଜାଣି ହୁଏନି । ଆଉ କେତେକ ଜାଗାରେ ତରଳା ପିଚୁର ସ୍ରୁଅ ପଡ଼ିଥାଏ । ଆଗ୍ନେୟଗିରିରୁ ଉଚ୍ଛୁଳି ପଡ଼ିଥିବା ଉତ୍ତପ୍ତ ଲାର୍ଭା ପରି ସେଗୁଡ଼ିକ ବହି ଯାଉଥାଏ ।

ଆମେ ସାବଧାନତାର ସହିତ ପାଦ ପକେଇ ଯାଇ ସେ ଅଫିସ ଭିତରେ ପହଞ୍ଚିଲୁଁ । ଜୁନିୟର ଇଞ୍ଜିନିୟର ଜେନା ବାବୁ ଆମ ଆଡକୁ ଟେବୁଲ ଫେନଟା ମୁହେଁଇ ଦେଲେ ଏବଂ ମୁନସିକୁ ପଠେଇଲେ ଦିଟା ପଇଡ଼ । କିଛି ଆଖୁରସ ଏବଂ ଥଣ୍ଡା ପାନୀୟ ଆଣିବାକୁ ।

ଏଠି ପାଖରେ ମିଳିବ ଏ ଗୁଡ଼ାକ ? ମୁଁ ପଚାରିଲି ।

ସେ କହିଲେ ଏଇ ଅଳ୍ପ ଦୂରରେ । ସେ ଲୁନାରେ ଯାଇ ନେଇ ଆସିବ ।

ଆମେ ମାଠିଆରୁ ପାଣି ମୁନ୍ଦେ ପିଇ କଥା ଆରମ୍ଭ କଲୁଁ । ଜେନାବାବୁ କହିଲେ ଏଇ କେତେଦିନ ହେଲା କାମ କରିବାକୁ ଲୋକ ମୋତେ ମିଳୁ ନାହାନ୍ତି । ଏ ଖରାରେ କାମ କରିବାକୁ କେହି ଆସୁ ନାହାନ୍ତି । ଦି' ଦିନ ତଳେ ଦୁଇଟା ରେଜାଙ୍କୁ ଝାଉଁ ମାରିଗଲା । ସେମାନଙ୍କୁ ଗୋଟାଏ ଟ୍ରକ୍‌ରେ ଘରକୁ ପଠେଇ ଦେଲି । ସେ ସ୍ପଷ୍ଟ କହିଲେ ଏ ଖରାରେ କାମର ଗତି ବେଶି ବଢ଼େଇବା ମୋତେ ସମ୍ଭବ ନୁହେଁ ।

ମୁନସି ଆସି ପାନୀୟ ଧରି ପହଞ୍ଚିଲା । ଆମେ ପ୍ରଥମେ ପଇଡ଼ ଦି'ଟା ପିଇ ପାନୀୟକୁ ଦ୍ୱିତୀୟ ପର୍ଯ୍ୟାୟକୁ ରଖି ଦେଲୁଁ ।

ଭୂୟାଁବାବୁ କହିଲେ ଯେମିତି ହେଲେ ଅଧିକ ଲୋକ ଲଗେଇ ଏଇ ମାସ ଭିତରେ କାମ ସାରନ୍ତୁ । ନଚେତ ଆଉ ରକ୍ଷା ନାହିଁ । ଜେନାବାବୁ ତଳକୁ ମୁହଁ କଲେ । ଅସ୍ଥାୟୀ ଅଫିସର ଦୁଇ ବାଇ ଏକ ଫୁଟର ଝରକା ଦେଇ ମୁଁ ବାହାରକୁ ଅନେଇଲି । ଲୋକଗୁଡ଼ାକ ଅବିରାମ ଗତିରେ କାମ କରି ଚାଲିଛନ୍ତି । ପିଚୁ ଲାଗି ସେମାନଙ୍କ ଗୋଡ଼ ଦି'ଟା ଗୋଦର ଗୋଡ଼ପରି ମୋଟା ହୋଇ ଯାଇଥାଏ । ଆଉ ଏ ପାଖରେ ତରଳା ପିଚୁରୁ ବାଲଟି ବାଲଟି ବାହାରକରି ଆଉ ଗୋଟାଏ କୁଲି ରାସ୍ତା ଉପରକୁ ନେଉଚି । ଖାଲ ଜାଗାରେ ଏମିତି ତରଳା ପିଚୁ ପଡ଼ିଥାଏ ଯେ ଖରାରେ ପାଣିପରି ଝଲମଲ କରୁଥାଏ ।

ସବୁଠି ଅଗ୍ନିର ତାଣ୍ଡବ ନୃତ୍ୟ । ଘଡ଼ି ଦେଖିଲି । ଦିନ ଦି'ଟା । ମୋ ଆଖି ପ୍ରସରୀ ଗଲା ଆଉ ଏକ ପାଖକୁ । ରୁମ ନ ଥିବା ମାଈ କୁକୁରଟି କେଇଟା ଶୁଖିଲା ପତ୍ର ଉପରେ ପେଟେଇ ପଡ଼ିଛି ଓ ତା'ର ଛୋଟ ଛୁଆଟେ ତା ପେଟକୁ ଝୁଣି ପକାଉଚି, ବୋଧେ ଦୁଧ ବାହାରୁନି । ବିରକ୍ତ ହେଇ ମାଆ ଉଠି ଗଲା । ପିଲାଟି ସେଇଠି ଅଳ୍ପ ଅଳ୍ପ ପବନରେ ଉଡ଼ି ବୁଲୁଥିବା ଶୁଖିଲା ପତ୍ର ସାଥିରେ ଖେଳିବାକୁ ଲାଗିଲା ।

ମୁଁ ପୁଣି କଥା ଉପରକୁ ଆସିଲି । ବିଷୟର ଶାଖାପ୍ରଶାଖା ଯେ କୋଉଠାଏ ଗଲାଣି ମୁଁ ସେ କଥା ଜେନା ବାବୁଙ୍କୁ ଚେତାଇ ଦେଲି । ଚାକିରି ଉପରେ ଆଞ୍ଚ ଆସିପାରେ ଏ କଥା ମଧ ଜଣେଇ ଦେଲି ଏବଂ କହିଲି କାମ ଯେତେ ଶିଘ୍ର ସରେ ସେତେ ଆମ ସମସ୍ତଙ୍କ ପକ୍ଷେ ମଙ୍ଗଳ ।

ତା'ପରେ ଆମର ଖାତାପତ୍ର ଯାଞ୍ଚ କାମ ଆରମ୍ଭ ହେଲା । ଜେନା ବାବୁ ଓ ତାଙ୍କ ଅଫିସ ଷ୍ଟାଫ୍ ମୋତେ ଫାଇଲ ଦେଖାଉ ଥାଆନ୍ତି । ଭୂୟାଁବାବୁ ଦୁଇଟା କୋଲ୍‌ଡ ଡ୍ରିଙ୍କ ଆଣି ଟେବୁଲ ଉପରେ ଥୋଇ ଦେଲେ । ପାଇପଟା ଓଠରେ ଲଗେଇ ମୁଁ ପିଇବାକ

ଲାଗିଲି ଏବଂ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲି ।

ହଠାତ୍ ସେ କୁକୁର ଛୁଆଟାର କାଁ କାଁ କରୁଣ ଚିତ୍କାରରେ ସେ ଖଣ୍ଡମଣ୍ଡଳଟା କମ୍ପି ଉଠିଲା । ତା' ଛାତି ଯେମିତି କିଏ ଚିରି ବିଦାରି ପକାଉଚି ।

ମୁଁ ଚମକି ପଡ଼ିଲି । ଆରେ କ'ଣ ହେଲା ? ଆମେ ସବୁ ଏକାଥରେ ଝରକା ପାଖକୁ ଉଠି ଆସିଲୁଁ ।

ଜେନାବାବୁ ଅତି ସାଧାରଣ ଭାବେ କହିଲେ ସାର, ସେ କିଛି ନୁହେଁ । ସେଇ ଯେଉଁ କୁକୁର ଛୁଆଟା ଖେଳୁଥିଲା ନା, ସେଇଟା ସେ ତତଲା ପିଚୁରେ ପଡ଼ି ଛନ୍ଦି ହେଇ ଯାଇଥିବ ।

ମୁଁ ଝରକା ବାଟେ ଦେଖିଲି । ଆରେ ସତେତ । କି ବିଭତ୍ସ ସେ ଦୃଶ୍ୟ । କି କରୁଣ ବୁକୁଫଟା ସେ ଚିତ୍କାର । ଛୋଟ ଛୁଆଟା ସେ ଖାଲରେ ପଡ଼ିଥିବା ତତଲା ପିଚୁରେ ପଡ଼ି ଛଟପଟ ହେଉଚି । ଆଉ ଉଠି ପାରୁନି ।

ମୁଁ ଦଉଡ଼ି ଗଲି ତା ପାଖକୁ । ମୋ ପଛେ ପଛେ ଭୂୟାଁବାବୁ, ଜେନାବାବୁ ଓ ମୁନସି ମଧ୍ୟ ।

ଛୁଆଟା ଯେମିତି ଚିତ୍କାର କରି କହୁଚି, ମରିଗଲି ମୋତେ ବଞ୍ଚାଅ ।

ମୋ ସାମନାରେ ଜେନାବାବୁ ମୋତେ ବାଟ ଓଗାଳି ଠିଆ ହେଲେ । ଆପଣ ଇଏ କ'ଣ କରୁଛନ୍ତି ? ସେଇଟା କୁକୁର ଛୁଆ । ତା' ଦେହରେ ହାତ ଦେଲା ମାତ୍ରେ ସେ କାମୁଡ଼ି ଦେବ । ମୁଁ ଟିକିଏ ଅଟକି ଯିବା ଦେଖି ସେ କହିଲେ ଏମିତି ତିନିଚାରିଟା ଛୁଆ ଏଠି ମଲେଣି । ଆମେ କ'ଣ କରିବୁ ?

ମୁଁ ଦେଖିଲି ଛୁଆଟା ପ୍ରାଣପଣେ ସେଥିରୁ ମୁକୁଳିବାକୁ ଚେଷ୍ଟା କରୁଚି । କିନ୍ତୁ କି ଦୁର୍ଭାଗ୍ୟ । ତରଳ ଆଉଟା ପିଚୁରେ ତା'ର ଗୋଡ଼ ପେଟ ମୁହଁ ସବୁ ଏକାକାର ହୋଇ ଯାଉଚି ।

ସେ ଚିତ୍କାର ଥିଲା ଅସରନ୍ତି । ସେ ଯନ୍ତ୍ରଣା ଓ କ୍ରନ୍ଦନର ସ୍ୱର ଥିଲା ଦିଗନ୍ତ ପ୍ରସାରୀ । ମୁଁ କ'ଣ କରିବି କିଛି ଠିକ୍ କରି ପାରିଲିନି । ସତରେ ସେ ଯଦି ମୋତେ କାମୁଡ଼ି ଦିଏ ?

ତା' ମାଆ ସେ ପଟୁ ଝପଟି ଆସିଲା । ସେ ଦେଖିଲା ତା ଛୁଆର ଅବସ୍ଥା । ମାଆ ଓ ଛୁଆ ଦିହିଁଙ୍କ ଆଖି ମିଳି ଯାଆନ୍ତେ ମାଆ ବି ଛୁଆ ସାଥିରେ ରାହାଧରି କାନ୍ଦି ଉଠିଲା ।

ତା'ପରେ ସେ ନିଜକୁ ସଜାଡ଼ି ନେଲା । ତରଳା ପିଚୁ ପଡ଼ିଥିବା ସ୍ଥାନଠୁ ଅଳ୍ପ

ଦୂରରେ ସେ ଦୁଇ ଗୋଡ଼ରେ ମାଟିକୁ କୋରି ବିଦାରୀ ପକାଇଲା । ତାପରେ ସେଇ ଖାଲ ଜାଗାରେ ଆଗ ଦୁଇ ଗୋଡ଼କୁ ରଖି ପେଟେଇ ପଡ଼ିଲା । ଧୀରେ ଧୀରେ ସେ ତା' ଛୁଆର ବେକ ପାଖକୁ ଯାଇ କାମୁଡ଼ି ଧରିଲା ଏବଂ ଗୋଟାଏ ପ୍ରବଳ ଚିତ୍କାର କରି ନିମିଷକେ ସେଠୁ ତାକୁ ଘୋଷାରି ଆଣିଲା ।

ପିଲାଟି ବାହାରକୁ ଆସିବା ମାତ୍ରେ ସେ ତାକୁ ଛାଡ଼ି ଦେଲା ଏବଂ ଆମକୁ ଗୋଟାଏ କ୍ରୋଧ ଓ ଘୃଣା ଆଖିରେ ଅନେଇଲା ।

ମୁଁ ଦେଖିଲି ସେ ଯେମିତି ମୋତେ କହୁଚି, ତମେ ମଣିଷ ? ତମେ ଏତକ କରିପାରିଲନି ? ତମ ଛୁଆ ହେଇଥିଲେ ?

ମୋ ଗାଲରେ ଯେମିତି କିଏ ଚାପୁଡ଼ାଟାଏ ପିଟିଦେଲା । ସତରେ କ'ଣ ମୁଁ ମଣିଷ । ମୁଁ ସମସ୍ତଙ୍କ ଉପରେ ? ମୋ ଉପରେ ଆଉ କେହି ନାହିଁ ? କିଏ ଜଣେ କହିଥିଲେ ମଣିଷ ଭିତରେ ଦେବତ୍ୱ ଅଛି । ଏଇଟା କ'ଣ ମୋର ଦେବତ୍ୱ ? ଯାକୁଇ ନେଇ ମଣିଷ ଗର୍ବକରେ ?

କୁକୁର ଛୁଆଟା ସେତେବେଳକୁ ଧୀରେ ଧୀରେ ଗଛ ତଳକୁ ଯାଉଥାଏ । ସେ ଯେତିକି ଆଗକୁ ଯାଇଥାଏ ସେତିକି ତା' ଦେହରେ ଶୁଖିଲା ପତ୍ର, କାଠି, କୁଟା ଓ ଧୂଳି ଜଡିଯାଉଥାଏ । ଅସ୍ଥାୟୀ ଆବରଣ ତାକୁ ପୂରାପୂରି ଢ଼ାଙ୍କି ପକାଉଥାଏ । ଆଉ ଖଣ୍ଡେ ଦୂରରେ ତା' ମାଆ ପେଟ ଦେଖେଇ ପଡ଼ିଥାଏ । ଯେମିତି ଡାକୁଥାଏ, ଆ କ୍ଷୀର ପିଇବୁ ପରା ।

ମୁଁ ପୁଣି ନିଜକୁ ଦେଖିଲି । କିନ୍ତୁ କାହିଁକି କେଜାଣି ମୁଁ ଆଉ ନିଜକୁ ମଧ୍ୟ ଦେଖି ପାରିଲିନି । ମୁଁ ମୋ ଆଗରେ ଗୋଟାଏ କିମ୍ଭୂତ କିମାକାର ରୂପ ନେଇ ସାରିଥିଲି ସେତେବେଳକୁ ।

*(ସାପ୍ତାହିକ ସମାଜ, ୩ ଜୁନ୍, ୧୯୯୯)*



# ପାହୁ ନଥିବା ରାତିରେ

**ଗାଁ** ଟିଏ ଥିଲା ଯେଉଁଠି କେବେ ବି ରାତି ପାହୁ ନଥିଲା । ପ୍ରଶ୍ନ ଉଠିପାରେ- ଏମିତି କଅଣ କୋଉଠି ଗାଁଟିଏ ଅଛି ଯୋଉଠି କେବେ ରାତି ପାହେନା । ଏମିତି କଅଣ ଗାଁଟିଏ ଅଛି ଯେଉଁଠି କେହି କେବେ ଦିନଟିଏ ଦେଖି ନାହାନ୍ତି । ଦିନର ଆଲୁଅ, ଆଲୁଅର ତେଜ, ତାର ପରିଷ୍କାର ତୋଫା ଦେହ ଯାହା ଆଖିକୁ ଝଲସାଇ ଦିଏ, ଆଖି ଫିଟେଇ ଦେଖେଇ ଦିଏ ମାଟି, ମାଟି ଉପରେ ନୀଳ ଆକାଶ, ଆକାଶରେ ମେଞ୍ଚା ମେଞ୍ଚା ତାରା ଆଉ ତା ସାଥିରେ ପର୍ଯ୍ୟାପ୍ତ ଜହ୍ନ ଆଲୁଅ । ଯାହା ଦେହରେ ଚନ୍ଦନ ପରି ନେସି ହୋଇଯାଏ । ସେ ଗାଁର ଲୋକମାନେ ସେ ସବୁ କେବେ ଦେଖି ନାହାନ୍ତି ।

ଖାଲି ଦେଖି ନାହାନ୍ତି କହିବା ବି ଭୁଲ୍ ହେବ । ସେମାନେ ସେ ସବୁ କେବେ ଦେଖିବାକୁ ଚେଷ୍ଟା ମଧ କରିନାହାନ୍ତି । ଖାଲି ଚେଷ୍ଟା ନୁହେଁ । ଇଚ୍ଛା ମଧ କରିନାହାନ୍ତି । ସେମାନେ ହୁଏତ ଭାବିଥିବେ ଯେ ରାତି ଛଡ଼ା ଦିନର କୌଣସି ସ୍ଥିତି ବୋଧେ ନାହିଁ । ଦିନ ବୋଲି କିଛି ନାହିଁ । କିମ୍ବା, ଏମିତି ମଧ ଭାବିଥାଇ ପାରନ୍ତି ଯେ ଆମ ଭାଗ୍ୟରେ ବୋଧେ ଦିନ ଦେଖିବାର ନାହିଁ ।

କେବେ ବି ଆଖି ଖୋଲିବାକୁ ସୁଯୋଗ ପାଇନଥିବା ଲୋକଟି କଅଣ ଜାଣେ ପୃଥିବୀ ବିଷୟରେ ? କି ଧାରଣା ତାର ଅଛି ଏ ପୃଥିବୀ ବିଷୟରେ ? ସମଗ୍ର ପୃଥିବୀଟା ଯେ ତା ପାଇଁ ଅନ୍ଧାରୁଆ ହୋଇଥିବ । କଳାମୁଚୁ ମୁଚୁ ହୋଇଥିବ, ଏମିତି ଏକ ଧାରଣା ତା ମନ ଭିତରେ ଦୃଢ଼ୀଭୂତ ହୋଇଥିବ ।

ଅନ୍ଧାର ଭିତରେ ସୁନ୍ଦରର ଚେହେରା ମୋଟେ ଦେଖି ହୁଏନା । ଦେଖି ହୁଏନା ବୋଲି ସୁନ୍ଦର ଶବ୍ଦର ଆକୃତି ଓ ପ୍ରକୃତି ବିଷୟରେ କଳ୍ପନା ବି କରି ହୁଏନା । ସେଠି ମନ, ଚିନ୍ତା ଓ ଚେତନା ସବୁ ଗୋଟିଏ ହୋଇଯାଏ । ଖାଲି ଅନ୍ଧାର ଓ ଅନ୍ଧାର ।

ଏଇମିତି କଳା ମୁଚୁ ମୁଚୁ ଅନ୍ଧାର ଭିତରେ ଗୋଡ ଥାପି ଥାପି ବାଟ ଅଣ୍ଡାଳି ରାସ୍ତା ଖୋଜି ଖୋଜି ଗାଁ ମୁଣ୍ଡରେ ପହଞ୍ଚିଲା ସୁନୁ । ସୁନୁ ଭେଣ୍ଡା ଟୋକାଟିଏ । ଗଚ୍ଛୁରୀ

ଆସୁଥିବା ନିଶ ଦାଢ଼ୀ ସହିତ ତା ଦେହରେ ଦାନା ବାନ୍ଧୁ ଥିବା ତନ୍ତୁଗୁଡ଼ିକ ଯିଏ ଦେଖେ ସେ କହେ ସୁନ୍ନ ନିଶ୍ଚୟ ଆଉ ଗୋଟେ କୋଉ ରାଇଜରୁ ଆଇଚି । ସେ ସମସ୍ତଙ୍କ ଭିତରେ ବାରି ହୋଇପଡ଼େ ।

ତା ଆଖିର ତୀରଗୁଡ଼ାକ ଖାଲି ମୁନିଆ ନୁହେଁ, ବିଷୟର ନାଭିମୂଳକୁ ଭେଦ କରି ପାରୁଥିବା ଶକ୍ତି ମଧ ସେଥିରେ ଥିଲା । ଆଉ ତାର ମୁହଁଟା- ସବୁବେଳେ ଭାବ ଗମ୍ଭୀର କିନ୍ତୁ ହସ ହସ । ପରକୁ ଆପଣାର କରିପାରୁଥିବାର ଗୋଟିଏ ମମତା ବିଜଡିତ ଇଚ୍ଛାର ଆକର୍ଷଣୀ ଶକ୍ତି ଥିଲା ସେଥିରେ । ତକୁ ଉଠେଇ ବସ୍ତୁକୁ ଦୁଇ ହାତରେ ଟୋଳି ଧରି ନିରୀକ୍ଷଣ କରି ପାରିବାର କିମ୍ବା ତାକୁ ଆପଣେଇ ନେବାର ଗୋଟାଏ ଦୁରନ୍ତ ଇଚ୍ଛାର ଉନ୍ମେଷ ମଧ ସେଥିରେ ଥିଲା ।

ସୁନ୍ନକୁ ଗାଁ ଲୋକେ ଘେରି ଯାଆନ୍ତି । ସମସ୍ତେ ତାକୁ ଆସି ଦେଖନ୍ତି । ତା ଚାରିପଟେ ବୁଲି ବୁଲି ତାକୁ ଅନାନ୍ତି ; ଆଶ୍ଚର୍ଯ୍ୟ ହୁଅନ୍ତି । ଆରେ, ଏମିତିକା ମଣିଷଟିଏ କଅଣ ଅଛି ଯିଏ ଲୁଗା ପିନ୍ଧେ ? ସେମାନେ ତା ଦେହରେ ଆସ୍ତେ ଆସ୍ତେ ହାତ ମାରନ୍ତି । ଆଃ ବେଶ ମୁଲାୟମ ତ ? ଦେହରେ ଧୂଳି ମଳିବି ଟିକିଏ ନାହିଁ । ଦେହ ଗନ୍ଧଉନି ତ ?

ଗାଁର ନାରୀମାନେ ତାକୁ ଦେଖି ବୁଦା ମୂଳେ ଲୁଚି ଯାଆନ୍ତି କିମ୍ବା ଧରିଥିବା ବଡ଼ ବଡ଼ ତାଳ ପତ୍ରର ଉହାଡରେ ନିଜକୁ ଢ଼ାଙ୍କି ରଖି ତାକୁ ଦେଖନ୍ତି ଏବଂ ତାପରେ, ସୁନ୍ନ ମୋଟେ କ୍ଷତି କାରକ ନୁହେଁ ଏକଥା ସେମାନଙ୍କର ହୃଦ୍‌ବୋଧ ହେଲା ପରେ ଦଳ ଦଳ ହୋଇ ଆଗକୁ ଆସି ତାକୁ ଦେଖନ୍ତି । ଆଉ କେହି କେହି ପାଟିରେ ହାତ ଦେଇ ମୁରୁକି ମୁରୁକି ହସନ୍ତି । ସେମାନେ କଅଣ ଭାବନ୍ତି କେଜାଣି ।

ଇଏ କିଏ ବା ? କୋଉଠୁ ଆଇଚି ? ଇଏତ ଏ ଇଲାକାର ନୁହେଁ । ଆଉ କେଉଠି ଇମିତିକା ଲୋକଟାଏ ଅଛି ଯେ ସେଠି ସେମାନେ ଇମିତିକା ଦେଖିବାକୁ ?

ସୁନ୍ନ ବି କିଛି ବୁଝି ପାରେନା । ସେ ତା ଜୀବନରେ ଇମିତିକା ଗୋଟେ ରାଇଜ ଦେଖିବ ବୋଲି କେବେ କଳ୍ପନା କରିନଥିଲା । ସେ ନିଜକୁ ଜଣେ ଡେଭିଡ୍ ଲିଭିଂଷ୍ଟୋନ ଏବଂ ସେ ଆଫ୍ରିକାର ଗୋଟାଏ ଅଗମ୍ୟ ଇଲାକାରେ ପଶି ଆସିଛି ବୋଲି ମନେ କଲା ।

କିନ୍ତୁ ସେ ଜାଣେ ଯେ ସେ ଡେଭିଡ୍ ଲିଭିଂଷ୍ଟୋନ ନୁହେଁ କି ଏଇଟା ଆଫ୍ରିକା ମଧ ନୁହେଁ । ଏଇଟା ତ ଭାରତବର୍ଷ ଏବଂ ସେଇପରି ମହାନ୍ ଐତିହ୍ୟ ଏବଂ ଅହଂକାରୀ ଇତିହାସ ଥିବା ଗୋଟିଏ ଦେଶର ଯେ କୌଣସି ଗୋଟିଏ ଗାଁ ନିଶ୍ଚୟ । ସୁନ୍ନ ଭାରତବର୍ଷର ଇତିହାସ ପଢ଼ିଚି । ହଜାର ହଜାର ବର୍ଷ ତଳେ ଆର୍ଯ୍ୟମାନେ ଆସି ଏଠାକାର ଆଦିମ ଅଧିବାସୀମାନଙ୍କୁ ଅପେକ୍ଷାକୃତ ଅଗମ୍ୟ ପାହାଡ଼ିଆ ଅଞ୍ଚଳକୁ ତଡ଼ି ନିଜେ ସେଠି ବାସ କରିବାକୁ ଲାଗିଲେ । ମୋଟାମୋଟି ଏତିକି ହିଁ ତାର ଧାରଣା ।

ସୁନ୍ନୁ ସାଧାରଣ ମଣିଷଟିଏ ଏବଂ ସେ ଯେ ତା ନିଜ ରାଜ୍ୟରେ ବିଚରଣ କରୁଚି ଏଥିରେ ତାର ସନ୍ଦେହ ନଥିଲା । କିନ୍ତୁ ସେ ଆଶ୍ଚର୍ଯ୍ୟ ହେଲା ଏଇଥି ପାଇଁ ଯେ ତା ନିଜ ରାଜ୍ୟରେ ଏମିତି ଗୋଟେ ଗାଁ ଥିବ ଯୋଉଠି ମଣିଷମାନଙ୍କୁ ଏବେ ବି ମଣିଷ ବୋଲି କହି ହେବନି । ସେ ଏକଥା ଦେଖି ମଧ ବିଶ୍ୱାସ କରି ପାରୁ ନଥିଲା ।

ସୁନ୍ନୁ ସେ ଲୋକମାନଙ୍କୁ ପାଖକୁ ଡାକିଲା ଏବଂ ସେମାନଙ୍କୁ ପଚାରିଲା ତମେମାନେ ସମସ୍ତେ ମଣିଷତ ?

ସେମାନେ ଆଶ୍ଚର୍ଯ୍ୟ ହେଲେ ଏ କଥା ଶୁଣି । ସେମାନେ କହିଲେ, 'ମଣିଷ' କଅଣ ? ଆମେ କେବଳ ଆମେ । ତାଠୁ ଆମର ଆଉ ବେଶି କିଛି ପରିଚୟ ନାହିଁ । ଆମେ ତାଠୁ ବେଶି କିଛି ଜାଣିନୁ ମଧ । ଆମେ ଆମଠୁ ଆଉ ଆଗକୁ କଅଣ ଅଛି ଜାଣିନୁ କି ପଛକୁ ଆଉ କିଛି ଥାଇ ପାରେ ସେ କଥା ମଧ ଜାଣିନୁ ।

ସୁନ୍ନୁ କଥାଟା ସେମାନଙ୍କୁ ବୁଝାଇବାକୁ ଯାଇ କହିଲା 'ଆମେ' ମାନେ ଆମେ ସମସ୍ତେ । ଯେମିତି ତୁମେ, ଆମେ ଓ ଅନ୍ୟ ସମସ୍ତ ।

ସେମାନେ, ଟିକିଏ କଥାଟାକୁ ଚିନ୍ତା କଲେ ଏବଂ କହିଲେ 'ଆମେ'ଟା ଯଦି ସମସ୍ତେ ତେବେ ଆମେ ସେଇ ସମସ୍ତେ ।

ସୁନ୍ନୁ ମନାକଲା । କହିଲା ତମେ 'ସମସ୍ତେ' ନୁହେଁ । ତମେ କେବେହେଲେ ସମସ୍ତଙ୍କ ଭିତରେ ହେଇ ପାରନା । 'ସମସ୍ତେ ଗୋଟିଏ କଥା ଏବଂ ତମେ ସବୁ ଆଉ ଗୋଟିଏ କଥା । ଏଇଠି ପୃଥିବୀଟାକୁ ଦୁଇଫାଳ କରି ଦିଆଯାଇଛି । ଫାଳେ ତମର ଓ ଆର ଫାଳଟା ସେମାନଙ୍କର ।

କଥାଟା ସେମାନଙ୍କ ମୁଣ୍ଡକୁ ମୋଟେ ପଶିଲାନି । ସେମାନେ ଖାଲି ଯା' ତା ମୁହଁକୁ ଚାହିଁଲେ ସିନା କିନ୍ତୁ କିଛି କହି ପାରିଲେନି ।

ସୁନ୍ନୁକୁ ସେତେବେଳେ ଖୁବ୍ ଭୋକ ହେଉଥିଲା । ସେ କହିଲା ମୋତେ କିଛି ଖାଇବାକୁ ଦେଇପାରିବ, ମାନେ ଏଇ ଭାତ କି ଦି'ଖଣ୍ଡ ରୁଟି ? ସାମାନ୍ୟ ଟିକିଏ ତରକାରୀ ହେଲେ, ଭଲ ନ ହେଲେ ମଧ ମୁଁ ଲୁଣ ଦେଇ ଚଳେଇ ନେବି ।

ଲୋକମାନେ ତାକୁ ନେଇ ଘର ଆଗରେ ଥିବା ଗୋଟାଏ ପଥର ଉପରେ ବସେଇଲେ ଏବଂ ଝଙ୍କାଏ କଞ୍ଚାପତ୍ର ଆଣି ତା ସାମନାରେ ଗୋଟାଏ କଦଳୀ ପତ୍ରରେ ପରସି ଦେଲେ ।

ସୁନ୍ନୁ ଆଶ୍ଚର୍ଯ୍ୟ ହେଲା । ଆରେ ଏମାନେ ତେବେ ଭାତ ଓ ରୁଟି କଅଣ ଜାଣି ନାହାନ୍ତି । ତାର ମନେ ପଡ଼ିଲା, ସେ ଆସିଲାବେଳେ ଦେଖିଥିଲା ପାହାଡ଼ ପର୍ବତ ଠାର୍

ଆରମ୍ଭ କରି ଜଂଗଲ ଭିତରେ ଚାରିଆଡ଼େ ପ୍ରଚୁର ଫଳ ଗଛ । ଜାତି ଜାତିଆ ଫଳ । ପାଚି ଲାଲ ହେଇ ରହିଛି । ସେ ବସିଥିବା ପଥରର ସେ ପାଖରେ ମଧ ଗୋଟାଏ ବିରାଟ ଗଛ ଫଳ ଭାରରେ ତଳକୁ ନଇଁ ପଡ଼ିଛି । ସେ ଉଠି ପଡ଼ିଲା ଏବଂ ସେଥିରୁ ଗୋଟେ ତୋଳିବାକୁ ହାତ ବଢ଼େଇଲା ।

ସମସ୍ତେ ଜୋର୍‌ରେ ଚିତ୍କାର କରିଉଠିଲେ । କହିଲେ, ''ନା ନା ତାକୁ ତୋଳନା । ତାକୁ ତୋଳନା ।''

କାହିଁକି ?

ତୁମେ ଆମର ଅତିଥି । ତୁମକୁ ଆମେ କେବଳ ଆମ ଜିନିଷ ଖାଇବାକୁ ଦେଇ ପାରିବୁ । କିନ୍ତୁ ଯାହା ଆମର ନୁହେଁ ତାକୁ କେମିତି ଆମେ ତୁମକୁ ଦେବୁଁ ? ସେ ଫଳଟା ଆମର ନୁହେଁ ।

ସୁନୁ ଆଶ୍ଚର୍ଯ୍ୟ ହେଲା । ବଡ଼ ବିଚିତ୍ର ବିଚାର ଏମାନଙ୍କର । ସେ ପଚାରିଲା, ଏ ଗଛଟା କଅଣ ତୁମର ନୁହେଁ ?

ନା, ଏଇଟା ଆମର ନୁହେଁ ।

ଆଉ ଏ ମାଟିଟା ? ଏ ଘର ? ଏ ଝରଣାର ପାଣି ? ଏଠାକାର ପବନ ? ଏ ଆକାଶ ? ଏ ସବୁବି ତମର ନୁହେଁ ? ସେମାନେ ହସିଲେ । ଲୋକଟା କେତେ ବୋକା ମ ? ଏମିତିକା ପ୍ରଶ୍ନ କଅଣ ସବୁ ପଚାରୁଚି ?

ଥୁରୁ ଥୁରୁ ହେଉଥିବା ବୁଢ଼ାଟାଏ ଗୁମ୍ଫା ପରି ଦେଖାଯାଉଥିବା ଗୋଟାଏ ଝୁମ୍ପୁଡ଼ିର ପିଣ୍ଡା ଉପରେ ବସି ଏ ଯାଏ ସବୁ କଥାକୁ ଲକ୍ଷ୍ୟ କରୁଥିଲା । ସେ ଶେଷରେ ସୁନୁକୁ ହାତଠାରି ଡାକିଲା । ସୁନୁ ତା ପାଖକୁ ଉଠି ଆସିବାରୁ ସେ ତାକୁ ପାଖରେ ବସିବାକୁ କହିଲା ଏବଂ ଅନ୍ୟମାନଙ୍କୁ ସେଠୁ ଚାଲିଯିବାକୁ କହିଲା, ତମେ ଏ ଗାଁର କଥା କିଛି ଜାଣିଚ ?

ସୁନୁ ମନା କଲା ।

ବୁଢ଼ା କହିଲା, ଏଇ ଯେ ଦୂରରେ ପାହାଡ଼ଟା ଦେଖୁଚ, ତା ସେ ପାଖରେ ଘଞ୍ଚ ଜଙ୍ଗଲରେ ଅନେକ ବଡ଼ ବଡ଼ ଏବଂ ବିକଟାଳ ଭୂତ ଓ ରାକ୍ଷସମାନେ ଅଛନ୍ତି । ସେମାନଙ୍କ ରାଜା କିମ୍ୱା ବେଳେ ବେଳେ ତାଙ୍କ ଲୋକମାନେ ବିରାଟ ବିରାଟ ଖଣ୍ଡା ଏବଂ ଅନ୍ୟାନ୍ୟ ମାରାତ୍ମକ ଅସ୍ତ୍ରଶସ୍ତ୍ର ଧରି ଏଠାକୁ ଆସନ୍ତି ଏବଂ ଆମକୁ ମାରପିଟ କରନ୍ତି । ଆମକୁ ଭୟ ଦେଖାନ୍ତି । ବେଳେ ବେଳେ ଆମମାନଙ୍କ ଭିତରୁ ଜଣେ ଦି' ଜଣଙ୍କୁ ଧରି ନେଇ ଯାଆନ୍ତି । ସେମାନେ ଅଚାନକ ଆସନ୍ତି ଏବଂ 'ଖାଇବି' ଖାଇବି' ହୁଅନ୍ତି । ଆମେ ସବୁ ସେମାନଙ୍କୁ ଫୁଲ ଦେଇ ପୂଜା କରୁଁ ଏବଂ ଏଇ ଫଳଗୁଡ଼ିକ

ସେମାନଙ୍କୁ ଭୋଗ ଦେଉଁ । ସେତେବେଳେ ଯାଇ ସେମାନେ ସନ୍ତୁଷ୍ଟ ହୁଅନ୍ତି । ସେମାନେ ଆମକୁ କହିଛନ୍ତି, ''ଏ ସମଗ୍ର ବଣ ଜଙ୍ଗଲ ଆମର । ଫୁଲ ଓ ଫଳସବୁ ଆମର । ତାର ସୃଷ୍ଟି ଆମ ପାଇଁ । ତେବେ ତୁମେ କ୍ଷୁଧା ନିବାରଣ ପାଇଁ ସେ ଗଛର ପତ୍ର କିଛି ଖାଇପାର ।''

ସୁନୁ ସନ୍ଦେହରେ ପଡ଼ିଲା । ସେ କାଉଁରୀ କାମାକ୍ଷା କଥା ଶୁଣିଚି । ସେଠି ଫୁଲ ଶୁଂଘେଇ ମଣିଷକୁ ମେଣ୍ଢା ଓ ମେଣ୍ଢାକୁ ମଣିଷ କରାଯାଏ । ସୁନୁ ବୁଢ଼ୀ ଅସୁରୁଣୀ ଗପ ମଧ୍ୟ ଶୁଣିଚି ଆଉ ପିଲାକାଳେ ମଶାଣୀରୁ ଭୂତ ଆସି ତାଳଗଛ ପରି ଗୋଡ଼ ମେଲେଇ ଏ ଗଛରୁ ସେ ଗଛକୁ ବସିବା କଥା ମଧ୍ୟ ଶୁଣିଚି । ସେ ସବୁକୁ ସେ ଆଜିଯାଏ କାଳ୍ପନିକ ବୋଲି ଭାବି ଆସିଥିଲା । କିନ୍ତୁ ଆଜି ଯାହା ସେ ଶୁଣୁଚି ? ତାକୁ କଳ୍ପନାର ରଙ୍ଗ ଦେଇ ଏମିତି ଉଡ଼େଇ ଦେଇ ହେବ କି ? ଏମିତି ଗୁଲିଖଟି ଗପ ବୋଲି କହିହେବ କି ?

ବୁଢ଼ା ବୁଝିଲା । ସୁନୁ ବୋଧେ ତା କଥାଟାକୁ ପୂରାପୂରି ବିଶ୍ୱାସ କରୁନି । ସେ କହିଲା ତୁମେ ମୋ କଥା ବିଶ୍ୱାସ କରୁନ ତ ? ହଉ ଆସନ୍ତା କାଲି ଦେଖିବ । ଭୂତମାନେ କାଲି ଆସିବେ ।

ସୁନୁ ଆସନ୍ତା କାଲି ପାଇଁ ଅପେକ୍ଷା କରିବସିଲା । ଭୂତମାନଙ୍କର ଆସିବା ସମୟ ହେବାର ଯଥେଷ୍ଟ ପୂର୍ବରୁ ସୁନୁ ଗାଁର କେତେଜଣ ଟୋକାଙ୍କୁ ସାଥିରେ ଧରି ବାହାରିଗଲା । ଦୂରରେ ଥିବା ଗୋଟାଏ ମୁଣ୍ଡା ପାହାଡ଼ର ଗୁମ୍ଫାରେ ସେମାନେ ଲୁଚି ବସିଲେ । ସୁନୁ ସାଥିରେ ଆସିଥିବା ଟୋକାମାନେ ତାକୁ କହିଲେ ଭୂତମାନେ ଯଦି କୌଣସି ପ୍ରକାରେ ଜାଣି ପାରନ୍ତି ଯେ ତୁମେ ବାହାରୁ ଆସିଚ ଏବଂ ସେମାନଙ୍କୁ ଦେଖିବାକୁ ଏଠି ଲୁଚି ବସିଚ ସେମାନେ ତୁମକୁ ମାରିଦେବେ ଏବଂ ଆମକୁ ମଧ୍ୟ ମାରିଦେବେ ।

ସୁନୁ ସେମାନଙ୍କୁ ଆଶ୍ୱାସନା ଦେଲା ଏବଂ କହିଲା ତମେମାନେ ମୋଟେ ବ୍ୟସ୍ତ ହୁଅନା । ସେମାନେ ମୋଟେ ଜାଣି ପାରିବେନି । ଆମେ ଏଇଠି ଲୁଚି ବସିବୁଁ । ମୁଁ ଖାଲି ସେମାନଙ୍କୁ ଦେଖିବାକୁ ଚାହେଁ । ଆମେ ତାଙ୍କ ଆଗକୁ ମୋଟେ ବାହାରିବାନି କି ଏ ଗୁମ୍ଫା ଆଗକୁ ମଧ୍ୟ ଆମେ ଯିବାନି ।

ରାତି ସେତେବେଳକୁ କେତେ ହେଲାଣି କେଜାଣି । ଗୁମ୍ଫା ଭିତରେ ସୁନୁ ଓ ତାର ବନ୍ଧୁମାନେ ଅନିଦ୍ରା ହୋଇ ଅପେକ୍ଷା କରି ବସିଛନ୍ତି। କେତେବେଳେ ସେ ଭୂତମାନେ ଆସିବେ କଳାଘୋଡ଼ାରେ ଚଢ଼ି ଏବଂ ବାର ହାତ ଖଣ୍ଡା ଧରି । ସେ ଖାଲି ଦେଖିବାକୁ ଚାହେଁ ।

ହଠାତ୍ ଏକ ବିକଟାଳ ଶବ୍ଦରେ ସମଗ୍ର ବନାଞ୍ଚଳ କମ୍ପି ଉଠିଲା । ଏତେ ଭୀଷଣ

ଏବଂ କର୍କଶ ଶବ୍ଦ ସୁନ୍ନୁ ଆଗରୁ କେବେ ଶୁଣିନଥିଲା । ସମଗ୍ର ପାହାଡ଼ଟା ଭାଙ୍ଗି ପଡୁଚି କି ? ଏକାଥରେ ଅନେକ ଗୁଡ଼ାଏ ବଜ୍ର ଆକାଶରୁ ଖସି ପଡୁଚି କି ? ସୁନ୍ନୁର ସାଙ୍ଗମାନେ ସେତେବେଳକୁ ଭୟରେ ଚଡ଼ସଡ଼ ହୋଇ ଯାଇଥିଲେ । ସେମାନଙ୍କ ଦେହରେ ସେତେବେଳକୁ ଚେତା ଥିଲା କି ନା କହିହେବ ନି ।

ସୁନ୍ନୁ ସାହସର ସହିତ ସଜାଡ଼ି ବସିଲା । ସେ ଜାଣିଥିଲା ଯେ ସେ ଯୋଉ ଗୁମ୍ଫା ଭିତରେ ଲୁଚି ବସିଚି ତା'ରି ଠିକ୍ ସାମ୍ନା ଦେଇ ଯାଇଥିବା ରାସ୍ତାରେ ଭୂତମାନେ ଯିବେ ।

ବିକଟାଳ ଶବ୍ଦ ଆସ୍ତେ ଆସ୍ତେ ବଢ଼ିବାକୁ ଲାଗିଲା । ସେ ଶବ୍ଦ ଯେତିକି ପାଖେଇ ଆସୁଥାଏ ଏବଂ ବଢୁଥାଏ ସେ ଆଡ଼େ ଗାଁରେ କ୍ରନ୍ଦନର କଳରୋଳ ମଧ ସେତିକି ବଢୁଥାଏ । ତାର କାରଣ ସେମାନେ ଜାଣୁଥିଲେ ଯେ ପିଶାଚମାନେ ଆସିଲା ମାତ୍ରେ ସେମାନଙ୍କ ଉପରେ ଆଖିବୁଜା ଅତ୍ୟାଚାର ଆରମ୍ଭ ହୋଇଯିବ ।

ସୁନ୍ନୁ ଦେଖିଲା ସତକୁ ସତ ସେମାନେ ଆସିଗଲେ । ସେ ସେମାନଙ୍କୁ ଦେଖି ନିଜେ ମଧ ଭୟ ପାଇଗଲା । ପ୍ରଳୟ ଖୋଜୁଥିବା ରାକ୍ଷସମାନଙ୍କର ସେ ଭୟଙ୍କର ଚେହେରା ଯେବି ଦେଖିବ ସେ ଭୟ କରିବା ସ୍ୱାଭାବିକ । କିଛି ସମୟ ପାଇଁ ସୁନ୍ନୁ ଡ଼ରି ଯାଇଥିଲେ ମଧ ପର ମୁହୂର୍ତ୍ତରେ ସେ ନିଜକୁ ସଜାଡ଼ି ଦେଲା ଏବଂ ନିଜ ପକେଟରୁ ଅଟୋମେଟିକ ରିଭଲଭରଟି ବାହାର କରି ଟ୍ରିଗାର ଉପରେ ଆଙ୍ଗୁଳି ରଖିଦେଲା।

ତାପରେ ସେ ଆଉ କିଛି ଜାଣିନି । ମାତ୍ର କେଇଟା ମିନିଟ୍ ଭିତରେ ସମଗ୍ର ଅରଣ୍ୟଟା ଅସ୍ୱାଭାବିକ ଓ ଆଶ୍ଚର୍ଯ୍ୟଜନକ ଭାବରେ ନିରବ ନିଥର ହୋଇଗଲା ।

ରାତି ପାହିଲା । ସକାଳର ସୂର୍ଯ୍ୟୋଦୟରେ ଦେଖାଗଲା ଅସଂଖ୍ୟ ଅସୁରର ରକ୍ତାକ୍ତ ଶରୀର ଜଙ୍ଗଲ ଭିତରେ ପଡ଼ିଚି ଅସ୍ତବ୍ୟସ୍ତ ହୋଇ ।

ସୁନ୍ନୁ ଗାଁର ସମସ୍ତଙ୍କୁ ଡାକିଲା ଏବଂ କହିଲା ଆଜିଠୁ ଏ ଗଛ ତମର ଓ ଏ ଫଳ ମଧ ତମର ।

*(ଯୁବ ସମାଜ, ସୁବର୍ଣ୍ଣ ଜୟନ୍ତୀ ବିଶେଷାଙ୍କ, ୧୯୯୭)*



ଖୋଳ

# ଦୁଇଖଣ୍ଡ ରୁଟି

ମିତା ସେଦିନ ଜାଣିଶୁଣି ବିଛଣାରେ ପଡ଼ି ରହିଥାଏ । ସେ ଜାଣେ ପ୍ରଣବ କେତେବେଳୁ ଉଠି ବଗିଚାରେ ନିତିଦିନିଆ କାମ ଆରମ୍ଭ କରି ଦେଲେଣି । ଶ୍ୱଶୁର ଶାଶୁ ଆହୁରି ଆଗରୁ ଉଠନ୍ତି । ସେମାନେ ହୁଏତ ମର୍ଣ୍ଣିଂ ୱାକ୍‌ରେ କେତେବେଳୁ ଚାଲି ଗଲେଣି । ନଣନ୍ଦ ସ୍ୱାତୀ କଲେଜ ଯିବା ଦିନରୁ ବୋଧହୁଏ ବେଶି ଉପର ମୁହାଁ ହେଇଯାଇଚି । କଲେଜ ନାଁରେ ଯାଇ ଘଣ୍ଟା ଘଣ୍ଟା ଚାଟ୍ ଦୋକାନ କିମ୍ବା ପେ-ଫୋନ୍‌ରେ ସାଙ୍ଗ ସାଥୀ ମେଳରେ ସମୟ କଟାଇବା କଥା ପ୍ରଣବ କିମ୍ବା ବାପା ବୋଉ ଜାଣିଥିଲେ ମଧ୍ୟ ତାକୁ କେହି ଆଙ୍ଗିଯାଏ ପାଟି ଫିଟାନ୍ତିନି ।

ମିତା କର ଲେଉଟାଇଲା । ଘର କାମ ବେଙ୍ଗାଏ ପଡ଼ି ରହିଚି । ସକାଳୁ ଉଠିବା ବେଳକୁ ହୁଏତ ପ୍ରଣବ ବଗିଚା କାମ ସାରି ଆସି ପହଞ୍ଚିବେ । ଏଆଡ଼େ ଶାଶୁ ଶ୍ୱଶୁର ବି ମର୍ଣ୍ଣିଂ ୱାକରୁ ଫେରି ଆସିବେ । ପ୍ରଥମ ପର୍ବ ଆରମ୍ଭ ହେବ ଚା'ରୁ । ପ୍ରତ୍ୟେକଙ୍କର ଦୁଇ ଦୁଇଥର ଚା' ଖିଆ ହେବ । ଶ୍ୱଶୁରଙ୍କ ଚା'ରେ ଚିନି ପଡ଼ିବନି । ଶାଶୁଙ୍କର ଚା'ରେ ଚିନି କିମ୍ବା ଦୁଧ ପଡ଼ିବନି । ଶ୍ୱାତୀର ସ୍ପେଶାଲ ଚା' । ଚିନି, ଦୁଧ ଓ ଲିକର ମଧ୍ୟ ବେଶି । ପ୍ରଣବ ଅବଶ୍ୟ ସହଯୋଗ କରନ୍ତି । ଯେମିତି ଚା' ଦେଲେ ଚଳିବ ।

କିଏ ଏତେ ଫରମାସ କରିବ ? ଏତୁଟିଏ ଝିଅ । ଅଥଚ ଘରକାମ ମୋଟେ କରିବନି । ଶାଶୁ ଘରକୁ ଗଲେ କ'ଣ କରିବ କେଜାଣି ? ସବୁ ବେଳେ ନିଜ ରୁମ୍‌ରେ କବାଟ କିଳି ବସିଥିବ । କ'ଣ ନା ମୁଁ ପ୍ରିପାରେସନ୍ କରୁଚି । ମୋତେ କେହି ଡିଷ୍ଟର୍ବ କରନା । ଅଜବ ଝିଅ । ଅଜବ ଘର ବି ।

ଆଃ, ଆମେ କ'ଣ ଝିଅ ହେଇ ନଥିଲୁ ନା ପାଠ ପଢୁ ନ ଥିଲୁ । ହାତ୍ । ମିତା ପୁଣି ଥରେ ନାକ ଛିଞ୍ଚାଡ଼ି ମୁହଁଟାକୁ ଅନ୍ୟ ପାଖକୁ ନେଇ ବିଛଣାରେ ଓଲଟ ପାଲଟ ହେଲା ।

ଠିକା ଚାକରାଣୀଟା ଦୁଇଦିନ ହେଲା ଆସୁନି । କିଏ ବା ଆସିବ ଏ ଘରକୁ ?

ଏତେ ବଡ଼ ଘର । ଝାଡୁ ମାରୁ ମାରୁ ଅଣ୍ଟା ବଙ୍କେଇ ଯାଏ । ଆଉ ସିଧା ହେବ ଯେ ସେ ଉଠିବ । ସେଥିରେ ପୁଣି ପୋଛା ପୋଛି ଅଛି । ବାସନ ଧୁଆ । ଲୁଗା କଚା । ଦୁଇଟା ଲୋକ ଯଦି ନିର୍ଘାତ ଘଣ୍ଟାଟିଏ ପରିଶ୍ରମ କରିବେ, ତେବେ କେଜାଣି ସରିପାରେ । ଆଉ ଏ ତ ଗୋଟିଏ ସ୍ତ୍ରୀ ଲୋକ । ସେ ବା କେତେ କାମ କରିପାରିବ ? ତହିଁକି ପୁଣି ରୋଗିଣୀଟାଏ । ତା' ଉପରେ ପୁଣି ନଅ ମାସ ହେଇଚି । କାଠି ପରି ଦେହ । ଫୁଙ୍କି ଦେଲେ ଉଡ଼ିଯିବ । ତା' ବଳ ପାଇବ କୋଉଠି ଯେ ସେ ଏତେ କାମ କରିବ ! ଯେତେ ଟଙ୍କା ଦେଲେ କ'ଣ ହେବ ।

ଗୋଟାଏ ହତାଶିଆ ଦୀର୍ଘଶ୍ୱାସ ମିତାର ଛାତି ଫଟେଇ ବାହାରି ଆସିଲା । ସତେ ଯେମିତି ବିରାଟ ଘୂର୍ଣ୍ଣି ବାତ୍ୟାର ପବନଟା ରୁଦ୍ଧି ହେଇ ଅଟକି ଯାଇଥିଲା, ବାହାରିବାକୁ ବାଟ ନ ପାଇ । ମିତା କାନ୍ଦି ପକେଇବ କି ?

ସେ ବିତ ଚାକିରି କରୁଚି । ତାକୁ ବିତ କଲେଜ ଯିବାକୁ ପଡୁଚି ଠିକ ଦଶଟାରେ । ଆଗକୁ ପରୀକ୍ଷା ଅଛି । କାମର ଭିଡ଼ ବଢ଼ିବ । ମଝିରେ ମଝିରେ ସେ ଯେ ଘରକୁ ପଳେଇ ଆସୁଥିଲା ଲଞ୍ଚ୍ ଆୱାରରେ, ସେତକ ଆଉ ହେଇ ପାରିବନି । ସୌଭାଗ୍ୟବଶତଃ କଲେଜଟା ଘର ପାଖରେ । ମିତା ଚାଲି ଚାଲି ଯାଏ, ଚାଲି ଚାଲି ଫେରେ ।

ମାଆ !

ମିତା ଚମକି ପଡ଼ିଲା । ଆଃ, ଚାକରାଣୀଟା ତା' ହେଲେ ଆଜି ଆସିଚି । ସେ ଧଡ଼ପଡ଼ 'ହେଇ ଉଠି ପଡ଼ିଲା । ଖୁବ୍ ଗହଳି ଓ ଲମ୍ବା ବାଳ ଗୋଛାକ ଯେଉଁଟା ଏ ଯାଏ ଅସ୍ତବ୍ୟସ୍ତ ହେଇ ବିଛଣା ସାରା ବିଛାଡ଼ି ହେଇ ପଡ଼ିଥିଲା, ଠିକ୍ ଶୀତ ସକାଳରେ ମନ୍ଦିର ବେଢ଼ାରେ କନିଅର ଗଛ ତଳେ ପଡ଼ିଥିବା ମଉଳା ଫୁଲ ପରି, ତାକୁ ମିତା ଦୁଇ ହାତରେ ଗୋଟାଇ ନେଇ ବାନ୍ଧୁ ବାନ୍ଧୁ ଘରୁ ବାହାରି ଆସିଲା ଏବଂ ଅନେକ ଦିନର ପୁରୁଣା ବନ୍ଧୁକୁ ଦେଖିଲା ପରି ଅତ୍ୟନ୍ତ ଆତ୍ମୀୟତାର ହସଟିଏ ହସି କହିଲା, ତୋ ଦେହ ପା' ଖରାପ ଥିଲା କି ?

ମିତାର ହସଟା ଚାକରାଣୀ ମୁହଁକୁ ପହଁରି ଗଲା ନାହିଁ । ସେଇ ମିତାର ଓଠ ତଳେ ହିଁ ତା'ର ଅକାଳ ମୃତ୍ୟୁ ଘଟିଲା ।

ଚାକରାଣୀ କହିଲା- ଆଜି ବି କାମ କରି ପାରିବି ନାହିଁ । ଖାଲି କହି ଦେବାକୁ ଆସିଥିଲି । ଦିହ ଟିକେ ଭଲ ନ ହେଲା ଯାଏ....।

ଆକାଶର ସବୁଯାକ ମେଘ ଯେମିତି ମିତାର ମଥା ଉପରେ ଭାଙ୍ଗି କଚାଡ଼ି ହେଇ ପଡ଼ିଲେ । ଯୋଉ ସ୍ନେହ ଓ ସରାଗ ନେଇ ମିତା ଚାକରାଣୀ ପାଖକୁ ଦୌଡ଼ି ଆସିଥିଲା,

ସେ ସବୁ ନିମିଷକ ଭିତରେ ଫାଙ୍କା ଆକାଶ ଦେହରେ ମିଶି ଅଦୃଶ୍ୟ ହୋଇଗଲା । ବଡ଼ ହତାଶିଆ ସ୍ୱରରେ ସେ ପଚାରିଲା- ଗୋଟେ ଦି'ଟା କାମ ବି କରି ପାରିବୁନି ?

ମୋତେ ବଳ ପାଉନି ମାଆ । ନ ହେଲେ କ'ଣ ମୁଁ ନାଇଁ କରନ୍ତି ? କୁଆଡ଼େ ଯାଉଚି ଏ ପୋଡ଼ା ବଳଟା କେଜାଣି । କାଲି ତ ବେଳେ ପେଜ ତୋରାଣି ପିଇଥିଲି । ନୁଖୁରା ହସଟିଏ ସେ ହସିବାକୁ ଚେଷ୍ଟା କଲା ।

ମିତା ପାଟିରୁ ଆଉ କଥା ବାହାରିଲାନି । ଏଣେ ନ' ମାସର ପିଲା ପେଟ ଭିତରେ ମା'କୁ ଶୋଷୁ ଥିଲା ବେଳେ, ମା' ଭାତ ନ ଥିବା ପେଜ ତୋରାଣି ପିଇ ବଞ୍ଚିବ ?

କୋଚିଲା ତଳେ ଲଥ୍ କରି ବସି ପଡ଼ିଲା ଏବଂ କହିଲା- କାଲି ପୁଅ ଯାଇଥିଲା ସ୍କୁଲକୁ । ସେଠି ତାକୁ ଯୋଉ ଭାତ ମୁଠାକ ମିଳିଥିଲା, ତାକୁ ସେ ବସ୍ତାନୀରେ ପୂରେଇ ଘରକୁ ନେଇ ଆସିଥିଲା । ମୁଁ ତାକୁ ବାପ-ପୁଅଙ୍କୁ ଦେଇ ଦେଲି । କହିଦେଲି, ମୋ ପାଇଁ ରଖିଚି । ତମେ ଦିହେଁ ଖାଇସାର, ପରେ ମୁଁ ଖାଇବି । ପୁଅ କିଏ, ସ୍ୱାମୀ କିଏ ? କାହା ପେଟରୁ କାଟି ଥାଆନ୍ତି ଯେ ?

ମିତା ସ୍ତମ୍ଭୀଭୂତ ହୋଇଗଲା । ଭାବିଲା, ସେ ଜଡ଼ ପାଲଟି ଯାଉଚି ବୋଧେ । କୋଚିଲା ନାରୀଟିଏ । ଅତି ସାଧାରଣ ନାରୀଟିଏ । ନାହିଁ ନାହିଁର ସଂସାର ଭିତରେ ସେ ଏକଦମ୍ ରସାତଳରେ ଆତଯାତ ହେଉଥିବା ନାରୀଟିଏ । କିନ୍ତୁ ତା' ଭିତରେ ଏ ମହନୀୟତା କୁଆଡୁ ଆସିଲା ? ସବୁକୁ ଉତ୍ସର୍ଗ କରୁଥିବାର ଅପୂର୍ବ ସ୍ୱର୍ଗ ସୁଖ କେବଳ ନାରୀ ପାଖରେ କୁଢ଼େଇ ହୋଇ ପଡ଼ିଚି ?

ଘର ଭିତରକୁ ସମସ୍ତେ ପଶି ଆସିଲେ । ପ୍ରଣବ, ବାପା, ବୋଉ । ଶ୍ୱାତୀର ଦରଜା ମଧ୍ୟ ଫିଟି ଗଲା । ସମସ୍ତେ କୋଚିଲାକୁ ଦେଖି ଖୁସି ହୋଇଗଲେ । ବୋଉ କହିଲେ- ହେଇତ ଆସିଲାଣି । ଅତି ଆପଣାର ଲୋକ ପରି ସେ କୋଚିଲାକୁ ପଚାରିଲେ, କି ଲୋ, ଦି' ଦିନ ହେଲା କ'ଣ ତୋର ଦେଖା ନାହିଁ ? ତୋତେ ନ ଦେଖି ମୁଁ ମୋ ଲୁଗା ଦି'ଟା ସେମିତି ବାଥ୍ ରୁମ୍‌ରେ ରଖି ଦେଇଛି ।

'ସେ ଆଚି ବି କାମ କରିବନି ।' ମିତା କହିଲା ସେମିତି କାନ୍ଥକୁ ଆଉଜି ଠିଆ ହୋଇ ।

କରିବନି ? କାହିଁକି ? ତେବେ ଆସିଚି କାହିଁକି ? ଶ୍ୱାତୀ କହିଲା ଡାଇନିଂ ଟେବୁଲ ପାଖରେ ବସି ଗୋଡ଼ ଦି'ଟାକୁ ଝୁଲେଇ ଝୁଲେଇ । ସେ ତା' ପାଇଁ ଅପେକ୍ଷା କରିଚି । ବାରମ୍ବାର ହାଇ ମାରୁଚି ।

ମିତା କହିଲା, ସେ କହିବା ପାଇଁ ଆସିଚି ଯେ ସେ ଆଉ କାମ କରି ପାରିବନି ।

ପାରିବନି ? ବାପାଙ୍କ ଆଖି ବିସ୍ମୟ ବିସ୍ତାରିତ ହେଇଗଲା । କିଛି ସମୟ ସେ ବାକ୍‌ଶୂନ୍ୟ ହେଇଗଲେ ଯେମିତି । ତା'ପରେ ସେ କହିଲେ, ମୁଁ ଭାବୁଥିଲି ଆଉ କିଛି ଦିନ ଚଳି ଯାଇଥିଲେ, ଆମେ ଆଉ ଜଣେ କାହାକୁ ଦେଖି ଥାଆନ୍ତୁ । ତା ପରେ ତୁ ଛାଡ଼ି ଥାଆନ୍ତୁ ।

ଘାଘଡ଼ା ଗଳାରେ କୋଚିଲା କହିଲା- 'ମୋତେ କଅଣ ତେବେ ଆପଣ ଛାଡ଼ି ଦେବେ ? ମୁଁ ଆଉ କୁଆଡ଼େ ଯିବି ବାବୁ ? ସେ କାନ୍ଦି ପକେଇଲା ।'

ପ୍ରଣବ ଏ ଯାଏ ହତଭମ୍ବ ହୋଇ ସବୁ କଥା ଶୁଣୁଥିଲେ । ସେ ହୁଏତ କିଛି କହି ଥାଆନ୍ତେ । କିନ୍ତୁ କିଛି କହିବା ପୂର୍ବରୁ କୋଚିଲା ତା' ଛିଣ୍ଡା ଲୁଗା କାନିରେ ଲୁହ ପୋଛି ଏବଂ ଉଠି ଆସୁଥିବା କୋହ ଚାପି କହିଲା- 'ନା ନା ଆଉ କାହାକୁ ଆଣନା । ମୁଁ ଯେମିତି ହେଲେ ଚଳେଇ ନେବି । ସେ ଉଠିଲା ଆଣ୍ଠୁରେ ହାତ ଭରା ଦେଇ । କହିଲା, କେତେ ବାସନ ଅଛି ?'

ମିତା ଆଉ ଧୈର୍ଯ୍ୟ ଧରି ରହି ପାରିଲା ନାହିଁ । କହିଲା- ତୋ' ମୁଣ୍ଡ ଖରାପ ହେଇଚି ନା କଅଣ ? ତୁ ତ ନଇଁ ପାରିବୁନି, କାମ କେମିତି କରିବୁ ? ତା'ପରେ ସେ ସ୍ୱର ବଦଳେଇ କହିଲା 'ତୁ ଦାନ୍ତ ଘସିଚୁ ?'

କୋଚିଲା ହସିଲା । ଇଚ୍ଛା ନଥାଇ ଜଣେ ଯେମିତି ହସେ । କହିଲା - କାହିଁକି ଏତେ ସକାଳୁ ଦାନ୍ତ ଘସି ଥାଆନ୍ତି ଯେ ?'

'ହଉ, ଯା ପଛ ପଟକୁ, ସେଠି ପାଉଁଶ ଅଛି, ଦାନ୍ତ ଘସି ପକା । ରୁଟି ଦି'ଖଣ୍ଡ ଅଛି କାଲିର, ଆଗ ଖାଇଦେ । ତା'ପରେ ଅନ୍ୟ କଥା ।'

କୋଚିଲା ମନା କଲା । 'ନାଇଁ ମା, ମୋତେ ବରଂ ସେ ଦି'ଖଣ୍ଡ ଦେଇ ଦିଅ । ମୁଁ ଘରେ ଖାଇବି ।

ଘରେ ଖାଇବୁ ? ମିତା ହୁଏତ ତାକୁ ପଚାରିବାକୁ ଯାଉଥିଲା, ତୁ ତୋ ପୁଅକୁ କି ସ୍ୱାମୀକୁ ଦେଇ ଦେବୁ ନାହିଁ ତ ? କିନ୍ତୁ ସେ କଥା ସେ ପଚାରି ପାରିଲା ନାହିଁ । କେମିତି ପଚାରନ୍ତା ? ସେ ବି ତ ଗୋଟାଏ ନାରୀ । ପୁଅକୁ କି ସ୍ୱାମୀକୁ କାହାକୁ ପଛ କରି ପାରିବ ? କେମିତି କରିବ ? ତା' ପାଟିକୁ ଯିବ ? ଛାତି ଫାଟି ଯିବ ନି ?

କୋଚିଲା ତା' କାନିରେ ରୁଟି ଦି'ଟାକୁ ସାତ ପରସ୍ତ କରି ବାନ୍ଧୁ ବାନ୍ଧୁ କହିଲା 'ମୁଁଏବେ ଯାଉଚି । କିନ୍ତୁ ଆସିବି । ଯେମିତି ହେଲେ ଆସିବି । ବାରଟା ପରେ ହେଲେ ବି ଆସିବି ।

କିନ୍ତୁ ବାରଟା ପରେ ମଧ୍ୟ ସେ ଦିନ କୋଚିଲା ଆସି ନଥିଲା । ମିତା କଲେଜରୁ

ଫେରି ଖିଆ ପିଆ କଲା ଏବଂ ପେପରଟା ଧରି ଖଟ ଉପରେ ଗଡ଼ି ପଡ଼ିଲା । ଗଡ଼ି ସିନା ପଡ଼ିଲା । କିନ୍ତୁ ତା' ମନ ଥିଲା କୋଚିଲା ପାଖରେ । ଭାତ ଖିଆ ପରେ ଯେତକ ବାସନ ପଡ଼ିଚି ସେତକ ସଫା କରିବା ତାର କ୍ଷମତା ବାହାରେ । ରୋଷେଇ ଘରକୁ ପଶି ହେଉ ନାହିଁ । ଏମିତି ଅରମା ଅଳିଆ ହେଇଚି ଯେ ତାକୁ ଦେଖିଲେ ମିତାକୁ ଡର ମାଡୁଚି । ବୋଉତ ମୋଟେ କିଛି କରି ପାରନ୍ତିନି । ବାଥ୍‌ରୁମ୍‌ରେ ଲୁଗା ପଡ଼ିଚି ସମସ୍ତଙ୍କର ।

ଘରର ସମସ୍ତେ କୋଚିଲା ହାତକୁ ଅନେଇ ବସିଚନ୍ତି । କୋଚିଲା ନଥିଲେ ସମସ୍ତଙ୍କର ହାତଗୋଡ଼ ଅଚଳ ହେଇଯାଏ । ଅଟକି ଯାଏ ସବୁ କାମ । ଅତିଥି ଅଭ୍ୟାଗତ ଆସିଲେ ଚା' କପେ କି ପାଣି ଗ୍ଲାସେ ମଧ ପାଇ ପାରନ୍ତି ନି । କୋଚିଲା ନ ଆସିଲେ ସକାଳର ଚା' କପ ସେମିତି ରୋଷେଇ ଘରେ ମୁହଁ ମାଡ଼ି ପଡ଼ିଥାଏ ।

ଘର ଭିତରେ ବି ପାଦ ଦେଇ ହୁଏନା । ଆଣ୍ଠୁଏ ଧୂଳି ଖାଲି ବଢ଼୍ ବଢ଼୍ ହେଉଥାଏ । କିଏ ଝାଡୁ ମାରିବ ? ବେଳେ ବେଳେ ମିତା କେବଳ ସେଇ ଡ୍ରଇଂ ରୁମ୍‌କୁ ଟିକିଏ ସଜାଡ଼ି ଦିଏ । ସଜାଡ଼ି ଦିଏ ସିନା କିନ୍ତୁ ତା' ପର ମୁହୂର୍ତ୍ତରେ ପ୍ରଣବ ସାଙ୍ଗରେ ଝଗଡ଼ା କରି ବସେ । 'ଏତେ କାମକୁ ମୁଁ ପାରିବି ନି । ତୁମେ ଅନ୍ୟ ବ୍ୟବସ୍ଥା କରିବ ଯଦି କର । ନଚେତ୍ ସବୁ ସେମିତି ଥିବ ।'

ମିତା ପେପରଟାକୁ ଫୋପାଡ଼ି ଦେଇ ଖଟ ଉପରେ ବସି ପଡ଼ିଲା । ଘଡ଼ି ଦେଖିଲା, ତିନିଟା ବାଜିଲାଣି । ଆଜି ଆଉ ଆସିବାର ସମ୍ଭାବନା ନାହିଁ । ଘରର କାମ ଦେଖି ମିତାକୁ ୧୦୩ ଜ୍ୱର ଆସି ଯାଉଥାଏ । ସମସ୍ତ ଘରଟା ଭୂତ ଘର ପରି ଖାଁ ଖାଁ ଗୋଡ଼ାଉଚି । ଅନେକ କଷ୍ଟରେ ସେ ଚାଲୁ ନ ଥିବା ଗୋଡ଼ ଦି'ଟାକୁ ତଳକୁ ଆଣି ରୁମ୍ ବାହାରକୁ ଆସିଲା ଏବଂ ଡ୍ରଇଁ ରୁମ୍ ଓ ଡାଇନିଂ ରୁମ୍ ମଝିରେ ଛିଡ଼ା ହେଇ ଡାଇନିଂ ଟେବୁଲ୍‌କୁ ଦେଖି ସେ କାନ୍ଦି ପକେଇଲା ।

ଅଇଁଠା ବାସନ ସବୁ ସେମିତି ପଡ଼ିଚି । ଭାତ ତରକାରୀ ବିଛାଡ଼ି ହେଇ ଯାଇଚି । ମାଛି ଭଣ ଭଣ, ଗୋଟାଏ ଶ୍ମଶାନର ଦୃଶ୍ୟ ସୃଷ୍ଟି ହେଇଚି ।

ଡୋର ବେଲଟା ଖୁବ୍ ଜୋର୍‌ରେ ବାଜି ଉଠିଲା । ମିତା ଚମକି ପଡ଼ିଲା । ଏମିତି ଅସ୍ୱାଭାବିକ ଭାବରେ ବେଲ ସ୍ୱିଚ୍ କିଏ ଦେଲା ? କୋଚିଲା ନା ଆଉ କିଏ ? ହେ ଭଗବାନ ! କୋଚିଲା ହେଇ ଥାଆନ୍ତା କି ? ସେ ହିଁ ହେଇଥିବ । ଆଉ ଏତେ ବେଳେ କିଏ ଆସିବ ? କହିଥିଲା ତ ଟିକିଏ ଡେରି ହେଲେ ମଧ ଅପେକ୍ଷା କରିଥିବ ।

ମିତା ବେଶ ହାଲକା ହେଇଗଲା । ତା' ମୁଣ୍ଡରୁ ବିରାଟ ବୋଝଟା ଯେମିତି ଏଇ ମାତ୍ର କିଏ ଓହ୍ଲେଇ ଦେଲା । ସେ ଝପଟି ଗଲା ଦାଣ୍ଡ ଦରଜା ଆଡ଼କୁ ଏବଂ

ଅସ୍ତବ୍ୟସ୍ତ ହେଇ କବାଟ ଖୋଲି ଦେଇ ଯାହା ଦେଖିଲା, ସେଥିରେ ସେ ଏକା ଥରେ ସ୍ତବ୍ଧ ହେଇଗଲା । ଗୋଟିଏ ଅଜଣା ଯନ୍ତଣାରେ ସେ ମନେ ମନେ ଚିତ୍କାର କରି ଉଠିଲା ।

ତା' ପାଟିରୁ କିଛି ସମୟ ପାଇଁ କଥା ବାହାରିଲାନି । ସେମାନଙ୍କୁ ଭଲ ଭାବରେ ଦେଖି ନେଲା ପରେ ମିତା ପଚାରିଲା । 'କିଏ ତମେମାନେ ?'

ମିତା ଆଗରେ ଦୁଇଟା ଝିଅ ପିଲା । ଗୋଟିକର ବୟସ ଛଅ କି ସାତ ଓ ଅନ୍ୟଟି ପାଞ୍ଚ କି ଛଅ ହେବ । ମଇଳା କୋଟଟ ପେଣ୍ଟ ଓ ଫ୍ରକ । କାନ୍ଧରେ ଗୋଟାଏ ଗୋଟାଏ ବେଗ୍ । ମୁଣ୍ଡ ବାଳ ଫୁରୁ ଫୁରୁ । ଭିକାରୀ ପିଲା ହେବେ କି କଅଣ । ସେମାନେ ଏଇ କିଛି ସମୟ ପୂର୍ବରୁ ବୋଧେ କିଛି ଖାଉଥିଲେ । କାରଣ ଏବେ ବି ସେମାନଙ୍କ ପାଟି ଚାଲିବା ବଂଦ ହେଇ ନାହିଁ ।'

ଅପେକ୍ଷା କୃତ ବଡ଼ ଝିଅଟି କହିଲା- 'ତୁମ ଘରକୁ ଯିଏ କାମ କରିବାକୁ ଆସେ ସେ ଆଜି ଆସିନି ନା ?'

ମିତା ମୁଣ୍ଡ ହଲେଇ ମନା କଲା । 'କିନ୍ତୁ କାହିଁକି ?'

ତେବେ ତୁମ ଘରେ କିଏ କାମ କରୁଚି ? ଝିଅର ଅନ୍ୟ ଏକ ପ୍ରଶ୍ନ ।

'କିଏ ଆଉ କରିବ ? କେହି ନୁହେଁ ।' ମିତା କହିଲା ।

'ଯଦି କହିବ, ଆମେ ଦୁହେଁ ସେ କାମ କରିଦେବୁ ।' ଝିଅଟି ନିର୍ବିକାର ଭାବରେ କହି ଚାଲିଲା ।

ମିତା ଆଶ୍ଚର୍ଯ୍ୟ ହେଇଗଲା । ଏମିତି ଗୋଟାଏ କଥା ସେ ସେମାନଙ୍କ ମୁହଁରୁ ଶୁଣିବ ବୋଲି କଳ୍ପନା କରି ନଥିଲା । ମିତା ଯେ ସେମାନଙ୍କ କଥାରେ କି ଉତ୍ତର ଦେବ ସେ କଥା ମଧ ସେ ଚିନ୍ତା କରି ପାରୁ ନଥିଲା ।

'କି କାମ ଅଛି ତୁମର ଏବେ କରିବାକୁ ?' ଝିଅଟି ପୁଣି ପଚାରିଲା ।

ମିତାର କୌତୁହଳ ବଢ଼ି ବଢ଼ି ଚାଲିଥାଏ, ନିଜର ବାକି ପଡ଼ିଥିବା କାମ କଥା ଚିନ୍ତା କଲା ବେଳକୁ ତା'ର ଅସହାୟ ବୋଧ ତାକୁ ଘାରି ପକାଉଥାଏ । ଏଥର ସେ ପାଟି ଖୋଲିଲା । କହିଲା- 'କାମତ ଅନେକ ଅଛି, କିନ୍ତୁ ତମେମାନେ ସେ କାମ କରି ପାରିବ ?

'କାହିଁକି ପାରିବୁ ନି ? ଏଇତ ଆମେ ଆଉ ଗୋଟାଏ ଘରେ କାମ ସାରି ଆସୁଚୁ । ମୁଁ ବାସନ ଧୋଇ ଦେବି । ଆଉ ଇଏ, ମୋ ସାନ ଭଉଣୀ, ଝାଡୁ ଦେଇ ପାରିବ, କାମ ମନ ନ ମାନିଲେ ତୁମେ ପଇସା ଦେବନି ।'

ଖୋଳ

ମିତା ଆଶ୍ଚର୍ଯ୍ୟ ହେଇଗଲା । ଏଡ଼େ ବକଟେ ପିଲାଙ୍କର ଅସମ୍ଭବ ସାହସ ! କି ଦମ୍ଭ ସେମାନଙ୍କର ? ନିଜ ପାରିବା-ପଣ ଉପରେ କି ଅଖଣ୍ଡ ବିଶ୍ୱାସ ?

'ତମର ସେ ବେଗ୍‌ରେ କଅଣ ଅଛି ?'

ବହି, ଖାତା ଓ ସିଲଟ୍ । ଝିଅଟିର ଉତ୍ତର ଆଗପରି ନିର୍ବିକାର । ସେମିତି ସେ ପୂର୍ବପରି ସହଜ, ସରଳ ଓ ଭୟଶୂନ୍ୟ । ଅଥଚ ଏମାନେ ଘରେ ଘରେ କାମ କରି ବୁଲୁଚନ୍ତି ?

ସେ ପଚାରିଲା- 'ତେବେ ତମେମାନେ ସ୍କୁଲ ଯାଇନ ?'

'ଯାଇଥିଲୁଁ । ଝିଅଟିର ସ୍ୱର ହଠାତ୍ କେମିତି ନରମି ଆସିଲା । କଥାର ମୋଡ଼ ବଦଳେଇ ସେ ପୁଣି କହିଲା, କୁହନା, କାମ କରିବା ?'

ମିତା ସେମାନଙ୍କୁ ଆଉ କିଛି ନ ପଚାରି ନିଜର ଦୟନୀୟ ଅବସ୍ଥା କଥା ଚିନ୍ତା କଲା । ନିରୁପାୟ ହେଇ ସେ କହିଲା, କାମ କଲେ କେତେ ପଇସା ନେବ ? ସେ ସେମାନଙ୍କୁ ଭିତରକୁ ନେଇ କି କି କାମ କରିବାକୁ ହେବ ସବୁଦେଖେଇ ଦେଲା ।

ଝିଅ ଦୁହେଁ ଚାରିଆଡ଼କୁ ଅନେଇ ସବୁ ଦେଖିଲେ ଏବଂ ବଡ଼ଟି କହିଲା- 'କାମ ତ ଅନେକ, ତେବେ ତୁମେ ଆମକୁ ଦୁଇ ଟଙ୍କା ଦେବ ।'

'ଦୁଇ ଟଙ୍କା ?' ମିତାର ଆଖି ବିସ୍ମୟ ବିସ୍ଫାରିତ ହେଇଗଲା । ସେ ଅନ୍ତତଃ ଝିଅଟି ଆଠ ଦଶ ଟଙ୍କା ଦାବୀ କରିବ ବୋଲି ଆଶା କରୁଥିଲା । କିମ୍ବା ଏତେ ବେଶି କାମ ଦେଖି ଡ଼ରି ଯିବ ବୋଲି ଭାବୁଥିଲା । ସେ ପୁଣି ଥରେ କହିଲା- 'ଦୁଇ ଟଙ୍କା ?'

ଝିଅଟି ମିତା ଦୁଇଥର ଦୁଇଟଙ୍କା କହିବା ଶୁଣି ଭାବିଲା, ବୋଧେ ଅନେକ ବେଶି ହେଇଗଲା । ତଳକୁ ମୁହଁ ପୋତି ସେ କହିଲା- 'ତେବେ ଯାହା ଦେବ । ତମ ଖୁସି ।'

ମିତାର ହୃଦୟ ଦୟାର୍ଦ୍ର ହେଇଉଠିଲା । ତା' ଭିତରେ କେମିତି କେଜାଣି ଅଜଣା ଆବେଗଟିଏ ତାକୁ ମାଡ଼ି ବସିଲା । ସେ ସଙ୍ଗେ ସଙ୍ଗେ କହିଲା- 'ଠିକ୍ ଅଛି, କାମ କର । ମୁଁ ତମକୁ ଦୁଇ ଟଙ୍କା ଦେବି ।'

ଝିଅ ଦୁହେଁ ଖୁସି ହେଇ ଗଲେ । ଚଟାପଟ ବହି ବସ୍ତାନୀ ତଳେ ଏକ ପ୍ରକାର ଫୋପାଡ଼ି ଦେଇ ସେମାନେ କାମରେ ଲାଗି ଗଲେ ।

ମିତା ଦେଖିଲା କେତେ ଚଞ୍ଚଳ ଏମାନେ, ମାତ୍ର ଘଣ୍ଟାକ ଭିତରେ ଘରର ସବୁ କାମ ସାରି ଦେଲେ । କାମ ମଧ ବାଛିବାର ନାହିଁ । ଯେ କୌଣସି ପୋଖତ ଚାକରଟିଏ ମଧ ହାର ମାନିବ । ଛୋଟ ଝିଅଟି ଘର ଏମିତି ଓଳେଇଚି ଯେ ଯିଏ ଦେଖିବ ଖୁସି ହୋଇଯିବ ।

ସେମାନେ କାମ ସାରି ବହି ବସ୍ତାନୀ ପୁଣି କାନ୍ଧରେ ରଖି ଠିଆ ହେଲେ ଏବଂ ଅପେକ୍ଷା କଲେ ମିତାକୁ ।

ମିତା ମନି ପର୍ସ ଖୋଲିଲା । କି ଆଶ୍ଚର୍ଯ୍ୟ ମାତ୍ର ଦେଢ଼ ଟଙ୍କା ଅଛି । ମିତା ଅନ୍ୟ ଆଡ଼େ ମଧ ଖୋଜିଲା । ସବୁ ଜାଗା ଅଣ୍ଡାଳିଲା । ଦୁର୍ଭାଗ୍ୟ, ସେ ଆଉ ପଚାଶ ପଇସା ମୋଟେ ପାଇଲାନି । ମିତା ବ୍ୟସ୍ତ ହେଇ ଚାରିଆଡ଼େ ଖୋଜୁଥିବାର ଦେଖି ବଡ଼ ଝିଅଟି କହିଲା- ' ନମିଳିଲା ଯଦି ଥାଉ । ତା' ବଦଳରେ ଦି'ଖଣ୍ଡ ରୁଟି ଯଦି ଅଛି ଦେଇ ଦିଅ ।'

ମିତା ଦୌଡ଼ି ଗଲା ରୋଷେଇ ଘରକୁ । ସେଠୁ ସକାଳୁ ଜଳଖିଆରୁ ବଳିଥିବା ଦୁଇ ଖଣ୍ଡ ରୁଟି ଆଣି ସେମାନଙ୍କୁ ଦେଲା । ମହା ଆନନ୍ଦରେ ଝିଅଟି ରୁଟି ଦି' ଖଣ୍ଡକୁ ବେଗ୍‌ରେ ପୂରେଇଲା ଏବଂ ଦୁହେଁ କାନ୍ଧ ଧରା ଧରି ହୋଇ ଘରୁ ବାହାରି ଗଲେ ।

ମିତା ସେମାନଙ୍କ ଯିବା ବାଟକୁ ଅନେଇ ରହିଲା ସେମାନେ ଆଗ ମୋଡ଼ରେ ଲୁଚି ଯିବା ପର୍ଯ୍ୟନ୍ତ ।

*(ନବପତ୍ର, ମାର୍ଚ୍ଚ-ଏପ୍ରିଲ୍, ୧୯୯୭)*



# ସବୁ ସରିଗଲା ପରେ

**ସ**ନା ମା ନୁଆଁଣିଆ ଚାଳରୁ ମଥାଟାକୁ ରକ୍ଷା କରିବା ପାଇଁ ଟିକିଏ ନଇଁ ପଡ଼ିଲା ଏବଂ ତଳକୁ ନ ଉହ୍ଲେଇ ସେଇଠୁ ପାଟି କରି କହିଲା, ତୁ ଯାଆ । ମୁଁ ସେଠିକୁ ଯାଇ ପାରିବିନି । ଏତେ ବାଟ ଚାଲିବାକୁ ମୋର ଆଉ ବଳ ନାହିଁ । କେତେଥରତ ଯାଇଚି । କେବେ ମନା କରିଥିଲି ? ଆଜି ଆଉ ପାରୁନି । ବସିବା ଜାଗାରୁ ଉଠିବାକୁ ମନ କହୁନି । ଆଉ ସମସ୍ତେ ଯିବେ । ମୁଁ ନ ଗଲେ ଭାତ ହାଣ୍ଡି ଗଡ଼ି ପଡ଼ିବ କି ?

କାବୁଲି କହିଲା ସେ କଥା ନୁହେଁ ମ ଆଈ । ଇୟେ ଯୁ କାମ ନା, ସେଥିରେ ସମସ୍ତେ ଯିବା କଥା । ତୁମେ ଦେଖିବନି । ଗାଁରେ କଅଣ ଆଉ କିଏ ଅଛି କି ? ସମସ୍ତେ ସେଠି ରୁଣ୍ଡ ହେଲେଣି ନା ! ତୁମର ସେ ଫୁଲ ? ସେ ହାରା ବୋଉ ମ ? ଚାଲ ଦେଖିବ, ଗୋଡ଼ ଦି'ଟା ନ ଚାଲିଲେ କଅଣ ହେଲା, କେତେବେଳୁ ଆସି ଇସ୍କୁଲ ପିଣ୍ଡାରେ ବସିଚି । କେମିତି ଆଇଲା ଜାଣ ? ହଗରା ଶେଣୀ ତାକୁ ଗୋଟେ ଦଉଡ଼ିଆ ଖଟରେ ବୋହି ନେଇ ଆସିଲା । ତାର ଦୁଇ ନାତି ତାକୁ ଟେକି ଆଣି ଥୋଇ ଦେଲେ ଖଟରେ । ନା ଆଖିକୁ ଦିଶୁଚି, ନା କାନକୁ ଶୁଭୁଚି । ସେ ବି ତ ଆସିଲା ।

ସନା ମା ପିଣ୍ଡା ଉପରେ ବସି ପଡ଼ିଲା ଗୋଟାଏ ବାଉଁଶ ଖୁଣ୍ଟକୁ ଧରି । ପିଣ୍ଡାଟା ପ୍ରାୟ ପାଞ୍ଚ ଫୁଟ ଉଚ୍ଚ । କାବୁଲି ଠିଆ ହେଇଚି ପିଣ୍ଡା ତଳେ ।

ଫୁଲକୁ ଆହୁରି ଲାଜ ନାହିଁ । ଏ ବୟସରେ ବି ସେ ଦୌଡୁଚି ? ତା ଟିକଟ ତ କେବେଠୁ କଟା ସଇଲାଣି । ହେଲେ ଭଗବାନ ତାକୁ ଦୟା କରୁଚନ୍ତି । ତା ଗାଡ଼ି ଆସୁନି । କେତେଦିନ ଏମିତି ଘୁସୁରିବ କେଜାଣି । ସନା ମା ହାତରେ ଧରିଥିବା ବାଡ଼ିଟାକୁ ଖୁଣ୍ଟ ପାଖରେ ରଖି ଦେଉ ଦେଉ କହିଲା ।

କାବୁଲି କହିଲା ନାଇଁମ ଆଇ ସେମିତି କୁହନା । ତମେ ଯେତେ ଦିନ ଥିବ ସେତେଦିନ ଆମେ ମୁଣ୍ଡ ସିଧା କରି ଚାଲିବା । ଏବେ ଯିଏ ପଚାରୁଚି ଏ ଗାଁରେ ସବୁଠୁ ପୁରୁଣା କିଏ ? ଆମେ କହି ଦଉଛୁଁ ତୁମ କଥା ଓ ତମ ଫୁଲ କଥା । ତମେ

ଯେତେବେଳେ ସେ ପୁରୁଣା କାଳ କଥା କୁହ ନା, ମାନେ ଏଇ ବ୍ରିଟିଶ ଅମଳର କଥା, ଯୁଦ୍ଧ କଥା, ଯୁଦ୍ଧବେଳେ ତମ ଘରେ କେମିତି ସାତ ଦିନ କାଳ ଚୁଲୀ ଜଳି ନଥିଲା, ଅଜା ପୁଲିସକୁ ଲୁଚି ଲୁଚି କି କାଗଜ ବାଣ୍ଟୁଥିଲେ ବୋଲି ତାଙ୍କୁ କେମିତି ପୁଲିସ ଖୋଜୁଥିଲା, ଆଉ ତୁମେ ଯେତେବେଳେ ଏଇ ସବୁ କଥା କୁହ, ଆମକୁ କେମିତି କୁହୁକ ରାଇଜର କାହାଣୀ ପରି ଲାଗେ । ତୁମେ ଥରେ ସେତେବେଳେ କହୁ ନଥିଲ ଚାଉଳ କିଲେ ଦିଅଣା, ଦୁଧ କୁଆଡ଼େ ଦି ପଇସା, ଖଣ୍ଡେ ଗାମୁଛା କୁଆଡ଼େ ଚାରି ଅଣା । ମୁଁ ତ କେତେଥର ତୁମଠୁ ଶୁଣିଚି । ମନେ ନାହିଁ ? ତମେ ଆମକୁ ତମର ସେ ଗମ୍ଭୀର ଭିତରେ ବସେଇ ଏସବୁ କହୁଥିଲ ? କାବୁଲି ହସିଲା ।

ସେ ଗମ୍ଭୀର କଥା କହନାରେ କାବୁଲି । ସେ ଗମ୍ଭୀରାରେ ମୋର ବୟସର ତିନିପା କଟିଯାଇଚି । ମୁଁ ସେଠିକି ଆସିଥିଲି ତୋ ଅଜା ସାଥିରେ ଯେତେବେଳେ ମୋର ବୟସ ସାତ କି ଆଠ ହେବ । ଆମ ଦିହିଁଙ୍କ ଜୀବନ ସେଇଠି କଟିଥିଲା । ଆଜି ଯାଏ ବି ସେଇ ଗମ୍ଭୀର । ପିଣ୍ଡାରୁ ଚୁଲୀ ପର୍ଯ୍ୟନ୍ତ ଛଡ଼ା ମୁଁ ଆଉ ବାହାରକୁ ଯାଇନି । ସେଇ ଗମ୍ଭୀରା ପିଣ୍ଡାରେ ତ ଗତ ସନ ତୋ ଅଜା ମୋତେ ଛାଡ଼ି ଅଚାନକ ଚାଲିଗଲେରେ । ଗଲାବେଳେ ପଦେ କଥା ବି....।

ବୁଢ଼ୀ ଆଖିରେ ଲୁହ ଠିଆ ହୋଇଗଲା ।

ଏମିତି କଥାରେ କାବୁଲି ଟିକେ ଅପ୍ରସ୍ତୁତ ହେଇଗଲା । କଥାର ମୋଡଟା ଯେ ସେ ଆଡକୁ ଗଡ଼ି ଆସିବ ସେକଥା ସେ ଚିନ୍ତା ମଧ କରିନିଥିଲା । କେମିତି ସେ କଥାଟାକୁ ପୁଣି ଫେରେଇ ଆଣିବ ସେ କଥା ଭାବିଲା ବେଳକୁ ବୁଢ଼ୀ ପୁଣି କହିଲା, ହେଇତ ବର୍ଷକ ତଳେ ତାଙ୍କରି ହାତ ଧରି ତାଙ୍କରି କଥା ମାନି ମୁଁ ସେଇ ସ୍କୁଲକୁ ଯାଇଥିଲି । ସେଦିନ ବି ମୁଁ ମଙ୍ଗୁ ନଥିଲି ଯିବାକୁ । ମୋତେ ସେ କେତେ ବୁଝେଇଲେ । ଏସବୁତ ଆମର ଧର୍ମ । ଗାନ୍ଧୀ କଅଣ କହିଥିଲେ ? ଆମ କାମ ଆମେ କରିବା । ଆମ ଘର ଆମେ ଗଢ଼ିବା । ଆମ ଦେଶ ଆମେ ତିଆରିବା । ତେଣୁ ଭୋଟ ନ ଦେଲେ କେମିତି ହେବ ?

ବୁଢ଼ୀ ଟିକିଏ ରହିଗଲା । ତାପରେ ପୁଣି କହିଲା, କେତେ କଅଣ ଯେ ସେ କହୁଥିଲେ ସେସବୁ ମୋ ମୁଣ୍ଡକୁ ମୋଟେ ପଶୁ ନଥିଲା । ସେ ଗାନ୍ଧୀଟାକୁ ଥରେ ଦେଖିଲେ ମୁଁ ପଚାରନ୍ତି । ଯାଙ୍କ ମୁଣ୍ଡଟାତ ସେଇ ଚୋବେଇ ଖାଇଚି । ଯେତେବେଳେ ଦେଖ ସେଇ ତା'ରି କଥା । ପାଗଳା ନ ହେଲେ ଏମିତି କିଏ କହେ ?

କାବୁଲିର କଥା ବାଆରେଇବା ପାଇଁ ବାଟ ମିଳିଗଲା । ସେ କହିଲା ଗାନ୍ଧୀ ବୁଢ଼ା ପରା କେବେଠୁଁ ମଲାଣି । ତମେ ଆଜି ଆଉ ତା କଥା କାହିଁକି ପଚାରୁଛ ?

ମଲାଣି ? ହଁ ମ, ମୁଁ ଭୁଲି ଯାଉଚି । ଆଉ କଅଣ କିଛି ମନେ ରହୁଚି କି ? ଆରେ କାବୁଲି, ବାପ କହିଲୁ, ସେତ ମଲା ଆଉ ଏ ପୋଡା ମୁହାଁ ଗୁଡ଼ାକୁ ସାଥିରେ ନ ନେଇ ଏଠି ରଖି ଦେଇଗଲା କାହିଁକି ? ଖାଲି ଆମକୁ ଦରକଟ କରିବା ପାଇଁ ନା, ଆଉ କଅଣ ?

କାବୁଲି ଦେଖିଲା ବୁଢ଼ୀ କଥା ବଢ଼େଇ ବଢ଼େଇ ଚାଲିଚି । ସେ କହିଲା ଆଈ ସେ କଥା ମୁଁ ତୁମକୁ ଆଉ ଦିନେ କହିବି । ତୁମେ ଯାଅ ଲୁଗାଟା ଟିକିଏ ବଦଳେଇ ଦିଅ । ଆସ ଆଉ ଡେରି କରନା । ସେଠି ଭିଡ଼ ବଢ଼ି ଗଲେ ତୁମେ ହଇରାଣ ହେବ । ଖରାବି ଉଠିଲାଣି ।

ସେଇଥିପାଇଁ ତ କହୁଚି ମୁଁ ଆଉ ଯାଇ ପାରିବିନି । ଏବେ ଖରାଟା ବେଶି କାଟୁଚି । ଚମଗୁଡ଼ାକ ହେଇ ଦେଖୁନୁ ଓଦା କାଗଜ ପରି ଖାଲି ହାତ ଉପରେ ପଡ଼ିରହିଚି । ସେଥିରେ କଅଣ ଆଉ କିଛି ଅଛି କି ?

କାବୁଲି ପିଣ୍ଡା ଉପରକୁ ଉଠି ପଡ଼ିଲା । ଗମ୍ଭୀରା ପାଖକୁ ଯାଇ ଖଣ୍ଡେ ଲୁଗା ନେଇ ଆସି ବୁଢ଼ୀକୁ ଦେଇ କହିଲା, ଏଇଟା ନିଅ, ପିନ୍ଧି ପକାଅ, ପିନ୍ଧା ଲୁଗାଟା ବଡ଼ ମଇଳା ହେଇଚି କିନା । ଭଲ ଦିଶିବନି ।

କିଏ ମୋତେ ଦେଖିବ କିରେ ? ବୁଢ଼ୀ ହସି ହସି ପଚାରିଲା କାବୁଲିକୁ ।

ଆଈ ତୁମକୁ ସମସ୍ତେ ଦେଖିବେ । କିଏ ଦେଖିବନି କହିଲ ? ତୁମ ଦେହଟାତ ଏବେବି ରଡ଼ ନିଆଁ ପରି ଜଳୁଚି । କାବୁଲି କହିଲା ଥଟ୍ଟାରେ ।

ଦେବି ଯେ ପାହାରେ ।'

ଆଈ ନାତି ଦୁହେଁ ହସି ଉଠିଲେ । କାବୁଲି ବୁଢ଼ୀର ଦୁଇ ହାତକୁ ଧରି ଧୀରେ ଧୀରେ ଠିଆ କରେଇଲା ଏବଂ ଧୋତିଟାକୁ ବୁଢ଼ୀକୁ ଧରେଇ ଦେଲା ।

ଲୁଗା ପିନ୍ଧୁ ପିନ୍ଧୁ ବୁଢ଼ୀ ପଚାରିଲା ଫଟୋ କେମିତି ଉଠେରେ ?

ଆଃ, ତମେ ଚାଲୁନ ସେଠି ଦେଖିବ । ଗାଁ ଯାକର ସମସ୍ତେ ସେଠି ଅଛନ୍ତି । ସମସ୍ତଙ୍କର ଉଠିବ ।

ହଁ ସେକଥା ବୁଝିଲି ଯେ । ଭୋଟ ଦେଲାବେଳେ ଆମେ ସବୁ ଗୋଟିଏ ଘର ଭିତରକୁ ଯାଇ ଲୁଚେଇକି କାଗଜ ଗଳେଇ ପକାଉଁ । କେହି ଦେଖେନି, ଏ ଫଟୋବି ସେମିତି ଉଠିବ କି ?

ନାଇଁମ । ସେମିତି କଅଣ ଉଠେ ? ସମସ୍ତଙ୍କ ଆଗରେ ଉଠିବ ନା । ଆଃ, ତମେ ଦେଖିବନି ସେତେବେଳେ ।

ସମସ୍ତଙ୍କ ଆଗରେ ? ଧେତ୍ ମୁଁ ତେବେ ଯିବିନି । ସେ ମକରା ଝିଅ କହୁଥିଲା ସେଠି କୁଆଡ଼େ ଦେହରୁ ଲୁଗା ଖସେଇ ଆଗକୁ ଚାହିଁବାକୁ ପଡ଼ିବ ? ଆଉ ମରଦଗୁଡ଼ାକ ତମକୁ ଖାଲି ଅନଉଥିବେ । ବୁଢ଼ୀ ଲୁଗା ପିନ୍ଧା ବନ୍ଦ କରିଦେଲା ।

କାବୁଲି କହିଲା, କାହିଁକି ମ ? ଲୁଗା କାହିଁକି ଖସେଇବ ? ତମେ ସଜାଡ଼ି ହେଇ ଯେମିତି ବସିବାର କଥା ସେମିତି ବସିବ । ହେଇଚି ଆଈମ । ତମେ ଖାଲି ବସିବ ଓ ଉଠିବ ।

କିନ୍ତୁ ଖବରଦାର କହିଦଉଚି ମୁଁ ସେ ଅଲଜ୍ୟାଙ୍କ ପରି ବସି ପାରିବିନି ।

କାହାର ହିମ୍ମତ ଅଛି ତମକୁ ସେମିତି ବସିବାକୁ କହିବ ? ମୁଁ କଅଣ ମଲିଣିକି ? ତା ଜିଭ ଉପାଡ଼ି ଦେବିନି ? ମୁଁ ତ ତୁମ ସାଙ୍ଗରେ ଯାଉଚି । ତୁମେ ଏମିତି ଛାନିଆ ହେଉଚ କିଆଁ ?

ବୁଢ଼ୀକୁ ଧରି କାବୁଲି ପଟା ରିକ୍ସାସାଟାରେ ବସେଇ ଦେଇ ନିଜେ ଟାଣି ଟାଣି ନେଲା ।

ଏ ଫଟୋ କଅଣ ହେବ କିରେ କାବୁଲି ? ବୁଢ଼ୀ ରିକ୍ସାରେ ଯାଉ ଯାଉ ପଚାରିଲା ।

ହବ ଆଉ କଅଣ । ସେଇ ଭୋଟବେଳେ ଦରକାର ହେବ । କହୁଚନ୍ତି, ଯିଏ ଫଟୋ ନ ଦେଖେଇବ ତାକୁ ଭୋଟ ଦେବାକୁ ଦିଆଯିବ ନାହିଁ, କାବୁଲି ରିକ୍ସାଟାକୁ ଧୀରେ ଗୋହିରି ବାଟରେ ଟାଣୁ ଟାଣୁ କହିଲା ।

ନ ଦିଅନ୍ତୁ । ଭୋଟ ନ ଦେଲେ କଅଣ ହେବ ଯେ ? କିଏ ଯାଉଚି ଖୁସିରେ ଭୋଟ ଦେବାକୁ ?

କାବୁଲି ଚୁପ ହେଇଗଲା । କଅଣ କହିବ ବୁଢ଼ୀକୁ ମନେ ମନେ ଚିନ୍ତା କରୁଥିଲା ।

ବୁଢ଼ୀ ଟିକିଏ ରହି ପୁଣି ପଚାରିଲା, ଆଗରୁ ଏ କଥା ନଥିଲା ତ । ମୁଁ ତ ଆଗରୁ କେତେ ଥର ଦେଇଚି ।

ନାଁ, ଏଇଟା ନୁଆ ଆଇନ ହେଇଚି । ଫଟୋ ନଥିଲେ ଭୋଟ ବନ୍ଦ । କାବୁଲି କହିଲା ।

ଆରେ ବନ୍ଦ ହେଲେ ଭଲ । ଏତେ କଷ୍ଟ କରିବାକୁ ପଡ଼ନ୍ତାନି । ଏଥରେ ତୋତେ କଷ୍ଟ, ମୋତେ ବି କଷ୍ଟ । କି ଲାଭ ମିଳୁଚି ଏଥିରୁ ? କେଜାଣି । ଟିକିଏ ରହି ବୁଢ଼ୀ ପୁଣି କହିଲା, କଅଣ ମିଳିବରେ ମୋତେ ଏଥିରୁ ଜୀବନଟା ଏମିତି କଟିଗଲା । ଓଳିଏରୁ ଦି'ଓଳି ଚୁଲୀ ଜଳିଲାନି । ଏତେବଡ଼ ପୁଅଟା ଔଷଧ ଟୋପାଏ ନ ପାଇ ଚାଲିଗଲା । ବୁଢ଼ାକୁତ ମୁଁ ସବୁବେଳେ ଗାଳି ଦିଏଁ । ଗାନ୍ଧୀ ନାଁ ନ ଧରିଲେ ପାଣି ପିଏନି । ଗାନ୍ଧୀ କଅଣ ଦେଲା ତାକୁ ? ସେ ନିଜେ ବିତ ଅକାଳରେ ଗଲା ।

ଦୁହେଁ ନୀରବ । ରାସ୍ତାରେ ଖାଲି ରିକ୍ସାର କେଁ କେଁ ଶବ୍ଦ ।

ଖୋଳ

ବୁଢ଼ୀ ପୁଣି କହିଲା, ହଇରେ ଏୟ୍ ସେ ପୋଡାମୁହାଁ ମନ୍ତ୍ରୀଟା ପରା ଗଲାସନ ଆସି ମୋ ପାଦ ଛୁଇଁ କହିଗଲା, ଏଇ ମାସକ ଭିତରେ ସେ ବୁଢ଼ା ଭତ୍ତା ପଠେଇବ । ମାସେ କେତେ ଦିନରେ ହୁଏ କିରେ ?

ପୁଣି ଟିକିଏ ନିରବତା ।

ଘାଗଡ଼ା ଗଳାରେ ବୁଢ଼ୀ ବିରକ୍ତ ହେଇ କହିଲା ଜୀବନଟା ଯାକତ ଦେଖିଲି । ଆଉ କେତେ ଦେଖିବି ? କେତେ କଥା ତୋ ଅଜା ସେତେବେଳେ କହୁଥିଲେରେ ।

ସ୍କୁଲ ଘରେ ରିକ୍ସା ପହଞ୍ଚିଲାବେଳକୁ ସ୍କୁଲ ପିଣ୍ଡା ଲୋକାରଣ୍ୟ । ସବୁ ଲୋକ କେମେରା ପାଖରେ । ବୁଢ଼ୀକୁ ଧରି ଧରି ନେଇ କାବୁଲି ଫଟୋ ଉଠା ଘର ଭିତରେ ବସେଇଲା । ବୁଢ଼ୀ ଓଢ଼ଣା ଟାଣି ଦେଇଚି ଯେ ମୁହଁ ମୋଟେ ଦେଖା ଯାଉନି ।

ତୁମ ନାଁ କଅଣ ? ବାବୁ ଜଣକ ପଚାରିଲେ ବୁଢ଼ୀକୁ ।

କାବୁଲି କହି ଦେରେ ।

କାବୁଲି କହିଲା

ସ୍ୱାମୀ ନାଁ ?

ବୁଢ଼ୀ କାବୁଲିକୁ ଅନେଇଲା ।

କାବୁଲି କହିଦେଲା ।

ହଉ, ଏଇଠି ଦସ୍ତଖତ କର

ମୁଁ ଜାଣିନି । ବୁଢ଼ୀ କହିଲା ଓଢ଼ଣା ଭିତରୁ । ହେଇ ଦେଖ, ଏ ଆଡ଼କୁ ଟିକେ ମୁହଁ କର ଫଟୋ ଉଠାଉଥିବା ବାବୁ ଜଣକ କହିଲେ । ବୁଢ଼ୀ ଓଢ଼ଣା ନ ଖୋଲିବାରୁ ସେ ପୁଣି କାବୁଲିକୁ କହିଲେ ତାକୁ କୁହ ଟିକେ ଓଢ଼ଣାଟା ଖୋଲିବେ ।

କାବୁଲି ବୁଢ଼ୀ ପାଖକୁ ଯାଇ ମୁହଁ ପାଖରେ କଅଣ କହିଲା । ଫଟୋ ଉଠା ସରିଲା । ବାବୁ କହିଲେ ଏଥର ଉଠ । ବୁଢ଼ୀ ଉଠିଲା । ଓଢ଼ଣା ସଳଖି ଦେହର ଚାରିଆଡ଼ୁ ଲୁଗା ଟାଣି ଓଟାରି ସେ ଠିଆ ହେବାକୁ ଚେଷ୍ଟା କଲା । ଚାରିଆଡ଼କୁ ଅନେଇ ଦେଖିଲା ଏବଂ କାବୁଲିକୁ ପଚାରିଲା, ବାବା ଏଇ କଥାକୁ ଏତେ ଭିଡ଼ ?

ଫଟୋ ଉଠାଉଥିବା ବାବୁଜଣକ କହିଲେ ତମ ଫଟୋଟା ସବୁଠୁ ଭଲ ଉଠିଚି ମାଉସି । ତମେ ପାଇଲେ ଦେଖିବନି ? ଦେଖିବ କେତେ ସୁନ୍ଦର ଦିଶୁଚି ।

ବୁଢ଼ୀ କାବୁଲିର ହାତ ଧରି ଯାଉ ଯାଉ କହିଲା କଅଣ ହବରେ ପୁଅ ସେ ଫଟୋ ମୋର ? ତୋତେ ଯଦି ଭଲ ଲାଗୁଚି ତୁ ରଖିଦବୁ । ମୋର ଆଉ ଦରକାର ନାହିଁ ।

*(ସ୍ୱପ୍ନ, ପୂଜାସଂଖ୍ୟା, ୧୯୯୭)*



ଖୋଳ

# ୧୯୯୭

ପିପରା ଗାଁକୁ ଯିବାକୁ ହେଲେ ଅନ୍ତତଃ ପକ୍ଷେ ତିନିଥର ମାନଚିତ୍ର ଦେଖିବାକୁ ପଡ଼ିବ । ଚାରିଥର ଲୋକଙ୍କ ଠାରୁ ବୁଝିବାକୁ ପଡ଼ିବ । ପାଞ୍ଚଥର ଗାଡ଼ି ବଦଳ କରିବାକୁ ପଡ଼ିବ । ସେଇଟା ଗୋଟାଏ ଇମିତି ଗାଁ, ଯେଉଁଠାକୁ ଆଜିଯାଏ କୋଉଠୁ ହେଲେ କଚା ସଡ଼କଟିଏ ମଧ୍ୟ ପଡ଼ିନାହିଁ । ସେ ଗାଁକୁ ଏ ଯାଏ ବିଜୁଳି ଯାଇନାହିଁ । ସେ ଗାଁରେ ଏଯାଏ ପ୍ରାଇମେରୀ ସ୍କୁଲଟିଏ ମଧ୍ୟ ହେଇନାହିଁ । ସବୁଠାରୁ ବଡ଼କଥା ହେଲା ସେ ଗାଁର ଦଶକୋଶ ଅନ୍ତରରେ ଗୋଟିଏ ହେଲ୍‌ଥ ସେଣ୍ଟର ମଧ୍ୟ ହେଇନାହିଁ ।

ଆମେ ଯେତେବେଳେ ସ୍ୱାଧୀନତାର ପଚାଶ ବର୍ଷର ହିସାବ କଥା କହୁଁ, ସେମାନେ କହନ୍ତି ପଚାଶ କାହିଁକି, ପାଞ୍ଚଶହ ବର୍ଷର ହିସାବ ନିଅ । ମେହୀ ବଳଦ ଚକେ ଗଲେ ବାର ହାତ । ଆମେ ଯୋଉଠି ସେ ଦିନ ଆରମ୍ଭ କରିଥିଲୁ, ଆଜି ବି ସେଇଠି କରୁଛୁ । ନା ଆଗକୁ ନା ପଛକୁ । କିଏ ବୃତ୍ତରେ ଥିଲେ ଆମେ ବରାବର ବିନ୍ଦୁରେ ଅବସ୍ଥାନ କରୁ ।

ସେମାନେ କିନ୍ତୁ ନିୟମିତ ଭୋଟ୍ ଦେଇ ଆସୁଛନ୍ତି । ଭୋଟ୍‌କଥା କହିଲା ମାତ୍ରେ ସେମାନେ ପ୍ରସ୍ତୁତ ହେଇଯାଆନ୍ତି । ଘରେ ଖାଇବାକୁ ନ ଥାଉ, ଘରେ କେହି ଶକ୍ତ ବେମାର ପଡ଼ିଥାଉ, ନିଜର ଚାଲିବାର ଶକ୍ତି ନଥାଉ, ଅନ୍ଧ କି ଛୋଟା ହେଉଥାଉ, ଯେମିତି ହେଲେ ନିଜେ ଯାଇ ବା କାହାରି ସାହାରାରେ ଯାଇ ଭୋଟ ଦେବା ପରି ପବିତ୍ର କାମକୁ ସେମାନେ ଆଗ ସମ୍ପାଦନ କରି ଦେଇ ଆସନ୍ତି । ସେମାନେ କହନ୍ତି, ରୋଗ ବେମାରୀ ଓ ଦାରିଦ୍ର୍ୟ ଆମ ପାଖରେ ସବୁବେଳେ ଅଛି ଓ ଥିବ ମଧ୍ୟ । କିନ୍ତୁ ଭୋଟ ତ ଆମ କୁଣିଆ । କେବେ କେବେ ଥରେ ଆସେ । ତାକୁ ଅସମ୍ମାନ କେମିତି କରିବୁଁ ?

ସେଥିପାଇଁ ସେ ଗାଁରେ ଭୋଟ୍‌ବେଳେ ସଭାସମିତିର ଆବଶ୍ୟକତା ପଡ଼େନା । ପ୍ରଚାରପତ୍ର ବାଣ୍ଟିବାର ଦରକାର ହୁଏନା । ସେଠାକୁ ପ୍ରାର୍ଥୀମାନଙ୍କର ଯିବାର ମଧ୍ୟ

ଦରକାର ହୁଏନା । ସେମାନେ ସେଠାକୁ କେମିତି ଯାଆନ୍ତେ ଯେ ? ସେଠାକୁ ଗାଡ଼ି ଯାଏ ନା ଘୋଡ଼ା ଯାଏ ?

ସେ ଗାଁର ଲୋକମାନଙ୍କୁ ଭୋଟ ଦେବା କଥା କହିବାକୁ କେବଳ ଗୋଟିଏ କାମ କରିବାକୁ ପଡ଼େ । ସେଇଟା ହେଲା ସେମାନଙ୍କର ମନେ ରଖିବା ଭଳିଆ ଚିହ୍ନଟା । ଏଇ ମନେ କରନ୍ତୁ- ଲଙ୍ଗଳ, ମାଠିଆ କି ଫାଉଡଟାଏ କିମ୍ବା ବର୍ଷାରୁ ରକ୍ଷା ପାଇବା ପାଇଁ ସେମାନେ ତିଆରି କରୁଥିବା ତାଳ ପତ୍ରର ପଖିଆ । ଏମିତିକା ଗୋଟାଏ ଚିହ୍ନ ଭୋଟ୍‌ର ଦିନେ ଦୁଇଦିନ ପୂର୍ବରୁ କେବଳ ସେମାନଙ୍କୁ ଦେଖେଇ ଦେବା ଦରକାର । ବାସ୍ ସେତିକି । ସେତିକିରେ ସେମାନେ କାମ ସାରି ଦିଅନ୍ତି ଏବଂ ଆଶ୍ଚର୍ଯ୍ୟର କଥା, ସେମାନେ ତା' ପରେ ସେ କଥା ପୂରାପୂରି ଭୁଲିଯାଆନ୍ତି ପାଞ୍ଚବର୍ଷ ଯାଏ ।

ଏମିତିକି ଅନେକ ଥର ଦେଖାଯାଇଛି, କେହି କେହି ପୁରୁଖା ଲୋକ ଭୋଟ ଦେଇସାରି ସେମାନଙ୍କ ଗାଁର ମା' ମଙ୍ଗଳାଙ୍କ ଠାରେ ପୂଜା କରି ଭୋଗ ଲଗାଇ କହନ୍ତି, 'ମାଆ ଗୋ ! ମୋ 'କଳସ'କୁ ଜୟଯୁକ୍ତ କରାଇଲେ ତୋତେ ଆମ ଗାଁର ସମସ୍ତେ ମିଶି ଗୋଟିଏ ବୋଦା ଦେବୁଁ । ଅନ୍ୟ କେହି ଏହାକୁ ଅନ୍ଧବିଶ୍ୱାସ କହିଲେ ମଧ ସେମାନେ କହନ୍ତି ଏଇଟା ଆମର ବିଶ୍ୱାସ । ଦେବୀ କଥା ଶୁଣନ୍ତି ।

ସେ ଦିନ ପିପ୍‌ରା ଗାଁରେ ଗୋଟାଏ ଅସ୍ୱାଭାବିକ ନିରବତା ରାଜୁତି କରୁଥିଲା । ସମସ୍ତେ ଯେମିତି ଏକାଥରେ ନିରବ ହେଇ ଯାଇଛନ୍ତି । କାହାରି ପାଟିରୁ ଆଉ କଥା ବାହାରୁନି । ସମସ୍ତେ ଯେମିତି ପଥର ହେଇଯାଇଚନ୍ତି ।

କାଳୁରାମ ଆଉ ନିଜକୁ ସମ୍ଭାଳି ପାରିଲାନି । ସେ ଉଠି ଠିଆ ହୋଇପଡ଼ିଲା । ସାତ ହାତର ଠେଙ୍ଗାଟାକୁ ମାଟି ଉପରେ ଠୁକି ଦେଇ କହିଲା, 'ଚାଲିଲ, ମୋ ସାଙ୍ଗରେ ଚାରି ଛଅ ଜଣ । ଏଇନେ ବାହାରି ପଡ଼ ।

ସମସ୍ତେ କାବା ହେଇଗଲେ । କାଲୁରାମର ସେ ଭୟଙ୍କର ରୂପ ସେମାନେ କେବେ ଦେଖି ନଥିଲେ । ତା ମୁଣ୍ଡର ପାଚିଲା ଧଳାବାଳ ଗୋଛାକୁ ପଛକୁ ଝୁଲିବା ପରିବର୍ତ୍ତେ କାନ୍ଧଉପରେ ଅସ୍ତବ୍ୟସ୍ତ ହେଇ ପଡ଼ିଥିଲା । ଆଖି ଦି'ଟା ଲାଲ ଟକ ଟକ ଦେଖା ଯାଉଥିଲା ।

କର୍ମୁ ଠିଆ ହେଇ ପଡ଼ି କହିଲା, 'କୁଆଡ଼େ ଯିବା ଚାଚା ?

ଯିବା ଥାନାବାବୁ ପାଖକୁ । ଆଉ ସହି ହବନିରେ, ଆଉ ଏଠି ରହି ହବନି । ଏମାନେ ଆମକୁ ଆଉ ବଞ୍ଚିବାକୁ ଦେବେନି । ଚାଲ ଥରେ, ଆଜି ଏପାଖ ନ ହେଲେ ସେ ପାଖ ।

କର୍ମୁ ଦେଖିଲା ଚାଚା ଖୁବ୍ ରାଗି ଯାଇଚି । ସେତ ଏମିତି କେବେ ରାଗେନା ।

ବଡ଼ ଧୀର, ଶାନ୍ତଶିଷ୍ଟ ସିଏ ।

କର୍ମୁ ତା' ପାଖକୁ ଲାଗି ଆସିଲା ଏବଂ କହିଲା, 'ଏଇଟା ତ ନୂଆ କଥା ହବ ଚାଚା । ଆମେ ଥାନାକୁ ଯାଇ କଅଣ କରି ପାରିବା ? ଥାନାବାବୁମାନଙ୍କ କଥାତ ତୁମେ ଜାଣ ।'

କାଲୁ ତାକୁ ଏଡ଼େ ଏଡ଼େ ଆଖିରେ ଦେଖିଲା ଏବଂ କହିଲା, ମୁଁ ତୋଠୁ ପାଠ ପଢ଼ିବି କିରେ ? ତୁ ମୋତେ ଉପଦେଶ ଦଉଚୁ ? ମୁଁ କଅଣ ଥାନା, ସରପଞ୍ଚ, ମାଜିଷ୍ଟ୍ରେଟ ଏମାନଙ୍କୁ ନୂଆ ଦେଖୁଚି ? ନୂଆ ଦେଖୁଚି କି ଭୋଟ୍ ନେବା ବାଲାକୁ ?

ଚାଚାର ଏ କଥା ଶୁଣି ସମସ୍ତେ ଠିଆ ହେଇପଡ଼ିଲେ । କାଲୁର ନୂଆ ରୂପ ଆଗରେ ସେମାନେ ଆଉ କଥା କହିବାକୁ ସାହସ କଲେନି । ପାଞ୍ଚ ଛଅ ଜଣ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ । କାଲୁ ଆଗରେ । ହାତରେ ଉଚ୍ଚ ଠେଙ୍ଗା, ମୋଟା ଓ ଲମ୍ବା ଚାରି ଚଉତା ଚାଦର କାନ୍ଧରେ । ମୁଣ୍ଡରେ ଠେକା ।

ଦୁଇଟା ନଈ, ତିନିଟା ନାଳ ଏବଂ ଦୁଇଟା ଜଙ୍ଗଲ ଡେଇଁ ସେମାନେ ଯାଇ ଥାନାରେ ପହଞ୍ଚିଲା ବେଳକୁ ସଞ୍ଜ ପାଖେଇ ଆସିଲାଣି । ରାସ୍ତାରେ ଗୋଟାଏ ନଈ ପାର ହେଲା ବେଳେ ସେମାନେ ସାଥିରେ ନେଇଥିବା କିଛି ଛତୁ କେବଳ ଖାଇଥିଲେ ଓ ସେ ନଈରୁ ପାଣି ପିଇଥିଲେ ।

ମୁଣ୍ଡରୁ ଠେକାଟା ଖୋଲିଦେଇ କାଲୁ ଥାନା ପଛପାଖ ଆମ୍ବଗଛ ମୂଳରେ ଥିବା ପକ୍କା ଚଉତରା ଉପରେ ବସିପଡ଼ି ଫଁ, ଫଁ ନିଶ୍ୱାସ ମାରିବାକୁ ଲାଗିଲା । କର୍ମୁ ତାକୁ ପଚାରିଲା 'ଚାଚା ପାଣି ଆଣିବି କି ?'

କାଲୁ ସେ କଥାର ଉତ୍ତର ନ ଦେଇ କହିଲା- 'ଦେଖିଲୁ ଥାନା ବାବୁ ଅଛନ୍ତି କି'?

କର୍ମୁ ଚାଲିଗଲା ଏବଂ ସାମନା ବାରଣ୍ଡା ଦେଇ ଉପରକୁ ଉଠିଲା ବେଳକୁ ଦୂରରେ ପଡ଼ିଥିବା ଗୋଟିଏ ମଟର ସାଇକେଲକୁ ପୋଛୁଥିବା ସିପାହି ପାଟିକଲା । 'କୋନ୍ ହେବେ ? ଉଧର କାହାଁ ଯା ରହା ହେ ?' ସେ ତାକୁ ହାତ ଠାରି ନିଜ ପାଖକୁ ଡାକିଲା ଏବଂ ପୁଣି ଖଣ୍ଡେ ଛିଣ୍ଡା କନା ଧରି ମଟର ସାଇକେଲ୍ ପୋଛିବାକୁ ଲାଗିଲା । କର୍ମୁ ତା ପାଖକୁ ଯାଇ ମୁଣ୍ଡ ନୁଆଇ ଜୁହାର ହେଲା ମାତ୍ରେ ସିପାହୀ ତାକୁ ପଚାରିଲା- 'କ୍ୟା ବାତ୍ ହେ ?'

କର୍ମୁ କହିଲା, - 'ଆମେ ପିପ୍ରାରୁ ଆସିଚୁ ।'

'ଆରେ ସୁଆର୍‌କା ବଚ୍ଚା, ତୁ କଅଣ ଆଉ ଆମେରିକାରୁ ଆସି ଥାଆନ୍ତୁ କି ? ତୋର ତ ହିମ୍ମତ ବହୁତ । ତୋ ଆଖି ଫୁଟି ଯାଇଛି କି ମୋତେ ଦେଖି ପାରୁନୁ ?

ତୁ ସିଧା କେମିତି ବାରଣ୍ଡା ଉପରକୁ ଉଠି ଯାଉଚୁ ?'

କର୍ମୁ କହିଲା, 'ନାଇଁ ହଜୁର।'

କଅଣ ପାଇଁ ଆସିଚୁ ମୋତେ କହୁନୁ ?

ହଜୁର, ଚାଚା ପଚାରୁଚି ଦାରୋଗା ବାବୁ ଅଛନ୍ତି କି ?

ଚାଚା ? ଚାଚା କିଏ ବେ ?

ମୋ ଚାଚା ହଜୁର। ଆମେ ତା ସାଥିରେ ଆସିଚୁଁ। ସେ ସେଠି ବସିଚି। କର୍ମୁ ଆମ୍ବଗଛ ଆଡକୁ ହାତ ଦେଖେଇ ଦେଲା।

'ଯା, ଡାକିଆଣ ଏଠିକୁ।' ସେ ପୁଣି ମଟର ସାଇକେଲ ପୋଛିବାକୁ ଲାଗିଲା। ତା' ପରେ ବିଡ୍ ବିଡ୍ ହୋଇ କହିଲା, ପତା ନେହିଁ, କୋଉ ଶଳା ଚାଚା ଏବେ ଏ ସନ୍ଧ୍ୟା ବେଳଟାରେ ଥାନାକୁ ଆସିଚି।

କାଲୁ ତା'ର ସାଙ୍ଗସାଥିକୁ ନେଇ ଆସି ସିପାହି ପାଖରେ ପହଞ୍ଚିଲା ଏବଂ ମୁଣ୍ଡ ନୁଆଇଁ ନମସ୍କାର କରି ପଚାରିଲା- 'ହଜୁର ଦାରୋଗା ବାବୁ ଅଛନ୍ତି ? ଆମର ବହୁତ ଜରୁରୀ କାମ ଅଛି।'

ସିପାହି ଏଥର ଠିଆ ହୋଇ ପଡ଼ିଲା ଏବଂ କହିଲା, କୋଉ ମନ୍ତ୍ରୀଟାଏ ହେଇଚୁ ଯେ ସିଧା ଦାରୋଗା ବାବୁ କଥା ପଚାରି ଦେଲୁ ?

କାଲୁ ସେମିତି ହାତ ଯୋଡ଼ି କହିଲା ନାଇଁ ହଜୁର, ଆମେ ଦୂର ଜାଗାରୁ ଆସିଚୁଁ। ସେଥିପାଇଁ ପଚାରି ଦେଲି। କାମ ସାରି ରାତି ରାତି ଏଠୁ ଫେରିଗଲେ ସକାଳେ ଗାଁରେ ପହଞ୍ଚିବା।

କୋଉଁଠୁ ଆସିଚୁ ?

ପିପ୍ରାରୁ।

ପିପ୍ରା ? ସେଇଟା କୋଉଁଠି ?

ହଜୁର, ଝାଡୁଆଠାରୁ ଆଉ ପାଞ୍ଚକୋଶ ଦକ୍ଷିଣକୁ।

ଝାଡୁଆଠାରୁ ଦକ୍ଷିଣକୁ ? କାହିଁ ଏ ଥାନାରେ ମୋର ପାଞ୍ଚବର୍ଷ ହେଇଗଲାଣି। ମୁଁ ତ ଦିନେ ବୋଲି ପିପ୍ରା ନାଁ ଶୁଣିନି।

କେହି ଶୁଣି ନ ଥିବେ ହଜୁର। ସେ ଗାଁକୁ ଆପଣ କେମିତି ଯିବେ ? ବାଟ କାହିଁ ?

'ହଁ ସେ କଥା କହୁନୁ। ତା ନ ହେଲେ ମୁଁ ଯାଇ ନ ଥାଆନ୍ତି ?' ସିପାହି କର୍ମୁକୁ

ଛିଣ୍ଡାକନାଟା ଧରେଇ ଦେଲା ଓ କହିଲା ଆବେ ଟିକିଏ ଭଲ କରି ପୋଛିଦେଲୁ । ଯା ବାଲ୍‌ତିଏ ପାଣି ନେଇ ଆ' । କର୍ମୁ ପୋଛିବାକୁ ଆରମ୍ଭ କରିବାରୁ ସିପାହି କହିଲା, ଆଚ୍ଛା ବଡ଼ବାବୁ ପାଖରେ କି କାମ ଅଛି ଶୁଣେ । ଖୁନ୍ ଫୁନ୍ କିଛି ନୁହେଁ ତ ?

କାଲୁ କହିଲା, ନା ହଜୁର । ତାଠୁ ଆହୁରି ସାଘାତିକ କେଶ୍ । ସିପାହି ଆଖି ଏଡ଼େ ଏଡ଼େ କରି କାଲୁକୁ ଦେଖିଲା । ତା ପରେ କହିଲା, ଆବେ ଶଳା ମୁଣ୍ଡ ଖରାପ ହେଇ ଯାଇଛି ନା କଅଣ ? ଖୁନ୍‌ଠୁ ଆଉ ସାଘାତିକ କଅଣ କିଛି ଥାଏ ?

ଏତିକିବେଳେ ଦାରୋଗା ବାବୁ ଥାନା ବାରଣ୍ଡାରେ ଠିଆ ହୋଇ ବଡ଼ ପାଟିରେ ଡାକିଲେ, ଲାଲା, କିଏ ଆସିଚି କିରେ ?

ଲାଲା ସିପାହୀ ଦଉଡ଼ି ଆସିଲା ଏବଂ କହିଲା ହଜୁର, ସେମାନେ ପିପ୍‌ରାରୁ ଆସିଛନ୍ତି । କହୁଚନ୍ତି ଖୁନ୍‌ଠୁ ଆହୁରି ସାଘାତିକ କେଶ୍ ଅଛି ।

ଦାରୋଗା ବାବୁ ବାରଣ୍ଡା ଉପରେ ପାଦ ଚାରଣ କରୁ କରୁ କହିଲେ ତୁ ସେମାନଙ୍କୁ ଆମ ବସାକୁ ନେଇ ଯା । ସେଠି କାଠଗଡ଼ ଦି'ଟା ପଡ଼ିଚି, ତାକୁ ଚିରି ଛୋଟ ଛୋଟ କରି ଦେବାକୁ କହ । ତଳେ ପକେଇବେନି । ଭାଡ଼ି ଉପରେ ସଜେଇ ରଖିବେ ।

ଲାଲା କହିଲା ହଜୁର ସେମାନେ ପରା କହୁଚନ୍ତି ସାଘାତିକ କେଶ୍ । ଏଡେଲା ଦେଇ ଆଜି ରାତିରେ ଫେରିଯିବେ ।

ତୋତେ ମୁଁ କଅଣ କହିଲି ?

ସିପାହି ଫେରିଗଲା ଏବଂ କାଲୁକୁ ଛାଡ଼ି ଆଉ ସମସ୍ତଙ୍କୁ ଦାରୋଗାବାବୁଙ୍କ ଘରକୁ ନେଇଗଲା । ସେମାନଙ୍କୁ ସେଠି ଛାଡ଼ି ଦେଇ ଆସି କାଲୁକୁ କହିଲା, ତୁ ସତରେ କଅଣ ଆଜି ଫେରିଯିବୁ ?

ହଜୁର୍ ସେତକ ଟିକିଏ କରି ଦିଅନ୍ତୁ ନା ।

ଠିକ୍ ଅଛି, ମୋ ସାଲାମିଟା ପକା ।

ଥାନା ଚାରିପଟେ ସେତେବେଳକୁ ସଞ୍ଜଟା ବେଶ ବହଳ ହେଇ ମାଡ଼ି ଆସିଲାଣି । ସେଇ ଅନ୍ଧାରରେ କାଲୁ ଓ ସିପାହି ଲାଲା ଆମ୍ବଗଛ ମୂଳରେ ଫୁଟ୍‌ଫୁଟ୍ ହେଇ ଦି' ଚାରି ମିନିଟ୍ କଅଣ କଥା ହେଲେ । ତା' ପରେ ଦିହେଁ ଦାରୋଗା ବାବୁଙ୍କ ପାଖକୁ ଆସିଲେ ।

ଲାଲା କହିଲା, ହଜୁର କଥାଟା ବଡ ଗମ୍ଭୀର ବୋଲି ସେ କହୁଚି । ଆଜି ଫେରିଯିବ ବୋଲି କହୁଚି ।

**ଖୋଳ**

ବାବୁ ଟେବୁଲ ଉପରୁ ମୁହଁ ନ ଉଠେଇ କହିଲେ କାଲି ଆସିବାକୁ କହ ।

ସେମାନେ ପିପ୍ରାରୁ ଆସିଚନ୍ତି ହଜୁର ।

ଆରେ ପିପ୍ରା ଏଠୁ କେତେ ବାଟ ମୁଁ ଜାଣିନି ? ଡାକି ଦେଲେ ଶୁଭିବ ପରା । କହ, କାଲି ଆସିବ ।

ହଜୁର ସେଟା ପିପ୍ରା ନୁହେଁ, ଘିମରା । ସେଇଟା ତ ଏଇ ତେମୁହାଣୀ ପାଖରେ । ଏଇଟା ପିପ୍ରା, ଏଠୁ ତିରିଶ କିଲୋମିଟର ହେବ କି କଅଣ ?

ଥାନାବାବୁ ବିରକ୍ତ ହେଲେ । କହିଲେ, ଆଜି ଶନିବାର ତୁ ଜାଣିନୁ କି ? ଶନିବାରରେ ଏତଲା ବହି ଛୁଆଁଯାଏ ?

କାଲୁ କହିଲା, ହଜୁର ଆଜି ଶନିବାର ହେଲେ ମଧ୍ୟ ମାସର ୪ ତାରିଖ । ଏଯାଏ ଖଡ଼ିଛୁଆଁ ହେଇନି ।

ବଡ଼ବାବୁ ଟିକିଏ ଅଟକି ଗଲେ ଏବଂ କହିଲେ, ତେବେ ତୁ ଗୋଟାଏ କାମ କର । ତୋ ଟିପା ଖାତାରେ ସେମାନଙ୍କ କଥାଟା ଟିପିନେ । କାଲି ବହି ଛୁଇଁବା । ତାପରେ କଅଣ ଭାବି ସେ କାଲୁକୁ ଡାକିଲେ ଏବଂ କହିଲେ କଅଣ ହେଇଚି ମୋତେ ଠିକେ ଠିକେ କହିଲୁ ।

କାଲୁ କହିଲା, ହଜୁର ! ଆମ ପିପ୍ରା ଗାଁଟା ଯାକ ସବୁ ହରିଜନ । ପାଖ ଗାଁ, ମାନେ ନାଜ ସେ ପାଖ ମୋହନପୁର ଗାଁରେ ସମସ୍ତେ ଭୂମିହାର୍ କିମ୍ବା ରାଜପୁତ । ସେମାନଙ୍କ ଘରେ ଆମେ ମୂଲ ଲାଗୁଁ । ଆମର ସବୁ ଜମି ବି ସେମାନଙ୍କ ପାଖରେ ବନ୍ଧା ପଡ଼ିଚି । ଯେତେ ବର୍ଷ ମୂଲ ଲାଗିଲେ ବି ସେ ଋଣ ଶୁଝେନି । ଗଲାବର୍ଷ ଦି' ଗାଁ ମିଶି ଗୋଟାଏ ବିଚାର ହେଲା ଏବଂ ତାପରେ ଫଇସଲା ହେଲା ଯେ ଆମକୁ ଏ ବର୍ଷ ଧାନ ଅଧା ମିଳିବ । ଲେଖାଲେଖି ବି ହେଲା । କିନ୍ତୁ ଏ ବର୍ଷ ଧାନ ପାଚିବା ପୂର୍ବରୁ ଗତକାଲି ଆମର ସବୁ ଧାନ ସେମାନେ କାଟି ନେଇଛନ୍ତି । ପଚାରିବାରୁ କହିଲେ ସେ ଜମି ତ ତୁମର ନୁହେଁ ।

କାଲୁ କାନ୍ଦି ପକେଇଲା ଭୋ ଭୋ ହୋଇ ।

ଥାନାବାବୁ ସବୁ ଶୁଣିଲେ ଏବଂ କହିଲେ 'କଥାଟା ତେବେ ସତରେ ବଡ଼ ଗମ୍ଭୀର । କିନ୍ତୁ ଗୋଟାଏ କଥା । ମୋ କଥା ତୁ ଖରାପ ଭାବିବୁନି । ମୁଁ ସବୁବେଳେ ରୋକ୍‌ଠୋକ୍ କହେଁ । ଏଥିରେ ତୁ ଯଦି ମୋତେ ଖରାପ ଭାବୁ ତେବେ ମୋର କିଛି କହିବାର ନାହିଁ । କଥାଟା ହେଲା ଏଇଟା ଯୁଗେ ଯୁଗେ ଅଛି ଯେ ଗରିବ ମୂଲିଆମାନେ ବରାବର ଋଣ କରିବେ ଏବଂ ଥିଲାବାଲାମାନେ ଋଣ ଦେବେ । ଏ କଥାକୁ ତ କେହି

କେବେ ବାଦ ଦେଇ ପାରିବନି । କିନ୍ତୁ ଏ ଦବାନବା କଥାଟା ସବୁବେଳେ ଆପୋଷରେ ହୁଏ । ସେଥିରେ ରାଜନୀତି ପଶିଲେ ବିପଦ । ଏ କଥାରେ ତମେ ସବୁ ଯେମିତି ମେଳି ମେଳି କରୁଚ, ସେମାନେ ବି ସେମିତି ଗୋଟେ କଅଣ 'ଆର୍ମି' ଗଢ଼ିଲେଣି । କମାର ଯେତିକି ବଦମାସ୍, ଲୁହା ବି ସେତିକି ବଦମାସ୍ । ମୁଁ ଏବେ ଏଥିରେ କଅଣ କରିବି ।

ଟିକିଏ ରହି ସେ ପୁଣି କହିଲେ ହଉ ତେବେ ତୁମେ ସବୁ ଆଜି ଯାଅ । ମୁଁ ଯାହା କରିବା କଥା କରୁଚି । ମୁଁ ତମ ଗାଁକୁ ଯାରି ଭିତରେ ଯିବି । କିଛି ବଦମାସି କରିବନି, ବୁଝିଲ ? କାଲୁ ଓ ତା'ର ସାଙ୍ଗମାନେ ସେଇଦିନ ରାତିରେ ଗାଁକୁ ଫେରି ଆସିଲେ ।

ପରଦିନ କାଲୁ ଘରକୁ ଫେରିବା ମାତ୍ରେ ତା'ର ଆଠବର୍ଷର ନାତି କହିଲା ମୋହନପୁରରୁ ଦୁଇଜଣ ଲୋକ ଆସି ତମକୁ ଖୋଜୁଥିଲେ ।

ତୁ କଅଣ କହିଲୁ ସେମାନଙ୍କୁ ?

କହିଦେଲି ତୁ ଥାନାକୁ ଯାଇଚୁ ବୋଲି ।

କାଲୁ ସେଠି ଗୁମ୍‌ମାରି ଛିଡ଼ା ହେଇଗଲା । ସେ ଜାଣିଲା ଯେ ତା' ଉପରେ ଏବଂ ଖାସ୍ କରି ପିପ୍‌ରା ଗାଁ ଉପରେ ବିପଦ ଘନେଇ ଆସୁଚି । ଥାନାକୁ ଯାଇଚି ଶୁଣିଲେ ସେମାନେ ଆଉ ରଖିବେ ?

ଠିକ୍ ତା' ପରଦିନ କାଲୁ ଗାଁ ଗୋହିରିରେ ଲଲା ସିପାହିକୁ ଦେଖି ଆଶ୍ଚର୍ଯ୍ୟ ହେଇଗଲା । କାଲୁ ପଚାରିଲା ହଜୁର ଆପଣ କେମିତି ହଠାତ୍ ଏ ଗାଁକୁ ଆସିଗଲେ ?

ଲାଲା କହିଲା, ଆରେ ଆସିବାକୁ ତ ପଡ଼ିବ । ବଡ଼ବାବୁ ବି ଆସିବେ । ତା'ପରେ ସେ ଟିକିଏ ରହିଯାଇ କହିଲା, ଆରେ ସେ ମୋହନପୁରର ରାମ ଲଇଖଣର ଝିଅକୁ କିଏ ଉଡ଼େଇ ନେଇ ଯାଇଛି ଜାଣିଚ ? ଗତକାଲିଠୁ ସେ କୁଆଡ଼େ ମିଳୁନି । କାଲୁ ଆଶ୍ଚର୍ଯ୍ୟ ହେଲା । କହିଲା ହଜୁର ମୁଁ ପ୍ରଥମ କରି ଆପଣଙ୍କଠୁ ଏକଥା ଶୁଣୁଚି ।

ଲାଲା କହିଲା 'ଏଇ ଆଖପାଖ ଗାଁରେ ଅଛି ବୋଲି ଖବର ମିଳୁଚି । ଦେଖାଯାଉ । ଲାଲା ସାଇକେଲ ଚଢ଼ି ଚାଲିଗଲା । କିନ୍ତୁ କାଲୁ ପାଇଁ ସେ ଅନେକ କିଛି ଚିନ୍ତାର ଖୋରାକ ଛାଡ଼ି ଦେଇଗଲା ।

କଅଣ ଯାର ଅର୍ଥ ହେଇପାରେ ? କାଲୁର ମନେହେଲା ପିପ୍‌ରା ଗାଁକୁ ପୁଣି ଥରେ ବିପଦ ମାଡ଼ି ଆସୁଚି । କିଏ କହିବ କେତେବେଳେ କଅଣ ହେବ ।

ବିପଦ ଯେତେବେଳେ ଆସେ ସେତେବେଳେ ଏକା ଆସେନା । ସାଙ୍ଗ ସାଥି ନେଇ ଆସେ ।

ଖୋଳ

ସେ ଦିନ ରାତି ଠିକ୍ ଦୁଇଟା ସମୟରେ ପିପ୍‌ରା ଗାଁର ପଚାଶଟା ଘର ଅଚାନକ ନିଆଁ ଲାଗିଗଲା । ଘର ତ ନୁହେଁ, ଗୋଟାଏ ଗୋଟାଏ ଝୁମ୍ପୁଡ଼ି କହିଲେ ଠିକ୍ ହେବ । ନିଆଁ ଲାଗିଲା ମାତ୍ରେ ହୁ କିନା ଜଳିଗଲା । କେହି ଲିଭେଇ ପାରିଲେନି କି ଲିଭେଇବାର ସୁଯୋଗ ମଧ ପାଇଲେନି । ତା'ର କାରଣ ନିଆଁ ଲାଗିବା ପୂର୍ବରୁ ପ୍ରତ୍ୟେକ ଘର ବାହାରୁ ବନ୍ଦ କରି ଦିଆଯାଇଥିଲା । ଶକ୍ତ ଶିକୁଳୀ ଲାଗି ସାରିଥିଲା । ବାସ୍, ରାତି ପାହିଲା ବେଳକୁ ସବୁ ଶେଷ ହୋଇ ଯାଇଥିଲା । ଯୁବକ ଓ ବୁଢ଼ାମାନଙ୍କ ସାଥିରେ ସରଳ ନିଷ୍ପାପ ଶିଶୁମାନେ ମଧ ସେଥିରେ ଆହୁତି ପଡ଼ି ସାରିଥିଲେ । ଖବର ପାଇ ଆସିଲାବେଳକୁ ସେଠି କେବଳ ମୁଠାଏ ପାଉଁଶ ଏବଂ କେତୋଟି କଙ୍କାଳ ମାତ୍ର ଇତିହାସର ଶେଷ ସାକ୍ଷୀ ରୂପେ ଆକାଶକୁ ଚାହିଁ ପଡ଼ି ରହିଥିଲେ ।

*(ଅନୁପମ ଭାରତ, ସ୍ୱନକ୍ଷତ୍ର ବିଶେଷାଙ୍କ, ୧୯୯୭)*



# ଛତ୍ରଭଙ୍ଗ

ଆମେ ଦୁହେଁ ସାମ୍ନା ସାମ୍ନି ବସି ଥିଲୁଁ । ଖରାଟା ତେରଛା ଭାବରେ ମୋ ମୁହଁରେ ଅଧେ ଏବଂ ତାଙ୍କ ମୁହଁରେ ପୂରା ପଡୁଥିଲା । ଆଉ ଟିକିଏ ପରେ ସୂର୍ଯ୍ୟଟା ବୁଡ଼ିଯିବ । ହେଇ, ସେ ପାଖରେ ଅଳ୍ପ ଉଚ୍ଚର ପାହାଡଟା ଆଉ କିଛି ସମୟ ପରେ ସୂର୍ଯ୍ୟଙ୍କୁ ପୂରା ଢ଼ାଙ୍କି ଦେବ ।

ଖରାଟା ତାଙ୍କ ମୁହଁରେ ସିଧା ପଡ଼ିଲେ ସେ ମୁହଁ ବୁଲେଇ ନିଅନ୍ତି କମ୍ଵା ଖଣ୍ଡେ ଇଂରାଜୀ ଖବରକାଗଜ ମୁହଁ ଉପରକୁ ଟେକି ଦିଅନ୍ତି ।

ଏତେବେଳ ଯାଏ ମୁଁ ଖଣ୍ଡିଏ ଇଂରାଜୀ ପତ୍ରିକାରେ ମୁହଁ ପୋତି ବସିଥିଲି । ସେଥିରେ ମନଟାକୁ ପୂରା ଲଗେଇ ଦେଇଥିଲି । କିନ୍ତୁ ବିଜୟୱାଡା ଷ୍ଟେସନରେ ସେ ମୋ ସାମ୍ନା ବର୍ଥକୁ ଆସିଲା ପରଠୁଁ ମୋର ଏକାଗ୍ରତାରେ ଟିକିଏ ଗୋଳମାଳ ସୃଷ୍ଟି ହେଇଚି । ତାଙ୍କ ନାଆଁ ବୋଧେ ୱେଟିଂ ଲିଷ୍ଟରେ ଥିଲା ।

ମାନ୍ଦ୍ରାଜ୍ - ହାଓଡ଼ା କରମଣ୍ଡଳ ଏକ୍ସପ୍ରେସଟା ବିଜୟୱାଡା ଷ୍ଟେସନକୁ କେତେବେଳୁ ପଛରେ ପକେଇ ଅନେକ ଆଗକୁ ଆସିଗଲାଣି ।

ମୁଁ ମୋ ପତ୍ରିକା ଠିକ୍ ଭାବେ ପଢୁ ନଥିଲି କି ତାଙ୍କୁ ମଧ କେତେବେଳେ ସିଧା ସଳଖ ଦେଖୁ ନଥିଲି । ତେବେ, ଯେତେବେଳେ ତାଙ୍କୁ ଦେଖୁଥିଲି, ମୋତେ ଲାଗୁଥିଲା, ତାଙ୍କ ଆଖିଟା କେମିତି ଫାଙ୍କା ଫାଙ୍କା ଲାଗୁଚି । ସେ ବେଶି ସମୟ ବାହାରକୁ ଦେଖୁଥିଲେ । ଯଦିବା କେତେବେଳେ କମ୍ପାର୍ଟମେଣ୍ଟ ଭିତରକୁ ଦେଖୁଥିଲେ, ମୋ ଉପରେ କି ଅନ୍ୟମାନଙ୍କ ଉପରେ ଆଖି ପକାଉଥିଲେ, ସେ ଆଖିଟା ଯେମିତି ନାଆଁକୁ ମାତ୍ର ବୁଲି ଆସୁଥିଲା । ବାହାରର ଗୋଟାଏ ଦୃଶ୍ୟପଟ ଯେ ତାଙ୍କ ମନ ଭିତରେ ଆଙ୍କି ହେଉଥିଲା, ଏଥିରେ ମୋର ସନ୍ଦେହ ହେଉଥିଲା ।

ସେ ପାଖର ତଳ ବର୍ଥରେ ଥିଲେ ଜଣେ ତରୁଣୀ । ବିବାହିତା । ସେ ତାଙ୍କର ପାଞ୍ଚ ଛଅ ମାସର ଥାକୁଲୁ ଥୁକୁଲୁ ପୁଅକୁ କେ ଳେଇ ପକେଇ ଗେଲ କରୁଥିଲେ ।

ବେଳେ ବେଳେ ସେ ଅନ୍ୟ କାହା ଆଡକୁ ନ ଅନେଇ ନିଜ ଛାତିରୁ ଚଟାପଟ ବୋତାମ ଖୋଲି ଦେଉଥିଲେ ଏବଂ ସାମାନ୍ୟ ଟିକେ ଅଣେଇ ହେଇଯାଇ ପିଲାଟିର ମୁହଁକୁ ସେଠି ଛାକି ଦେଇ ଅନ୍ୟର ଦୃଷ୍ଟିକୁ ଏଡ଼େଇବା ପାଇଁ ଝରକା ବାହାରକୁ ଅନାଉଥିଲେ । ସତକଥା କହିବାକୁ ଗଲେ, ସେଠି ତଳ ଉପର ହେଇ ବର୍ଥମାନଙ୍କରେ ବସିଥିବା ବା ଶୋଇଥିବା ଅବସ୍ଥାରେ ଆମେ ଯୋଉମାନେ ଥିଲୁଁ, ସେମାନେ ଯେ ଏ ଦୃଶ୍ୟ ଦେଖୁନଥିଲେ, ସେ କଥା ନୁହେଁ । କିନ୍ତୁ ମୋ ସାମ୍ନାରେ ବସିଥିବା ଭଦ୍ରମହିଳା, ମୁଁ ଅନେକଥର ଦେଖିଚି, ସେ ଦୃଶ୍ୟ ଆରମ୍ଭ ହେବା ମାତ୍ରେ ସେଆଡୁ ମୁହଁ ଫେରେଇ ନେଉଥିଲେ ।

ତାଙ୍କ ମୁହଁ ଥିଲା ଲମ୍ୱା, ସରୁ ଓ ବେଶ୍ ସଫା । ଆଖି ଦିଟା ବେଶ୍ ଉଜ୍ଜ୍ୱଳ ଏବଂ ତେଜୋଦୀପ୍ତ । ଶରୀରଟା ବି' ମୋଟା ନୁହେଁ କି ପତଳା ନୁହେଁ । ବରଂ ଗୋଟାଏ ଖେଳୁଆଡ଼ର ଚେହେରା ବୋଲି କୁହାଯାଇପାରେ । ସାମ୍ନା ପଟୁ ଏବଂ କାନ ପାଖରେ ବେଶ୍ କେତେଟା ଧଳା ବାଳ ନିଜର ଅସ୍ତିତ୍ୱ ଜାହିର କରୁଥିଲେ ମଧ ତାଙ୍କ ବୟସରେ ମହଳଣ ପଡ଼ି ଆସିଚି ବୋଲି, ଖୁବ୍ ବେଶି ଚିନ୍ତା ନ କଲେ, ଜଣା ପଡୁ ନଥିଲା । ସେ ତାଙ୍କର ସରୁ ବେକଟା ଟେକିଦେଲା ବେଳେ ବୟସର ଚାପକୁ ବହନ କରି ପାରୁ ନଥିବା ସେ ନରମ ମାଂସ ଉପରେ ସାମାନ୍ୟ କେତେଟା କୁଞ୍ଚ ସୃଷ୍ଟି ହେଉଥିଲା । ତେବେ, ଏ ସବୁ କଥାକୁ ଲକ୍ଷ୍ୟ କଲାପରେ ଜଣା ପଡ଼ିଯାଉଥିଲା ଯେ ଦିନେ ସେ କନାରେ କେତେ କର୍ପୂର ଥିଲା ।

ବିଜୟଓ୍ୱାଡା ଷ୍ଟେସନରୁ ମୁଁ କିଣିଥିବା ଇଂରାଜୀ ପତ୍ରିକାଟିରେ ହଠାତ୍ ଯେମିତି ଆଉ କିଛି ପଢ଼ିବାର ନାହିଁ ବୋଲି ମୋତେ ଲାଗିଲା । ଆରେ, କୋଡ଼ିଏ ଟଙ୍କା ଦେଇ ପତ୍ରିକାଟି କିଣିଲି, ଅଥଚ ଏତେ ଶୀଘ୍ର ସରିଗଲା ? ଆଜିକାଲି ଆଉ ପତ୍ରିକା ସମ୍ପାଦକମାନେ ଚମକ ସୃଷ୍ଟି କରୁଥିବା ଲେଖା ଛାପୁ ନାହାନ୍ତି ବୋଧେ । ମୁଁ ଶେଷ ପୃଷ୍ଠାକୁ ଚାଲିଗଲି । ସେଠି ବି କିଛି ନାହିଁ । ପୁଣି ଓଲଟେଇଲି । ବେକ୍ କଭରର ବିଜ୍ଞାପନଟିରେ ଆଖି ଲାଖିଗଲା । ଗୋଟାଏ ଗୁଣ୍ଡଦୁଧ କମ୍ପାନୀର ବିଜ୍ଞାପନ । ମାଆ ଛୁଆକୁ କୋଳରେ ରଖି ଗେଲ କରୁଚି । ଆଉ ପିଲାଟା ଏମିତି ହୃଷ୍ଟପୁଷ୍ଟ ହେଇଚି ଯେ ଯେ କୌଣସି ବେବି ଶୋ'ରେ ପ୍ରଥମ ପୁରସ୍କାର ନିଶ୍ଚୟ ପାଇବ । ମଲ୍‌ଟି କଲର୍‌ର ଛବିଟା ଆଖିକୁ ଟାଣି ନେଉଚି ।

ମୁଁ ପୁଣି ସେ ପାଖ ବର୍ଥରୁ ମୋ ସମାନ୍ତା ବର୍ଥ ଯାଏ ଦେଖିନେଲି । ଏବେ ସେମାନଙ୍କ ଆଖି ମୁଁ ଧରିଥିବା ପତ୍ରିକା ଉପରେ । ସେମାନେ ମୋ ପାଖରେ ଧରା ପଡ଼ିଗଲା ମାତ୍ରେ ନିଜକୁ ଅପରାଧୀ ମଣେକରି ଆଖି ଫେରେଇ ନେଲେ । ଏଥର

ଦେଖିଲି, ସାମ୍ନା ବର୍ଥର ଭଦ୍ର ମହିଳାଙ୍କ ଆଖି ଦିଟା ଯେମିତି ପାଖରେ ମାଆ ନ ଥିବା ଗୋଟାଏ ହତାଶ ଛେଳିଛୁଆର ଆଖି ପରି ଦେଖାଯାଉଚି ।

ମୁଁ ଏଥର ସେ ଇଂରାଜୀ ପତ୍ରିକାଟି ତଳେ ଥୋଇଦେଇ ଖଣ୍ଡେ ଓଡ଼ିଆ ପତ୍ରିକା ତଳୁ ବାହାର କଲି ଏବଂ ତାର ସୂଚୀପତ୍ର ଦେଖି କୋଉ ବିଷୟଟା ପଢ଼ିଲେ ବିରକ୍ତିକର ରେଳଯାତ୍ରାଟା ବାଧିବନି, ସେଇଟାକୁ ଖୋଜିବାକୁ ଲାଗିଲି । ପତ୍ରିକାଟି କୌଣସି ଗୋଟାଏ ବିଶେଷ ସଂଖ୍ୟା ଥିବାରୁ ତାର ସୂଚୀପତ୍ର ମଧ ଖୁବ୍ ଲମ୍ବା ଥିଲା । ଏଥର ମୁଁ ଲକ୍ଷ୍ୟ କଲି, ସେ ମୋ ଆଡ଼କୁ ସିଧାହୋଇ ଅନେଇଚନ୍ତି । ମୋ ଆଖିରେ ତାଙ୍କ ଆଖି ପଡ଼ିଯିବା ମାତ୍ରେ ସେ ମୋତେ ପଚାରିଲେ, ଆପଣ ଓଡ଼ିଶା ଯାଉଚନ୍ତି ?

ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଅନେକ ଦୂରରେ ଥିବା ଜଣେ ଭଦ୍ରମହିଳା ହଠାତ୍ ଆସି ମୋ ପାଖରେ ପହଞ୍ଚି ଯାଇଚନ୍ତି ବୋଲି ମନେ ହେଲା । ବୋଉଡ଼ମ୍‌ର ଲୁହାର କବାଟଟା ହଠାତ୍ ଖୋଲି ହେଇଗଲା । ଆଗରୁ କୌଣସି ସୂଚନା ନ ଦେଇ ଜେଲ୍ ଗେଟ୍ ହଠାତ୍ ଖୋଲିଗଲା ପରେ, କଏଦୀମାନେ ଯେମିତି ହୁଅନ୍ତି, ମୁଁ ସେମିତି ହେଲି । କେମିତି ଗୋଟାଏ ବିହ୍ୱଳତା ହଠାତ୍ ମୋତେ ଆବୋରି ପକେଇଲା । ମୁଁ କହିଲି, ମୁଁ ଭୁବନେଶ୍ୱର ଯାଉଚି ।

କିନ୍ତୁ ଯଦି କିଛି ମନେ ନ କରନ୍ତି, ତେବେ ଗୋଟିଏ କଥା ପଚାରିବି । ସେ ନିଜ ବିଛଣାରେ ସଜାଡ଼ି ହେଇ ବସିଲେ ଏବଂ ତକିଆକୁ କୋଳରେ ରଖି ମୋ'ଠୁ ଉତ୍ତର ଆଶାରେ ମୋତେ ଅନେଇଲେ ।

''ଆରେ ଏଥିରେ ମନେ କରିବାର କ'ଣ ଅଛି ? କହନ୍ତୁ ।'' ବନ୍ଧୁତାର ହାତଟା ଯେତେବେଳେ ଆପେ ଆପେ ମୋ ଆଗରେ ନିମନ୍ତ୍ରଣ ପତ୍ରଧରି ଠିଆ ହେଇ ଯାଉଚି, ମୁଁ ମନା କେମିତି କରନ୍ତି ?

ସେ କହିଲେ, ମୁଁ ଆପଣଙ୍କୁ ଆଗରୁ ଦେଖିଚି ବୋଲି ମନେ ହେଉଛି । କିନ୍ତୁ କୋଉଠି ଦେଖିଚି, ମନେ ପକେଇ ପାରୁନି । କେତେବେଳୁ ସେମିତି ଏକ ଧାରଣା ମୋ ଭିତରେ ଥିଲେ ମଧ ମୁଁ ସାହସ କରି ପଚାରି ପାରୁ ନଥିଲି । ଆପଣ ଓଡ଼ିଆ ବୋଲି ଜାଣିଲା ପରେ ମୋର ସେ ଧାରଣାଟା ଆଉ ଟିକିଏ ଦୃଢ଼ ହେଲା ।

ଭଦ୍ରମହିଳା ଯେ ଏତେ ଶୀଘ୍ର ମୋର ଏତେ ପାଖରେ ହେଇଯିବେ ଏ ଧାରଣା ମୋର ମୋଟେ ନଥିଲା । ମୁଁ କିନ୍ତୁ ଆଗରୁ ତାଙ୍କୁ କୋଉଠି ଦେଖିଚି, ଏ କଥା ମୋଟେ ମନେ ପକେଇ ପାରୁ ନଥିଲି । ମୁଁ ନିଜକୁ ଧିକ୍କାରୁଥିଲି । ଇସ୍, କେତେ ବୋକାମ ମୁଁ ? କେମିତି ମୁଁ ଏତେ ବଡ଼ ବିଶେଷ ଘଟଣାଟିକୁ ଭୁଲି ଯାଇ ପାରୁଚି ? ମୋର ମନେ ହେଲା, ଏମିତି ଜଣେ ଭଦ୍ରମହିଳାଙ୍କୁ ଥରେ ଦେଖିଥିଲେ, ଥରେ କେବେ ପଦେ ଦି'ପଦ କଥା

ହେଇଥିଲେ, କେବେ କି ଭୁଲିବାର ନଥିଲା । ଜୀବନର ମହାର୍ଘ ମୁହୂର୍ତ୍ତଗୁଡ଼ିକ ତ ଏମିତି ଭାବରେ ମନର ନିବୁଜ କୋଠରି ଭିତରେ ପଶି ଭିତରୁ କବାଟ ବନ୍ଦ କରି ଦିଅନ୍ତି ।

ଆପଣ ରେଭେନ୍‌ସାରେ ପଢ଼ୁଥିଲେ କି ?

ମୁଁ ମୁଣ୍ଡ ଟୁଙ୍ଗାରିଲି ।

'ଚିତ୍ରଗ୍ରୀବ' ଡ୍ରାମାରେ ଆପଣ ସେ କମେଡିଆନ୍ ରୋଲ୍‌ଟା କରିଥିଲେ ବୋଧେ ?

ମୋ ଆଖି ବିସ୍ଫାରିତ ହେଇଗଲା । ମୋର ମନେ ପଡ଼ିଲା ମୁଁ ସେ ବର୍ଷ ଆଇ.ଏ. ପଢ଼ୁଥାଏଁ । ବେଷ୍ଟ କମେଡ଼ିଆନ ହିସାବରେ ମୁଁ ସେ ବର୍ଷ କଲେଜରେ ନୁହେଁ ଆଖପାଖରେ ମଧ୍ୟ ମୋ ନାଆ ବଦଳି ଯାଇ 'ପୁରନ୍ଦର' ହେଇଗଲା ।

କଥା ଯୋଡ଼ି ସେ କହିଲେ, 'ମୁଁ, ସେ ବର୍ଷ ଫିଫ୍‌ଥ ଇଅରରେ ପଢ଼ୁଥାଏଁ । ଆପଣ ରୁନୁ ମହାନ୍ତି ନାଆଁ ଶୁଣିଥିବେ ।'

ମୁଁ କୃତକୃତ୍ୟ ହେଇ ପଡ଼ିଲି । ଆପଣ ରୁନୁ ମହାନ୍ତି ? ମାନେ ରୁନାପା ?

'ଏବେ ପଟ୍‌ନାୟକ' । ସେ କହିଲେ ।

୬୭ରୁ ୯୭ । ଦୀର୍ଘ ତିରିଶ ବର୍ଷ ଭିତରେ, ଯାତ୍ରୀଟିଏ ଚଳନ୍ତା ଟ୍ରେନ୍‌ରୁ ଦେଖୁଥିବା ଗଛଗୁଡ଼ିକ ପଛକୁ ଦଉଡ଼ି ପଳେଇଲା ପରି, ଦୃଶ୍ୟପଟ ସବୁ ଅପସରି ଗଲା । ସେତେବେଳେ ରୁନୁ ମହାନ୍ତିଙ୍କୁ ସମସ୍ତେ 'ମଶାଲ ମହାନ୍ତି' ବୋଲି କହୁଥିଲେ । ସବୁ ଧର୍ମଘଟର ଆଗରେ ସେ । କୋଉ ଗୋଟିଏ ବିପ୍ଳବୀ ସଂଗଠନର ସେ ଜଣେ ପ୍ରଥମ ଧାଡ଼ିର ନେତ୍ରୀ । ତାଙ୍କର ଜ୍ୱାଳାମୟୀ ଭାଷଣ ଦେହରେ ନିଆଁ ଲଗେଇ ଦଉଥିଲା । ଏମିତିକି ଅନେକ ଥର ହେଇଚି, କଲେଜ ଗେଟ୍ ସାମ୍‌ନାରେ ଠିଆ ହେଇ ସେ ମାଇକରେ ଗୋଟିଏ ଡାକ ମାରିଦେଲେ ପାଞ୍ଚମିନିଟ୍ ଭିତରେ କ୍ଲାସରୁମ୍ ସବୁ ଖାଲି ହେଇଯାଇଚି । 'ମଶାଲ' ଡାକ ଦେଲାଣି କହିଲେ କଲେଜ କମ୍ପେକ୍ସ ଭିତରେ କମ୍ପନ ସୃଷ୍ଟି ହେଉଥିଲା । ସବୁ ଲେକ୍‌ଚରର ତାଙ୍କୁ ଭୟ କରୁଥିଲେ ଯେତିକି, ସ୍ନେହ ମଧ୍ୟ କରୁଥିଲେ ତାଠୁ ଅନେକ ବେଶି । କାରଣ ରୁନୁ ମହାନ୍ତି କେବେ କ୍ଲାସରେ ଦ୍ୱିତୀୟ ହେଇ ନାହାନ୍ତି ।

ମୁଁ କିନ୍ତୁ ତାଙ୍କୁ ଦେଖିବାର ସୁଯୋଗ ଅନେକ କମ୍ ପାଇଚି । କଲେଜକୁ ଆସିବାର ମାତ୍ର ବର୍ଷକ ପରେ ସେ କଲେଜରୁ ବିଦାୟ ନେଲେ । ବିଦାୟ ନେଲେ ମାନେ ତାଙ୍କୁ କଲେଜରୁ ବାହାର କରିଦିଆଗଲା । ତାଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା ଅନେକ । ପ୍ରିନ୍ସିପାଲଙ୍କୁ ଘେରାଓ କରିବା, କଲେଜ ଷ୍ଟାଫଙ୍କୁ ମାରପିଟ୍ କରିବା, ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଘେରାଓ କରି ତାଙ୍କୁ ଅଫିସରେ ଅଟକ ରଖି ଗାଳି ଗୁଲଜ କରିବା, ମନ୍ତ୍ରୀଙ୍କ ଗାଡ଼ିକୁ

ପଥରମାରି ଭାଙ୍ଗିବା, ଏ ସବୁ ଅଭିଯୋଗକୁ ପ୍ରିନ୍ସିପାଲ ଅନେକ ରାଜନୈତିକ ଚାପ ସତ୍ତ୍ୱେ ସହ୍ୟ କରି ଯାଉଥିଲେ । ଖାଲି ପ୍ରିନ୍ସିପାଲ ନୁହନ୍ତି, ବହୁ ଅଧ୍ୟାପକ ମଧ୍ୟ ରୁନୁକୁ ଖୁବ୍ ଭଲ ପାଉଥିଲେ ବୋଲି ତାଙ୍କ ବିରୁଦ୍ଧରେ ଯେ କୌଣସି ଅଭିଯୋଗ ଆସିଲେ ସେମାନେ ପ୍ରିନ୍ସିପାଲଙ୍କୁ ଆହୁରି ସହନଶୀଳ ହେବାକୁ ଉପଦେଶ ଦେଉଥିଲେ ।

ତାର କାରଣ, ରୁନୁଙ୍କ ବୈପ୍ଳବିକ ଚରିତ୍ର ଯେତିକି ଥିଲା, ତା ଅପେକ୍ଷା ଆହୁରି ଉଜ୍ଜ୍ୱଳ ତଥା ମହିମାନ୍ୱିତ ଥିଲା ତାଙ୍କ ବ୍ୟକ୍ତିଗତ ଚରିତ୍ର । କଲେଜ ତରଫରୁ ଯେ କୌଣସି ସେବା କାମରେ ସେ ପ୍ରଥମେ ବାହାରି ପଡୁଥିଲେ ଏବଂ ନିଜ ଦଳଟିଏ ଗଢ଼ି ଦୁର୍ଗମ୍ୟ ଅଞ୍ଚଳକୁ ଚାଲି ଯାଉଥିଲେ । ଏଥିରେ ସେ ମୋଟେ ହେଳା କରୁନଥିଲେ ବୋଲି ବହୁ ରାଜନୈତିକ ବ୍ୟକ୍ତି ମଧ୍ୟ ଅନେକ ଚେଷ୍ଟା କରିଥିଲେ ତାଙ୍କୁ ନିଜ ଆଡ଼କୁ ନେଇ ଯିବାକୁ । ରୁନୁ କିନ୍ତୁ ତାଙ୍କ ନିଜ ରାସ୍ତାରୁ ମୋଟେ ହଟି ନଥିଲେ । ସେ ଥିଲେ ଅଟଳ ମହାମେରୁ ।

ଦିନକର ଘଟଣା । କଲେଜ କେମ୍ପସ ଭିତରେ ଉତ୍ତର-ପଶ୍ଚିମ କୋଣକୁ ପାଚେରୀ କଡ଼ରେ ଥିଲା ଗୋଟିଏ ଛୋଟ ଓସ୍ତଗଛ । ସେ ଗଛଟି କିଏ ଓ କେବେ ଲଗେଇଥିଲା, କାହାକୁ ଜଣା ନଥିଲେ ମଧ୍ୟ ହଷ୍ଟେଲ ପୂଜାରୀ ଜଗନ୍ନାଥ କିନ୍ତୁ ସେ ଗଛଟିକୁ ଲଗେଇଥିଲା ବୋଲି ଦାବି କରେ । ଖରାଦିନେ ସଂଜ ହେଲେ ସେ ଗଛମୂଳେ ଜଗନ୍ନାଥ ଖଣ୍ଡେ ଦଉଡ଼ିଆ ଖଟ ପଂକାଇ ଶୁଏ ଏବଂ ତାର ପିଲା ଦୁଇଟାଙ୍କୁ ପାଠ ପଢ଼ାଏ । କାରଣ ସେଇ ପାଖରେ ହିଁ ପାଚେରୀକୁ ଲାଗି ସେ ଗୋଟିଏ ଛୋଟ ଚାଳଘର କରି ସେଥିରେ ପରିବାର ନେଇ ରହୁଥାଏ । ବେଳେ ବେଳେ ଜଗନ୍ନାଥ ସେଇ ଗଛମୂଳରେ ତାର ସାଙ୍ଗସାଥୀଙ୍କୁ ନେଇ ତ୍ରିନାଥ ମେଳା, ସତ୍ୟନାରାୟଣ ପାଲା ଏବଂ ଗାୟତ୍ରୀ ହୋମ ଇତ୍ୟାଦି ମଧ୍ୟ କରେ ଏବଂ ସେଦିନ ମଧ୍ୟ ରାତ୍ରିଯାଏ ପାଲା ଓ ଢ଼ୋଲକି ମାଡ଼ରେ ସେ ଅଞ୍ଚଳ କମ୍ପମାନ ହୁଏ ।

ରୁନୁକୁ ଏ କଥା ଅସହ୍ୟ ହୁଏ । ସେ ଜଗନ୍ନାଥକୁ କେତେଥର ଡାକି କହିଛି, ତୁ ପୂଜା କରୁଚୁ କର, ସେଥିରେ କାହାରି କିଛି ଯାଏ ଆସେନି । କିନ୍ତୁ ତୁ ରାତିଯାକ ଯେମିତି ଖୋଳ ଓ ଖଞ୍ଜଣୀରେ ଏ ଅଞ୍ଚଳ କମ୍ପଉଚୁ, ସେଥିରେ ଆମେ ପଢ଼ାପଢ଼ି ତ ଦୂରର କଥା, ରାତିରେ ଟିକେ ଶୋଇ ମଧ୍ୟ ପାରୁନୁ ।

ଜଗନ୍ନାଥ ତାଙ୍କୁ କୁଆଡ଼େ ମୁହଁରେ କିଛି ନ କହିଥିଲେ ମଧ୍ୟ ପଛରେ ଅନ୍ୟମାନଙ୍କୁ କହିଥିଲା ଯେ, ଧର୍ମ କାମରେ କିଏ ବାଧା ଦିଏ ? ଆମ କୀର୍ତ୍ତନ ଓ ପାଲା ଶୁଣିବା ପାଇଁ ପାଚେରୀ ସେପଟେ ଯେମିତି ଭିଡ଼ ଜମିଯାଏ, ଦେଖିଚ ତ ? ହାତଚକିରେ ସାମାନ୍ୟ ଟିକିଏ ପ୍ରସାଦ ପାଇବା ପାଇଁ ପାଚେରୀ ସେ ପଟୁ କେତେ ହାତ ଲମ୍ବିଆସେ,

ସେକଥା ତ ପ୍ରିନ୍ସିପାଲ ନିଜେ ଦେଖି ପ୍ରଶଂସା କରିଚନ୍ତି । ଏ ସବୁ ତ ଭାଗ୍ୟରେ ଥିଲେ ମିଳେ । ରୁନୁ ଯଦି ବିଧର୍ମୀ ହେଇ ନ ଥାଆନ୍ତେ, ତେବେ ସେ ଏମିତି କହି ଥାଆନ୍ତେ ? କୀର୍ତ୍ତନ, ପ୍ରବଚନ ସବୁ କାନରେ ପଡ଼ିଲେ ମା'ଲା ମଣିଷ ଉଠି ବସୁଚି. ଆଉ ଇଏ କହୁଚନ୍ତି ରାତିରେ ଶୋଇ ହଉନି । ଧର୍ମଛଡ଼ା କଥା ନୁହେଁ ଇଏ ?

ସେଦିନ କିନ୍ତୁ ରୁନୁ ମହାନ୍ତି ଆଉ ମୋଟେ ସହି ପାରିଲେନି । ଯୋଉ ଦିନ ସେ ଶୁଣିଲେ ଯେ ଜଗନ୍ନାଥ ସେ ଓସ୍ତଗଛ ମୂଳରେ କୁଆଡ଼େ ଗୋଟାଏ ମାଙ୍କଡ଼ା ପଥରର ମୂର୍ତ୍ତି ତିଆରି କରିଆଣି ସ୍ଥାପନା କରି ଦେଇଚି ଏବଂ ଅନେକ କଲେଜ ଷ୍ଟାଫ୍‌ଙ୍କ ସହିତ ଅଧ୍ୟାପିକା, ଅଧ୍ୟାପକଙ୍କୁ ଡାକି ଭୋଗ ମଧ ଖୁଏଇଚି । ସେଦିନ ଆଉ ରୁନୁ ମହାନ୍ତିଙ୍କୁ ଦେଖେ କିଏ । ସେ ସଙ୍ଗେ ସଙ୍ଗେ ଦଳେ ଛାତ୍ରଙ୍କୁ ନେଇ ସେ ଓସ୍ତଗଛକୁ କାଟି ଉଡେଇ ଦେଲେ ଏବଂ ମୂର୍ତ୍ତିଟାକୁ ପାଚେରୀ ସେ ପାଖକୁ ଫୋପାଡ଼ି ଦେଇ ଜଗନ୍ନାଥକୁ ଡାକି କହିଲେ, ଏଇ ଜାଗାଟାରେ ନୂଆ ଲାବୋରେଟରୀ ବିଲଡ଼ିଂ ତିଆରି ହେବାର କଥା ହେଇଚି ଏ କଥା ଜାଣିଲା ପରେ ତୁ କେମିତି ଏଠି ଠାକୁର ବସେଇଲୁ ? ଶୁଣା ଯାଇଥିଲା, ରୁନୁ କୁଆଡ଼େ ନିଜେ ଜଗନ୍ନାଥକୁ ଧରି ତା ଦିହଯାକ ବିଛୁଆଟି ତାଳକୁ ଝାଡୁପରି କରି ପିଟିଥିଲେ ।

ଏ ଘଟଣା ପରେ କଥାଟା କୋଉ ଆଡ଼କୁ ଯାଇଥିଲା, ତାହା ଏକ ଭିନ୍ନ ଇତିହାସ । କିନ୍ତୁ ଏ ଘଟଣା ସହିତ ଅନ୍ୟ ସବୁ ଘଟଣାକୁ ଯୋଡ଼ି ରୁନୁ ମହାନ୍ତିଙ୍କୁ ସେଥର କଲେଜରୁ ବହିଷ୍କାର କରାଯାଇଥିଲା । ପରେ ପରେ ପୁଲିସ ତାଙ୍କ ନିଆଁରେ ଅନେକ ଗୁଡ଼ିଏ କେଶ ମଧ ଖଞ୍ଜି ଦେଇଥିଲେ ।

ମୁଁ ତାଙ୍କୁ ଦୁଇହାତ ଯୋଡ଼ି ନମସ୍କାର କରି କହିଲି, ଅନେକ ଦିନ ପରେ ଆପଣଙ୍କୁ ଦେଖୁଚିତ, ତା' ଛଡ଼ା ହଠାତ୍ ଆପଣଙ୍କୁ ଏଠି ଦେଖିବି ବୋଲି କଳ୍ପନା ମଧ କରି ନଥିଲି ।

ସେ ହଠାତ୍ 'ଆପଣରୁ'. 'ତମେ'କୁ ଓହ୍ଲେଇ ଆସି କହିଲେ ତମେ ତ ସମସ୍ତଙ୍କ ଭିତରେ ଗୋଟାଏ ବ୍ୟତିକ୍ରମ ଦେଖୁଚି । ତମଠୁ ଅନେକ ନୂଆ ଛାତ୍ର, ଯୋଉମାନେ ସେତେବେଳେ ହାଇସ୍କୁଲରେ ପଢୁଥିଲେ, ସେମାନେ ମଧ ଏବେ ଦେଖିଲେ ଚିହ୍ନୁଛନ୍ତି, ଆଉ ତମେ....

ମୁଁ କହିଲି, ମୁଁ ବୁଢ଼ା ହେଇ ଗଲିଲି କିନା । ହେଇ ଦେଖୁ ନାହାନ୍ତି, ଗୋଟିଏ ବୋଲି ବାଳ ନାହିଁ । ଦୁଇଟା ଝିଅର ବାପା । ତେଣୁ ବେଳେ ବେଳେ ମତିଭ୍ରମ ଘଟୁଛି ।

ସେ ହୋ ହୋ ହେଇ ହସିଲେ । କହିଲେ, ଠିକ୍ ଠିକ୍ ଏବେ ବି ତମେ କମେଡ଼ିଆନ୍ ଅଛ ଦେଖୁଚି । ପିଲାମାନେ କେତେବଡ଼ ହେଲେଣି ?

ସମସ୍ତେ କଲେଜରେ । ଜଣେ ପ୍ଲସ୍ ଥ୍ରୀ ଫାଇନାଲ ଆଉ ଜଣେ ପ୍ଲସ୍ ଟୁରେ । ଯା ହେଲେବି ଦୁଇଟା କଲେଜ ଗୋଇଙ୍ଗ ଝିଅର ବାପା କିନା ।

ଆରେ ତମେ ଏମିତି କାହିଁକି କହୁଚ ? ଝିଅଟା ତୁମକୁ ଖରାପ ଲାଗୁଚି ?

ମୁଁ କହିଲି, ସେ କଥା ନୁହେଁ । ମୋ ପରି ଗୋଟାଏ ଦ୍ୱିତୀୟ ଶ୍ରେଣୀ ଗେଜେଟ୍ଡ ପାହ୍ୟାର ଲୋକ କେତେ ସଞ୍ଚି ପାରିବ ଯେ ? ବାହାଘର ପାଇଁ କୋଉଠୁ ଆଣିବି ?

ସେ କହିଲେ, ତୁମେ ସେମିତି ମୋଟେ ଚିନ୍ତା କରନା । ସବୁବେଳେ ଯେ ବାହାଘର ପାଇଁ ଟଙ୍କା ଦରକାର ହୁଏ, ଏହା ମଧ ଭୁଲ କଥା । ଦିନ ବଦଳୁଚି । ବଦଳିବ । ଏବେ ତ ଏମିତି ହେଲାଣି, ହଠାତ୍ ପୁଅ କି ଝିଅ, ସାଥିରେ ରାତିରେ ଜଣକୁ ନେଇ ଘରକୁ ଆସି ବାପାମାଆଙ୍କୁ କହିବେ, ଆମକୁ ଗୋଟାଏ ସେପାରେଟ୍ ରୁମ୍ ଦିଅ । ଆମେ ବାହାହେଇ ସାରିଛୁଁ ।

ମୁଁ କହିଲି, ତାକୁ ସ୍ୱାଗତ କରିବା କଥା । ମୁଁ ଏଥିରେ ଖୁସି । କିନ୍ତୁ ଥରେ ଘରୁ ଯାଇ ଆଉ ଥରେ ଯେମିତି ଫେରି ନ ଆସନ୍ତୁ । ଫେରି ଆସି ଯଦି କହିବ, ନାଇଁ ଆମେ ପୁଣି ଏ ମାସ ସେପାରେସନ ପାଇଁ ଏପ୍ଲାଏ କରି ଦେଇଛୁଁ, ସେତେବେଳେ ସେ ଦାୟିତ୍ୱ କିଏ ନେବ ?

ମୁଁ ଦେଖିଲି ରୁନାପା ଟିକିଏ ଗମ୍ଭୀର ହେଇଗଲେ । ତାଙ୍କୁ ଗମ୍ଭୀର ହେବା ଦେଖି ମୁଁ ଟିକିଏ ଶଙ୍କିଗଲି । ସେ କଲେଜରୁ ବାହାରି ଗଲା ପରେ ମୁଁ ଆଉ ତାଙ୍କୁ ଦେଖିନି କି ତାଙ୍କ କଥା କିଛି ଜାଣିନି । ସେ କେବେ ବିବାହ କଲେ, କି କେତୋଟି ପିଲାପିଲି ଏବଂ କେଡ଼େବଡ଼, ସେ ସବୁ କଥା କିଛି ଜାଣି ନଥିଲାବେଳେ ଏମିତିକା ମନ୍ତବ୍ୟ ଦେବାଟା ଉଚିତ ହେଲାନାହିଁ । ସେ ପଢୁଥିଲା ବେଳେ ଯେମିତିକା ଥିଲେ, ସେଥିରେ ତାଙ୍କୁ କେହି ବାହାହେଇ ଯେ ସୁଖି ହେଇଥିବ, ଏମିତିକା ଗୋଟାଏ ଧାରଣାକୁ ମଧ ମୁଁ ମୋ ମନ ଭିତରେ ଆଶ୍ରୟ ଦେଇ ପାରୁ ନଥିଲି । କିନ୍ତୁ ସେତେବେଳେ ତାଙ୍କୁ ଦେଖିବା ମାତ୍ରେ ଯେ କୌଣସି ଯୁବକ ଯେ ବିବାହ କରିବାକୁ ଅର୍ଜୁନ ପରି ମାଛର ଆଖିକୁ ଲାଖବିନ୍ଧି ଜିଣିବାର ପ୍ରବଳ ପ୍ରୟାସ କରି ନଥିବ, ସେ କଥା କିଏ କହିବ ? ବରଂ ସେଥିପାଇଁ ବହୁ ଯୁବରାଜ ରାତି ଅନିଦ୍ରା ରହି କ୍ୟୁରେ ଠିଆ ହେବାର ଦୈହିକ ଓ ମାନସିକ ଯନ୍ତ୍ରଣାକୁ ଆପଣାର କରିବାକୁ କଦାପି କୁଣ୍ଠାବୋଧ କରି ନଥିବେ ।

କିନ୍ତୁ ପରବର୍ତ୍ତୀ କାଳରେ.....?

ରୁନାପାଙ୍କ ଘଟଣାବହୁଳ ଜୀବନ ଭିତରେ ସେମିତି କିଛି ହେଇ ନାହିଁତ ? କେହି ଯୁବରାଜ ମାଛ ଆଖିରେ ତୀରମାରି ଗଡ଼ ଜିଣିଚି ବୋଲି ମନେ କରି ମହାର୍ଘ୍ୟ ମହୋଲ୍ଲାସ ଭିତରେ ନିଜର ପକ୍ଷୀରାଜ ଘୋଡ଼ାରେ ବସେଇ ରୁନାପାଙ୍କୁ ନେଇ ଆସିଲା

ପରେ ପରେ ଯଦି ଦେଖିଥିବ ଯେ ରୁନାପା ରୁନାପା ନୁହେଁ, ଏକ ଜ୍ୱଳନ୍ତ ଅଗ୍ନିଶିଖା, ତେବେ ? ତେବେ, କଅଣ ହେଇଥିବ ?

ମୁଁ ଦେଖିଲି, ସେ ଦିନର ଗୌରବୋଜ୍ଜ୍ୱଳ କପାଳ ତାଙ୍କର ଏବେ ସୁଷମା ସୌନ୍ଦର୍ଯ୍ୟରେ ଉଦ୍‌ଭାସିତ ହେଇ ଉଠୁଥିଲେ ବି କାହିଁ ସେଠି ତ ନାରୀର ମହିମା ମର୍ଯ୍ୟାଦାକୁ ଦ୍ୱିଗୁଣିତ କରିବାକୁ ସିନ୍ଦୂର ଟିପାଟିଏ ସ୍ଥାନ ପାଇ ନାହିଁ। ଆଉ ତାଙ୍କର ସେ ବିପ୍ଳବର ବହ୍ନିରେ ଦାଉ ଦାଉ ଜଳିଥିବା ହାତ ଆଜି ରକ୍ତ ଲାଲ ଦେଖାଯାଉଥିଲେ ବି ଶଙ୍ଖା କି କଦୁରୀ ଖଣ୍ଡେ ଲୁଚି ଛପି ରହି ଯାଇନି । ତେବେ କଅଣ ରୁନାପା ଆଜିସୁଦ୍ଧା ତାଙ୍କର ବୈପ୍ଳବିକ ଚରିତ୍ରଟିକୁ ବଜାୟ ରଖିଛନ୍ତି ? ବିଜ୍ଞାନର ସଚ୍ଚା ଛାତ୍ରୀଟିଏ କଅଣ ଏବେବି ସେଇ ନୀତି ନିୟମକୁ ଅକ୍ଷରେ ଅକ୍ଷରେ ମାନି ସେ ସବୁକୁ ଦୂରେଇ ଦେଇ ଗୋଟାଏ ମହାନ ଆଦର୍ଶକୁ ପାଥେୟ କରି ନେଇଛନ୍ତି ?

ପୁଣି ଭାବିଲି, ଯଦି ସେମିତି କିଛି ହେଇ ନଥାଏ ? ଯଦି ସେ ଅବସ୍ଥାଚକ୍ରରେ ପଡ଼ି ଜୀବନର ବିପରୀତମୁଖୀ ସ୍ରୋତରେ ପଡ଼ି ଯାଇଥିବେ ? ସେ ଯଦି ସ୍ରୁଅର ଚକା ଭଉଁରୀ ଭିତରେ ପଡି ଅସ୍ତବ୍ୟସ୍ତ ହେଉଥିବେ ?

ମନେ ମନେ ଭାବିଲି, ବଡ଼ ଭୁଲ ହେଇଗଲା ତାଙ୍କ ମନରେ ପ୍ରଚଣ୍ଡ ଆଘାତ ଲାଗିଚି ନିଶ୍ଚୟ । ତାଙ୍କ ମୁହଁର ପରିବର୍ତ୍ତନ ତାହା ହିଁ ସୂଚନା ଦିଏ । ସେ ଆଉ ମୁଣ୍ଡଟେକି ସାମନାକୁ ମୋତେ ଦେଖୁନାହାନ୍ତି । ମୁଁ ହଠାତ୍ ସ୍ୱର ପରିବର୍ତ୍ତନ କରି କହିଲି, କ୍ଷମା କରିବେ । ମୋର କହିବାର ଅର୍ଥ ହେଲା....

ସେ କହିଲେ, ନା ନା ତୁମେ ସେଥିପାଇଁ କିଛି ଭାବନା । ତୁମେ ଯାହା କହୁଚ, ସେଇଟା ସତ କଥା । ସେମିତି ଅନେକ ହେଉଛି । ଏବଂ ଏଇଟା ଅତି ସାଧାରଣ କଥା ହେଲାଣି ଆଜିକାଲି । ବରଂ ମୁଁ ଭାବୁଥିଲି ଏଇ ଫେରି ଆସିବା କଥାଟା । ଯେ କୌଣସି ବାପା ମାଆଙ୍କ ପାଇଁ ଏଇଟା ଗୋଟାଏ ଶକ୍ତ ଧକ୍କା । ନା ଝିଅକୁ ତମେ ଗ୍ରହଣ କରି ପାରିବ ନା ତାକୁ ତୁମେ କବାଟ କିଳି ଦେଇ ପାରିବ ।

ମୁଁ ଆଶ୍ୱସ୍ତ ହେଲି । ଯା ହେଉ ତେବେ, ରୁନାପା ନିଜେ ସେ ସବୁଠାରୁ ଅନେକ ଦୂରରେ । ତାଙ୍କ ଜୀବନରେ ସେମିତି କିଛି ଘଟି ନାହିଁ ବୋଧେ । କିନ୍ତୁ ତାଙ୍କ ପିଲାପିଲିଙ୍କ ଜୀବନରେ ସେମିତି କିଛି ଘଟି ନାହିଁତ ? ରୁନାପା ସେମିତି କିଛି ଅଘଟଣର ଘଟଣା ଭିତରେ ପଡ଼ି ପେଶି ହେଉ ନାହାନ୍ତି ତ ?

ମୋ ମନରୁ ଗୋଟାଏ ସନ୍ଦେହ ଓ ଭୟର ଭୂତ ବିନା ମନ୍ତ୍ରପାଠରେ ଓହ୍ଲାଇ ଯାଇଥିଲେ ମଧ୍ୟ ଆଉ ଗୋଟିଏ ଭୂତ ବେଶ ଆରାମରେ ଆସର ଜମେଇ ବସିଗଲା । ଆଉ ଏକ ବିପଦ, କେମିତି ସେଥିରୁ ବର୍ତ୍ତିବି ? ମୁଁ ସେ ଉପାୟ ମନେ ମନେ ଖୋଜୁଥିଲି ।

ଖୋଳ

''ଆରେ ତୁମେ ଏଠି ? ମୁଁ ତୁମକୁ ଟ୍ରେନ୍‌ଟା ଯାକ ଖୋଜୁଛି ।'' ଜଣେ ଭଦ୍ରଲୋକ ଆସି ଆମ ଦୁଇ ବର୍ଥ ମଝିରେ ଠିଆ ହେଲେ ଏବଂ ତାଙ୍କୁ ପଚାରିଲେ । ରୁନାପା ତାଙ୍କୁ ବସିବା ପାଇଁ ଜାଗା କରି ଦେଇ କହିଲେ ବସ ।

ଗାଡ଼ିଟା ସେତେବେଳକୁ କୌଣସି ଗୋଟାଏ ଷ୍ଟେସନରେ ଠିଆ ହେଇଥାଏ । ଷ୍ଟେସନର ଭିଡ଼ରୁ ଜଣା ପଡୁଥାଏ ବିଶାଖାପାଟଣା ହେବ ବୋଧେ ।

ତମେ କୋଉଠି ଉଠିଚ ? ରୁନାପା ସେ ଭଦ୍ରଲୋକଙ୍କୁ ପଚାରିଲେ ।

ମୁଁ ଏସ୍-୫ରେ । ତୁମେ ଚାଲନା ସେଠିକୁ । ମୁଁ କଣ୍ଡକ୍ଟରକୁ କହି ସେଠି ଗୋଟେ ବର୍ଥ ରଖିଚି ।

ମନେ ମନେ ଚିଡ଼ି ଉଠିଲି ଭଦ୍ରଲୋକଙ୍କ ଉପରେ । କେମିତି ଲୋକ ମ ? ମୋର କହିବାର ଉଦ୍ଦେଶ୍ୟ ହେଉଚି, ସେଠି ସେଇ ମୁହୂର୍ତ୍ତରେ ମୁଁ ମୋଟେ ରୁନାପାଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲି ।

ରୁନାପା ମୋତେ ଟିକିଏ ଅନେଇଲେ ଏବଂ ତାଙ୍କୁ କହିଲେ, ଥାଉ, ଆଉ ବର୍ଥ ବଦଳ କରିବା କ'ଣ ଦରକାର । ରାତି ହେଲାଣି । ଏବେ ଖାଇବାକୁ ମଧ ଅର୍ଡ଼ର ଦେଇ ସାରିଚି । ଖାଇ ସାରିଲେ ତ ଶୋଇବା କଥା । ଭୋର ହେବା ବେଳକୁ ଉହ୍ଲେଇବା ଜାଗା ଆସିଯିବ ।

ମୁଁ ଆଶ୍ୱସ୍ତ ହେଲି ସିନା କିନ୍ତୁ ଭଦ୍ରଲୋକଙ୍କୁ ଜାଣିବାର ଇଚ୍ଛା ମୋ ମନ ଭିତରେ ମୁଣ୍ଡ ଟେକି ଉଠିଲା । ଯଦିଓ ଜାଣୁଥିଲି ଏ ପ୍ରକାର ଇଚ୍ଛାଟା ଅକାରଣ ଓ ଅନାବଶ୍ୟକ । ତଥାପି କେମିତି ଗୋଟେ ସ୍ୱାର୍ଥପର ଭାବେ ସେ ଇଚ୍ଛାଟା ମୋ ଭିତରେ ଜଳୁଥିବା ଚୁଲିର ଗରମ ଦୁଧ ପରି ଆସ୍ତେ ଆସ୍ତେ ଉତୁରି ଉଠୁଥିଲା ।

ଅନ୍ୟ ଦିଗରେ ରୁନାପା ପ୍ରତି ମୋର ଗୋଟାଏ ଅହେତୁକ ଅଭିମାନ ମନ ଭିତରେ ମାଡ଼ି ମାଡ଼ି ପଡ଼ିଲା । ଭାବିଲି, କହି ଦେବି କି, ଆପଣ ଯିବେ ଯଦି ସେଠିକୁ, ଯାଆନ୍ତୁ । ସେ ଯଦି ଆପଣଙ୍କର ଅତି ଆପଣାର, ତାଙ୍କ ସହିତ ଗପିବାକୁ ଆପଣ ମୋଠୁ ବେଶି ଆନନ୍ଦ ପାଇବେ ।

କିନ୍ତୁ ମୁଁ ତାଙ୍କୁ ସେମିତି କିଛି କହି ପାରିଲିନି । କାହିଁକି କହିବାକୁ ଚାହୁଁଥିଲି ଏବଂ କାହିଁକି କହି ପାରିଲିନି, ସେ କଥା ଭାବିଲେ ଆଜି ମଧ ମୋତେ ତାର ସଠିକ ଉତ୍ତର ମିଳେନା ।

ଏଇ କେତେ ମିନିଟ୍ ଭିତରେ ମୋତେ ଲାଗିଲା, ଯେମିତି ରୁନାପା ମୋତେ ମୋଟେ ଜାଣି ନଥିବାର ଛଳନା କରୁଛନ୍ତି । ସେଇ ଭଦ୍ରଲୋକଙ୍କ ସହିତ ସେ ବେଶ

ଆଳାପ ଆଲୋଚନା ଜମେଇ ଦେଲେଣି । ମୁଁ ସେତେବେଳେ ମୋ ପତ୍ରିକାଟିରେ ମନୋନିବେଶ କରିବାକୁ ବିଫଳ ଚେଷ୍ଟା କରୁଥିଲି । ସେମିତି କରିବା ଛଡ଼ା ମୋ ପକ୍ଷେ ଅନ୍ୟ ଉପାୟ ନ ଥିଲା । ପତ୍ରିକାଟି ପଢ଼ିବାକୁ ଚେଷ୍ଟା କରୁଥିଲେ ମଧ୍ୟ ମୁଁ ସେତେବେଳେ ଭାବୁଥିଲି, ରୁନାପା ଅନ୍ତତଃ ପକ୍ଷେ ମୋତେ ସେ ଭଦ୍ରଲୋକଙ୍କ ସହିତ ପରିଚୟଟେ କରେଇ ଦିଅନ୍ତେନି ।

ଦେଖିଲି, ସେମାନେ କଥୋପକଥନରେ ମଗ୍ନ ହେଇଗଲେ । ଅପେକ୍ଷାକୃତ ଅନୁଚ୍ଚ ସ୍ୱରରେ ସେମାନେ କଥା ହେଉଥିଲେ ବୋଲି ସେମାନଙ୍କ କଥାର କିଛି ଅଂଶ କେବଳ ମୋ କାନରେ ପଡୁଥିଲା । ଭଦ୍ରଲୋକ ତାଙ୍କ ପକେଟରୁ କେତେ ଖଣ୍ଡ ଛପା କାଗଜ ବାହାର କରି ରୁନାପାଙ୍କୁ ଦେଖେଇଲେ ଏବଂ କୋଉ ଗୋଟିଏ ଜାଗାକୁ ଯିବାକୁ ରାସ୍ତା ଏବଂ ସେଠାକାର ପରିବେଶ କଥା ତାଙ୍କୁ ବୁଝାଉଥିଲେ ।

ସେମାନଙ୍କର ଏସବୁ କଥାରେ ମୋର କୌଣସି ଆଗ୍ରହ ନଥିଲା । ତେଣୁ ମୋତେ ମଝିରେ ମଝିରେ ନିଦ ମାଡୁଥିଲା ।

ରାତି ସେତେବେଳକୁ କେତେ ହେଲାଣି କେଜାଣି ହଠାତ୍ ମୋ ନିଦ ଭାଙ୍ଗିଗଲା । କମ୍ପାଟମେଣ୍ଟର ସବୁ ଲାଇଟ୍ ଗୁଡ଼ିକ ସେତେବେଳକୁ ଅଫ୍ ହେଇ ଯାଇଥାଏ । କେବଳ ନୀଳ ଆଲୁଅଟି ଜଳୁଥାଏ । ଆମର ଅନ୍ୟାନ୍ୟ ବର୍ଥରେ ସମସ୍ତେ ନିଘୋଡ଼ ନିଦରେ ଶୋଇ ପଡ଼ିଥାଆନ୍ତି । ମୁଁ ଦେଖିଲି, ରୁନାପା ସେମିତି ମୋ ଆଡ଼କୁ ଅଣେଇ କରି ବର୍ଥ ଉପରେ ତକିଆ ଉପରେ ଭାରା ଦେଇ ଗୋଟାଏ କଣକୁ ବସିଚନ୍ତି । ତାଙ୍କ ଆଖି ଉପରକୁ ଉଠି ସିଧା ସେଇ ନୀଳ ବଲ୍ବ ଦେହରେ ଲାଖି ଯାଇଚି । କଅଣ ଯେମିତି ସେ ବଲ୍ବଟିରୁ ଅନେକ ବେଳୁ ଖୋଜୁଛନ୍ତି । ମୋର ମନେ ହେଲା, ତାଙ୍କ ଗାଲ ଉପରେ ଦେଇ ବହି ଯାଉଥିବା ଲୁହଧାରଟି ଏବେ ନୀଳ ଆଲୁଅରେ ଚିକ୍ ଚିକ୍ କରୁଚି ।

ମୁଁ ଆଶ୍ଚର୍ଯ୍ୟ ହେଲି । ସେ ଭଦ୍ରଲୋକ କୁଆଡ଼େ ଗଲେ ? ତାଙ୍କ ସହିତ କଅଣ ଏମିତି କଥା ହେଲା, ଯେଉଁଥି ପାଇଁ ସେ କାନ୍ଦୁଛନ୍ତି । ତାଙ୍କର ଆଉ କିଛି ହେଲା ନା କଅଣ ? ଯୋଉ ଆଖିରୁ ସବୁବେଳେ ଉତ୍ତପ୍ତ ଲାଭା ବାହାରେ, ସେଥିରେ ପୁଣି ଲୁହ କୋଉଠୁ ଆସିଲା ?

ମୁଁ ଭାବିଲି, ମୁଁ ତାଙ୍କୁ ଏଇ ଅବସ୍ଥାରେ କିଛି ବି ପଚାରି ପାରିବିନି । ପଚାରିଲେ ମଧ୍ୟ ସେ ଯେ ମୋତେ ଠିକ୍ ଉତ୍ତରଟିଏ ଦେବେ, ସେମିତିକା ସମ୍ଭାବନା ମଧ୍ୟ ନଥିଲା ।

ମୁଁ ତେଣୁ ଚୁପ୍‌ଚାପ ପୁଣି ଥରେ ହଲଚଲ ନ ହେଇ ଶୋଇ ପଡ଼ିବାର ଛଳନା କଲି । କିଛି ସମୟ ପରେ ଦେଖିଲି, ସେ ଉଠିଲେ ଏବଂ ନିଜ ସୁଟ୍‌କେଶ ସଜାଡ଼ିଲେ ।

ଗାଡ଼ିଟା କୌଣସି ଗୋଟିଏ ଷ୍ଟେସନରେ ଇନ୍ କରୁଥିଲା । ସେ ନିଜ ରୁମାଲରେ ମୁହଁଟା ପୋଛି ନେଲେ ଏବଂ ସୁଟକେଶଟା ହାତରେ ଧରି ଡାକିଲେ, ପୁରନ୍ଦରା ଏଥର ଉଠ, ମୁଁ ବିଦାୟ ନେବି ।

ମୁଁ ଚଟାପଟ ଉଠି ପଡ଼ିଲି ଏବଂ କହିଲି, ଆପଣ ବିଦାୟ ନେବେ ? ଏତେ ଶିଘ୍ର କଅଣ ଭୁବନେଶ୍ୱର ଆସିଗଲା ?

ନା, ଏଇଟା ବ୍ରହ୍ମପୁର । ମୁଁ ଏଇଠି ଓହ୍ଲେଇବି ।

ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଏତେ ଶିଘ୍ର ସେ ଯେ ମୋଠୁ ବିଦାୟ ନେବେ, ଏକଥା ମୁଁ ଚିନ୍ତା ମଧ କରିପାରୁ ନଥିଲି । ତାଙ୍କ ବିଷୟରେ ମୁଁ କିଛି ବି ଜାଣିବାର ସୁଯୋଗ ପାଇଲିନି । ତାହା ହିଁ ଥିଲା ମୋର ବ୍ୟସ୍ତତାର କାରଣ ।

ସେ ଚଟାପଟ ତାଙ୍କ ହାତ ବେଗରୁ ଖଣ୍ଡେ କାଗଜ ବାହାର କରି ମୋ ହାତକୁ ବଢ଼େଇ ଦେଲେ ଏବଂ କହିଲେ, ଏଇଟା ହେବ ମୋର ଆସନ୍ତା ମାସ ଠାରୁ ନୂଆ ଠିକଣା ଏବଂ ଏହା ହିଁ ଥିଲା ମୋର ସେ ଭଦ୍ରବ୍ୟକ୍ତିଙ୍କ ସହିତ ଆଲୋଚନାର ବିଷୟବସ୍ତୁ । ଆଜି ତାଙ୍କୁ ମୋର ଶେଷ ସିଦ୍ଧାନ୍ତ ଜଣେଇ ଦେଲି ।

ଅସହ୍ୟ ଯନ୍ତ୍ରଣାର କେଁ କଟ୍ କଟ୍ ଖଟ୍ କରି ଗାଡ଼ିଟା ଯେମିତି ଷ୍ଟେସନରେ ରହି ଯାଇଚି, ସେ ଗାଡ଼ିରୁ ଓହ୍ଲେଇ ପଡ଼ିଲେ ଏବଂ ମୋତେ ଚାହିଁ କହିଲେ, ଗୁଡ୍‌ଲକ୍ । ତାପରେ ପରେ ସେ ଖୁବ୍ ଶିଘ୍ର ପାଦ ପକେଇ ପ୍ଲାଟଫର୍ମର ମଳିଚିଆ ଅନ୍ଧାର ଭିତରେ ନିଜକୁ ମିଶେଇ ଦେଲେ ।

ଗାଡ଼ି ପୁଣି ଛାଡ଼ି ଦେଲା । ମୁଁ ମୋ ବର୍ଥକୁ ଫେରି ଆସି ସେ କାଗଜଟାକୁ ଫିଟେଇ ଦେଖିଲି । ସେଥିରେ ଅପେକ୍ଷାକୃତ ବଡ଼ ବଡ଼ ଅକ୍ଷରରେ ଲେଖାଥିଲା-

ଡାଇରେକ୍ଟର

ଦେବର୍ଷି ଇନ୍‌ଷ୍ଟିଚିଉଟ୍ ଅଫ୍ ଭେଡ଼ିକ କଲଚର ଏଣ୍ଡ ଷ୍ଟଡ଼ିଜ୍

(ବିଶ୍ୱ ଧର୍ମାୟତନ ଆଶ୍ରମ,)

ହରଦ୍ୱାର (ୟୁ.ପି)

ତା ତଳକୁ ଛୋଟ ଛୋଟ ଅକ୍ଷରରେ ଆଉ କେତୋଟି ଧାଡ଼ି ଲେଖା ଥିଲା । ଛପା ଅକ୍ଷର ହେଲେ ବି ଷ୍ଟୀମିତ ଆଲୋକରେ ମୁଁ ସେତକ ପଢ଼ି ପାରୁ ନଥିଲି । ହୁଏତ ତା ପରେ ମୋର ଆଉ ପଢ଼ିବାକୁ ଇଚ୍ଛା ମଧ ନଥିଲା ।

*(ଝଂକାର, ଜାନୁଆରୀ, ୧୯୯୮)*



# ପ୍ରତିଫଳନ

**ମୁଁ** ବେଶ କେତେଦିନ ହେଲା ଲକ୍ଷ୍ୟ କରି ଆସୁଚି ପପୁର ଅସ୍ୱାଭାବିକ ମାନସିକତାକୁ । ସେ ଯେତିକି ବଢୁଚି, ଯେତିକି ବର୍ଦ୍ଧିତ ପରିସର ଭିତରେ ଚଳ ପ୍ରଚଳ ହେଉଚି, ଯେତିକି ଅଧିକ ଜାଣୁଚି, ଅଧିକ ସାଙ୍ଗ ସାଥି ଗହଣରେ ମିଶୁଚି ଏବଂ / କିମ୍ବା ମିଶିବାର ସୁଯୋଗ ପାଉଚି ସେତିକି ସେ ତାର ପୁରାତନ ଚିନ୍ତା ଚେତନାର ଖୋଳ ଛାଡ଼ି ଆଉ ଗୋଟିଏ ନୂଆ କୋଠରୀ ଭିତରେ ପଶିବାର ସମସ୍ତ ଉପକ୍ରମ, ଉଦ୍ୟମକୁ ପାରୁ ପର୍ଯ୍ୟନ୍ତ ଜାରି ରଖୁଚି ।

ପପୁକୁ ତିନି ପୂରି ଚାରି ଚାଲିଲା ।

କିନ୍ତୁ ମୋତେ ଲାଗୁଚି ସେ ଯେମିତି ଯା ଭିତରେ ହଠାତ୍ ଅନେକ ବଡ଼ ହେଇ ଯାଇଚି । ତାର ଆଚାର ବ୍ୟବହାର, ଚାଲିଚଳନ, କଥାବାର୍ତ୍ତା, ହାବଭାବ, ଆଦବ କାଇଦା ଯେ କୌଣସି ପରିପକ୍ୱ ମଣିଷ ସହିତ ମିଶିଯାଉଚି । ଅସମ୍ଭବ ପରିବର୍ତ୍ତନ ହେଇଚି ପିଲାଟାର । କାହିଁକି ଓ କେମିତି ହେଉଚି ଏସବୁ ମୁଁ ଚିନ୍ତା କରିପାରେନା । କୋଉଠୁ ଜାଣିଲା ସେ ଏସବୁ ଆଦବ କାଇଦା । କେମିତି ଶିଖିଲା ସେ ଏ ସବୁ ଆଚାର ବ୍ୟବହାର ଏବଂ ସବୁଠୁ ବଡ଼ କଥା ହେଲା କେମିତି ସେ ଏସବୁ ମନେରଖି ପାରୁଚି ଏବଂ ଦେଶ କାଳପାତ୍ର ଦେଖି ସେ ସବୁକୁ ଠିକ୍ ଭାବେ ପ୍ରୟୋଗ ମଧ କରି ପାରୁଚି ମୁଁ ସେ ସବୁ ଦେଖି ବେଳେ ବେଳେ ବିସ୍ମିତ ହୁଏ ।

ମୁଁ ବେଳେ ବେଳେ ମୋର ବଂଧୁମାନଙ୍କୁ ପଚାରେ, ଯେ ଏସବୁ ଅସ୍ୱାଭାବିକତାକୁ ଧୀଶକ୍ତି କୁହାଯିବ ନା ଆଉ କିଛି । ଏଧୀଶକ୍ତିକୁ ଚତୁରତା ଯାହାର ଅନ୍ୟନାମ ଶଠତା, ବୋଲି କୁହାଯାଇ ପାରେ କି ? କିମ୍ବା ଏସବୁ ଚତୁରତା ଓ ଧୀଶକ୍ତିର ମଝାମଝି କିଛି ହେଇ ପାରେ କି ? ମୁଁ ସେମାନଙ୍କୁ ଏ କଥା ମଧ ପଚାରେ, ଏ ପ୍ରକାର ଆଚରଣ, ଦମ୍ଭ (ଏବଂ ବେଳେ ବେଳେ ନିପୁଣତା ମଧ କୁହାଯାଇପାରେ) ଏସବୁ ଶିଶୁ ମନସ୍ତତ୍ୱର ବିଶେଷ ଗୁଣ ଗୁଡ଼ିକୁ ତାର ଭବିଷ୍ୟତ ଚରିତ୍ର ଗଠନର ପରିପନ୍ଥୀ ହେବ କି ?

॥୧୨॥

ମୋ ପ୍ରଶ୍ନ ଶୁଣି ସେମାନେ ହସି ଦିଅନ୍ତି । ସେମାନେ କହନ୍ତି ଏ ଯୁଗରେ ଶିଶୁର ମାନସିକତା ଏକ ଭିନ୍ନ ପର୍ଯ୍ୟାୟର ବିଷୟ । ଶିଶୁର ମନକୁ ମାପିବାର କୌଣସି ନିର୍ଦ୍ଦିଷ୍ଟ ମାପ କାଠି ନଥିଲେ ମଧ୍ୟ ତାର ସାମାଜିକ ଅବସ୍ଥା, ଅର୍ଥନୈତିକ ବ୍ୟବସ୍ଥା ଏବଂ ଜ୍ଞାନ ଆହରଣର କ୍ଷେତ୍ରଗୁଡ଼ିକ ତା ସାମନାରେ ଏତେ ପରିମାଣରେ ମୁକ୍ତ ତଥା ବ୍ୟାପକ ଯେ ସେ ସେଗୁଡ଼ିକୁ ଆପଣେଇ ନେବାକୁ ମୋଟେ ସମୟ ଲାଗେନି । ଏବର ଶିଶୁର ଗ୍ରହଣ କରିବାର ଶକ୍ତି ଆଗ କାଳର ଶିଶୁମାନଙ୍କ ଅପେକ୍ଷା ଯଥେଷ୍ଟ ବଢ଼ିଯାଇଚି ଏବଂ ବଢୁଚି ମଧ୍ୟ ।

ସେମାନଙ୍କର ଏସବୁ ବୈଜ୍ଞାନିକ ବିଶ୍ଳେଷଣ ପ୍ରତି ମୋର ସେତେ ଆଗ୍ରହ ନଥିଲା । ମୁଁ ସେସବୁ ତାଙ୍କ ଠାରୁ ଶୁଣିବାକୁ ଚାହୁଁ ନଥିଲି । ପିଲାର ଗ୍ରହଣ ଶକ୍ତି କାହିଁକି ଓ କଅଣ ପାଇଁ ବଢ଼ିଯାଏ  କିମ୍ୱା ଏ ଯୁଗରେ ସେଇଟା ବଢ଼ି ବଢ଼ି ଶେଷରେ କୋଉଠି ପହଞ୍ଚିବ, ତାର ଶେଷ ସୀମା କୋଉଠି ଓ କେଉଁଯାଏ ଲମ୍ୱି ଯାଇଚି ସେ ସବୁ ଶୁଣିବାକୁ ମୋର ମୋଟେ ଇଚ୍ଛା ନଥିଲା ।

ଗୋଟିଏ ସାଧାରଣ ନିମ୍ନ ମଧ୍ୟବିତ୍ତ ପରିବାରର ପିତାର ଔତ୍ସୁକ୍ୟ ବା ଜିଜ୍ଞାସା ଯେତିକି ହେବାର କଥା ମୋର ସେତିକି ଥିଲା । ମୁଁ ତା'ଠୁ ଆଉ ବେଶି କିଛି ଜାଣିବାକୁ ଚାହୁଁ ନଥିଲି । କାରଣ ମୁଁ ସେ ମନୋବୈଜ୍ଞାନିକ ବିଶ୍ଳେଷଣ କଥା ମୋଟେ କିଛି ବୁଝି ପାରୁ ନଥିଲି ।

ମୋର ଚିନ୍ତା ଥିଲା ପିଲା  ମୋର ଭଲ ପାଠ ପଢ଼ି ଭଲ ମଣିଷଟିଏ ହେବତ ? ଭଲ ଚାକିରିଟିଏ କରି ପାରିବ ତ ? ଏବର ବଜାର ଯାହା ହେଲାଣି ସେଥିରେ ସେ ପାହାଡ଼ିଆ ନଈର ଉଜାଣି ସୁଅରେ ଉପରକୁ ପହଁରି ପାରିବ ତ ? କୂଳ ଧରିବ କି ନ ଧରିବ ସେତେବେଳେ ଯାଏ ହୁଏତ ମୁଁ ଦେଖିବାକୁ ନଥିବି । ଦୌଡ଼ର ସୀମା ଛୁଇଁବ କି ନା ସେ କଥା ମଧ୍ୟ ହୁଏତ ମୁଁ ଦେଖିବାକୁ ନ ଥିବି । ମୁଁ ସେଥିପାଇଁ ଦୁଃଖିତ କି ଚିନ୍ତିତ ନୁହେଁ, ସେ ମଝି ବାଟରେ ଥକି ପଡ଼ିବନି ତ ? ତାର ଶକ୍ତି ଓ ସାମର୍ଥ୍ୟ ସେତେବେଳେ ଯଥେଷ୍ଟ ହେବତ ?

ମୁଁ ଚିନ୍ତିତ ହେଇପଡ଼େ । ମୁଁ ଚିନ୍ତିତ ହେଇ ପଡ଼େ ଏଇ କଥା ଭାବି ଯେ ତାର ଏ ଚଳ ଚଞ୍ଚଳ ତଥା ଅସ୍ୱାଭାବିକ ଦକ୍ଷତାର ଶୈଶବ ତାକୁ ତାର ସମାଜ ଓ ସଂସ୍କୃତିର ଗଡ଼ାଣିଆ ବାଟରେ ଠେଲି ନେଇ ଯାଉ ନାହିଁତ ? ଟିକି ପାଦରେ ଯେତିକି ଶକ୍ତି ଅଛି ସେ ଯଦି ତା'ଠୁ ବେଶି ଜୋର୍‌ରେ ଚାଲିବାକୁ ବାଧ୍ୟ ହୁଏ ତେବେ ହୁଏତ ତାର ଭାରସାମ୍ୟ ସମ୍ଭାଳି ନ ପାରି ଅମଡ଼ା ମାଡ଼ି ଯିବ ନାହିଁ ତ ? ରାସ୍ତାରେ ତ କଣ୍ଟା ଝଟା ଯେତିକି, ନାଳ ନର୍ଦ୍ଦମା ସେତିକି, ଖାଲ ଢ଼ିପ ଯେତିକି ଝୁଣ୍ଟିବା ପାଇଁ ଢ଼ିମା ଢ଼ିମା ପଥର ମଧ୍ୟ ସେତିକି । ଧୂ ଧୂ ମରୁବାଲି ଯେତିକି, ଦେଖାଯାଉ ନଥିବା ନଈ ନାଳ ସେତିକି ।

ତେବେ କଅଣ ହେବ ? କଅଣ ହେବ ତାର ଭବିଷ୍ୟତ ? କଅଣ ଅଛି ତା ଭାଗ୍ୟକାଶରେ ? ଜହ୍ନ ଆଲୁଅର ଆଞ୍ଜୁଳାଏ ସଜଫୁଟା ଖଇ ନା ତତଲା ଖରାର ଚାଇଁ ଚାଇକା ଦର ସିଝା ପବନ ?

ଅସମ୍ଭବ ସ୍ମରଣ ଶକ୍ତି ପପୁର ।

ମୁଁ ପଚାରେ ଆମର ପ୍ରଧାନମନ୍ତ୍ରୀ କିଏ ?

ସେ ନାଁ କହିଦିଏ ।

ଆମ ରାଷ୍ଟ୍ରପତି ?

ସେ ତୁରନ୍ତ ଉତ୍ତର ଦିଏ ।

ଓଡ଼ିଶାର କେତାଟି ଜିଲ୍ଲା ?

ସେ କହିଦିଏ ଏବଂ ମୋତେ ଓଲଟି ପଚାରେ ଆଉ ପ୍ରଶ୍ନ ପଚାରିବ ?

ମହାଭାରତ ଯୁଦ୍ଧରେ ନେତୃତ୍ୱ କିଏ ନେଇଥିଲେ ?

ରାମାୟଣ ରଚନା କିଏ କରିଥିଲେ ?

ହିମାଳୟ କୋଉଠି ?

ଚୀନର ରାଜଧାନୀ ?

ଆମେରିକାର ପ୍ରେସିଡେଣ୍ଟ ?

ଏସବୁ ପ୍ରଶ୍ନର ଉତ୍ତର ଦେବାକୁ ତାକୁ ମୋଟେ ସମୟ ଲାଗେନା । ଏବଂ ଏ ସବୁ ପ୍ରଶ୍ନର ଉତ୍ତର ଦେବା ବେଳେ, ଜଣେ ବେଶ ଲକ୍ଷ୍ୟ କରି ପାରିବ ଯେ ସେ ତା ନିଜ ଉପରେ ଯଥେଷ୍ଟ ବିଶ୍ୱାସ ରଖି କଥାବାର୍ତ୍ତା କରୁଚି । ବେଶ୍ କନ୍‌ଫିଡେଣ୍ଟଲି ।

ଅଚାନକ ସେ ଦିନ ମୁଁ ତାକୁ ଶେଷରେ ପଚାରି ଦେଲି ଆମ ଏଠାରେ ଏମ୍.ପି.ଙ୍କ ନାଁ କଅଣ ?

ସେ ମୋ କାନ୍ଧ ଉପରେ ଝୁଲି ପଡ଼ି କହିଲା ଏ ଗୁଡ଼ା କି ପ୍ରଶ୍ନ ପାପା ଆଉ ପଚାର ।

ମୁଁ ହାରିଗଲି, ପୁଅ ପାଖରେ ବାପାର ପରାଜୟର ଗ୍ଲାନି ଓ ଆନନ୍ଦାତିଶଯ୍ୟରେ ମୁଁ ତାକୁ ତଳୁ ଉଠେଇ ଆଣି ଦୁଇ ହାତରେ ଉପରକୁ ଟେକି ଧରି କହିଲି ଏବେ ଯଦି ମୁଁ ତୋତେ ତଳକୁ ଦୁମ କରି ଛାଡ଼ି ଦିଏ ?

ସେ କହିଲା ମୁଁ ଆଉ ଥରେ ତୁମ କାନ୍ଧ ଉପରକୁ ଡେଇଁ ପଡ଼ିବି ।

ମୁଁ ଚୁପ୍ ହେଇଗଲି । ମୋତେ ସେ ଚୁପ୍ କରେଇ ଦେଲା । ମୋର ସମସ୍ତ ଚିନ୍ତା ଶକ୍ତି ଯେମିତି ହିମ ପ୍ରବାହରେ ବରଫ ପାଲଟି ଯାଉଚି । ମୁଁ ତାକୁ ଆଉ କିଛି କହି ପାରିଲିନି । କଅଣ କହିବି କି ନା ସେ କଥା ମଧ ମୋ ମନରୁ ସେତିକି ବେଳେ

ଲୋପ ପାଇ ଆସିଲା ।

ମୁଁ ତାକୁ ତଳେ ଛାଡ଼ି ଦେଲି ଏବଂ କହିଲି, ଯା ଖେଳିବୁ ।

ସେ ଚାଲିଗଲା ।

ସେ ଚାଲିଗଲା ପରେ ସଫଳ ପିତୃତ୍ୱର ଅସମ୍ଭବ ଗର୍ବରେ ମୁଁ ଯେମିତି ଫାଟି ପଡୁଥିଲି ।

ସେ ଦିନ ସଂଧ୍ୟାରେ ଆମ ଘରକୁ କେତେ ଜଣ ଗେଷ୍ଟ ଆସିଥିଲେ । ଆମେ ସବୁ ଖୁସି ଗପରେ ମଜ୍ଜି ଯାଇଥିଲୁଁ । ସେମାନେ ମୋ ପୁଅ କଥା ଆଗରୁ କେତେ ଥର ଶୁଣିଚନ୍ତି । ସେମାନେ କହିଲେ ଆଜି କାହିଁ ପପୁକୁ ଦେଖୁନୁ ଯେ ? କୁଆଡ଼େ ଗଲା ସିଏ ? ସେ ନଥିଲେ ଘରଟା ଭଲ ଲାଗେନା ।

ମୁଁ ପାଟି କଲି । ପପୁ ! ଏଆଡ଼େ ଆସ । ଅଙ୍କଲ ଡାକୁଚନ୍ତି , ସେ ଆସିଲା, ସମସ୍ତଙ୍କୁ ନମସ୍କାର କଲା, ତା ସାଙ୍ଗ ସାଥିମାନେ କାହିଁକି ଆସି ନାହାନ୍ତି ବୋଲି ସେମାନଙ୍କୁ ପଚାରିଲା ।

ସେମାନେ ଟିକିଏ ଶଙ୍କି ଗଲେ । ସେମାନେ ବୁଝିଲେ ଯେ ଆମ ପିଲାମାନେ ଆମ ସାଥିରେ ଆସି ନଥିବାରୁ ବୋଧେ ସେ ଏଯାଏ ଏଠାକୁ ଆସୁ ନଥିଲା ।

ଅଙ୍କଲ କହିଲେ ତମେ କିନ୍ତୁ ଏ ଯାଏ କଅଣ କରୁଥିଲ ଭିତରେ ?

''ଟିଭି ଦେଖୁଥିଲି ।''

''ଟିଭିର କୋଉ ପ୍ରୋଗ୍ରାମ ତମକୁ ଭଲ ଲାଗେ ?''

''ସେଥିରେ ତ ଅନେକ ପ୍ରୋଗ୍ରାମ ଅଛି ।''

ସେମାନେ ଟିକିଏ ଚିନ୍ତିତ ହେଇ ପଡ଼ିଲେ । ସେମାନଙ୍କ ପ୍ରଶ୍ନଟା ପପୁ ପାଇଁ ସମ୍ପୂର୍ଣ୍ଣ ବା ଯଥେଷ୍ଟ ହେଲା ନାହିଁ ବୋଲି ସେମାନେ ଭାବିଲେ । ତେଣୁ ସେମାନେ ମୋତେ ଚାହିଁ ମୁରୁକି ମୁରୁକି ହସିଲେ ।

ମିସେସ୍ ରାଓ ତା ପିଠିରେ ହାତ ମାରି କହିଲେ, ହଉ, ତୁମେ ଯାଅ ଏଥର ।

ସେ ହସି ହସି ଚାଲିଗଲା । ଗଲାବେଳେ କିନ୍ତୁ ସେମାନଙ୍କୁ ଥେଙ୍କୟୁ କହିବାକୁ ଭୁଲି ନଥିଲା ।

ମିସେସ୍ ରାଓ କହିଲେ, ଏ ସବୁ ଈଶ୍ୱରଙ୍କ ଆଶୀର୍ବାଦ । ସେ ସ୍କୁଲ ଗଲାଣି ?

''ଏବେ ସ୍କୁଲ ଖୋଲିଲେ ତାକୁ ଭର୍ତ୍ତି କରାଇବି ।''

ସେ କହିଲେ, ତାପାଇଁ ଏଡ୍‌ମିଶସନ ଟେଷ୍ଟ ଦରକାର ହେବନି ବୋଧେ, ସେମାନେ ହସି ଉଠିଲେ ।

ମୁଁ କହିଲି ସେଣ୍ଟ ପଲ୍‌ର ପ୍ରିନ୍ସିପାଲ ତାଙ୍କୁ ସେ ଦିନ ଗୋଟିଏ ଫଙ୍କସନ୍‌ରେ ଦେଖି ତା ସହିତ କଥାବାର୍ତ୍ତା ହେଇ ସାରିଚନ୍ତି ଏବଂ ଏଡମିଶନ ଦିନ ମୋତେ ଯିବାକୁ କହିଚନ୍ତି ।

''ସେଣ୍ଟ ପଲ୍ ?'' ସେମାନଙ୍କ ଆଖି ଉପରକୁ ଟେକି ହେଇଗଲା ।

ସେଣ୍ଟପଲ ହେଉଚି ଆମ ରାଜଧାନୀ ସହରର ସର୍ବୋତ୍କୃଷ୍ଟ ସ୍କୁଲ । ସେଠି ଅର୍ଥ କିମ୍ବା ପଦ ପଦବୀ ଗୋଟିଏ ପିଲାର ମୋଟେ କ୍ରାଇଟେରିଆ ନୁହେଁ'', କେବଳ ମେରିଟ୍‌କୁ ବିଚାରକୁ ନିଆଯାଏ ।

ମିସେସ୍ ରାଓ କହିଲେ ମୋ ପୁଅକୁ ସେଠି ଏଡମିଶନ ପାଇଁ ମୁଁ ଅନ୍ତତଃ ଛଅ ମାସ କଠୋର ପରିଶ୍ରମ କରି ମଧ ହେଲାନି । ମିଷ୍ଟର ରାଓ କହିଲେ ପିଲାର ମେରିଟ ହେଉଚି ଗଡ୍‌ସ ଗିଫ୍ଟ । ତାକୁ ଅର୍ଥ ବିନିମୟରେ ତିଆରି କରାଯାଇ ପାରେନା ।

ମୁଁ କହିଲି, ମୋତେ କିନ୍ତୁ ପିନ୍ସିପାଲ କଅଣ କହିଲେ ଜାଣନ୍ତି ? ସେ କହିଲେ ସମସ୍ୟା ବର୍ତ୍ତମାନ ମୋ ପାଖରେ ।

ମାନେ ? ମୁଁ ପଚାରିଲି ।

ସେ କହିଲେ ତାହାର ଏଡମିଶସନ ନିଶ୍ଚୟ । କିନ୍ତୁ କୋଉ କ୍ଲାସରେ ତାକୁ ନେବି ସେଇ କଥା ହିଁ ଚିନ୍ତା କରୁଚି ।

ମିଷ୍ଟର ଓ ମିସେସ୍ ରାଓ କହିଲେ । ନିଶ୍ଚୟ, ନିଶ୍ଚୟ ଆପଣ ତାକୁ ତାର ସୁଇଟେବିଲିଟି ଅନୁସାରେ ହାୟର କ୍ଲାସରେ ଏଡମିଶନ ଦିଅନ୍ତୁ । ଆମେ ତ ଭାବୁଛୁଁ ତଥାପି ସେ କ୍ଲାସରେ ଟପର୍ ହେବ ।

ପରଦିନ ମୁଁ ଜଳଖିଆ ଟିକିଏ ଡେରିରେ ଖାଇଲି । ସେ ଦିନ ମୋର ଅଫିସ ଯିବାର ନଥାଏ । କୌଣସି ଗୋଟାଏ ଘରୋଇ କାମରେ ଗୋଟାଏ ଦିନ ଛୁଟି ନେଇଥାଏ । ତେଣୁ ଜଳଖିଆ ଖାଇ ସାରି ମୁଁ ଟିଭି ସାମନାରେ ବସି ଗଲି । ଆଉ କାମ ବା କଅଣ ।

ପାର୍ଲାମେଣ୍ଟର ଲାଇଭ ଟେଲିକାଷ୍ଟ ଚାଲିଥାଏ । ସେଦିନ ପ୍ରଧାନମନ୍ତ୍ରୀଙ୍କ ବିରୁଦ୍ଧରେ ଆସିଥିବା ଅନାସ୍ଥା ପ୍ରସ୍ତାବ ଉପରେ ଭୋଟ ହେବ ପ୍ରଧାନମନ୍ତ୍ରୀଙ୍କ ଭାଷଣ ପରେ । ମୋର ସେଥିରେ ଖୁବ୍ ଆଗ୍ରହ ଥାଏ । ପ୍ରଧାନମନ୍ତ୍ରୀଙ୍କ ଭାଗ୍ୟ ସୂତା ଖିଅରେ ଝୁଲୁଛି ବୋଲି ସେଦିନ ସଂବାଦପତ୍ର ତଥା ଟିଭି ଓ ମିଡ଼ିଆ ମାନେ ମୁଖର ହୋଇ ଉଠିଥାଆନ୍ତି । ମୋ ପରି ଆହୁରି କୋଟି କୋଟି ଦର୍ଶକ ବୋଧେ ଏମିତି ମୋ ପରି ସେ ଦିନ ଟିଭିକୁ ଅନେଇ ବସିଥିବେ ।

ମନେ ମନେ ଭାବୁଥିଲି ସତରେ ଯଦି ଆଜି ମନ୍ତ୍ରୀ ମଣ୍ଡଳଟା ଭାଙ୍ଗି ଯାଏ ? ପୁଣି ହୁଏତ ଆଉ ଗୋଟିଏ ସାଧାରଣ ନିର୍ବାଚନ ଆମ ମୁଣ୍ଡ ଉପରେ ଝୁଲି ପଡ଼ିବ ।

ପୁଣି କେତେହଜାର କୋଟି ବାଏଁ ବାଏଁ ଉଡ଼ିଯିବ । ସମଗ୍ର ଦେଶ ପୁଣି ମାସେ ଦି' ମାସ କାଳ ନିର୍ବାଚନୀ ତତଲା ବାୟୁ ମଣ୍ଡଳ ଭିତରେ ସନ୍ତୁଳି ହେବ । ପୁଣି ଗୁଡ଼ାଏ ସରଳ ନିରୀହ ପ୍ରାଣ ଏଥିରେ ବଳି ପଡ଼ିବ । ଜାତି ଜାତି ଭିତରେ, ସଂପ୍ରଦାୟ ସଂପ୍ରଦାୟ ଭିତରେ, ସାହି ଭିତରେ ପୁଣି ଥରେ ଶାଣଦିଆ ତଲୱାର ସଜାଗ ହୋଇ ଉଠିବ ।

ଆଉ ଯଦି ନ ଭାଙ୍ଗେ ? ଏମିତି ଗୋଟାଏ ଦୁର୍ନୀତି ଗ୍ରସ୍ତ ମନ୍ତ୍ରୀ ମଣ୍ଡଳ ରହି କି ଲାଭ ? କି ଉପକାର ଏ ଲୋକଙ୍କର କରୁଚି ? ଦେଶ ତ ରସାତଳକୁ ଗଲାଣି । ପଚାଶ ବର୍ଷର ସ୍ୱାଧୀନତା ପରେ ମଧ ଗରିବୀ କମିବା ପରିବର୍ତ୍ତେ ବଢ଼ି ବଢ଼ି ସତୁରି ପ୍ରତିଶତରେ ପହଞ୍ଚିଲାଣି । ବେକାରୀ ଆହୁରି ବେଶି । ଦେଶର ସାଧାରଣ ଜନତାଙ୍କର ଅବସ୍ଥା ଏପରି ସ୍ତରକୁ ଆସିଲାଣି ଯେ ପଇସା ଖର୍ଚ୍ଚ ନ କଲେ କୌଣସି କାମ ହେଉ ନାହିଁ । ପୁଅକୁ ମାର କ୍ଷୀର ମଧ ବିନା ପଇସାରେ ମିଳୁ ନାହିଁ । ଲାଞ୍ଚ ମିଛ ଓ ଦୁର୍ନୀତି ସମଗ୍ର ଦେହଟାରେ କାନସର ରୋଗରେ ଭୟାନକ ଜୀବାଣୁ ପରି ସାଲୁ ବାଲୁ ହେଲେଣି ।

ପପୁ ପଶି ଆସିଲା ଏବଂ ମୋ ପାଖରେ ଠିଆ ହେଇ ଦଣ୍ଡେ ଟିଭିକୁ ଅନେଇଲା । ତା ପରେ ମୋତେ ଅନୁନୟ କରି କହିଲା, ଏ ଗୁଡ଼ା କଅଣ ଦେଖୁଚ ବାପା ? କାହିଁକି ଦେଖୁଚ ଯେ ?

ସେ ସଂକଟ ପୂର୍ଣ୍ଣ ମୁହୂର୍ତ୍ତରେ ମୁଁ ମୋତେ ଡିଷ୍ଟର୍ବ ହେବାକୁ ଚାହୁଁ ନଥିଲି । ଆଲୋଚନା ବେଶ ଜମି ଆସିଥାଏ । ତେଣୁ ତାକୁ କୋଳ ଉପରକୁ ଟାଣି ନେଇ କହିଲି ଟିକେ ରହ ବାପା, ଦେଖୁନୁ କେମିତି ସରଗରମ ଆଲୋଚନା ଚାଲିଚି ।

ତାର କିନ୍ତୁ ସେଥିରେ ମନ ଲାଗିଲାନି । ଟିକିଏ ରହି ସେ ପୁଣି ମୋତେ କହିଲା ସେମାନେ ଏତେ କଳି କଜିଆ କାହିଁକି କରୁଚନ୍ତି ବାପା ?

ଭାବୁଥିଲି କହିଦେବି, ସେଇଟା ହିଁ ତ ସେମାନଙ୍କର ଏକମାତ୍ର କାମରେ ପୁଅ । ରହ, ଆଉ ଟିକିଏ ବଡ଼ ହେଲେ ଜାଣିବୁ ଯେ ସେମାନେ ତା ଛଡ଼ା ଆଉ କିଛି ଜାଣନ୍ତି ନି ।

କିନ୍ତୁ ମୋ ପାଟିରୁ ସେତକ ବାହାରିଲାନି । ଦେଶର ଏ ମହାନ ନେତାମାନଙ୍କ ପ୍ରତି ତାର ସୂକ୍ଷ୍ମ ମନରେ ମୁଁ କୌଣସି ପ୍ରକାର ବିରୋଧାଭାଷ ବା ଅଶ୍ରଦ୍ଧା ସୃଷ୍ଟି କରିବାକୁ ଚାହୁଁ ନଥିଲି । ଆଜି କାଲିର ଗୋଟିଏ ଛୋଟ ପିଲାର ପିତାମାତା ପ୍ରତ୍ୟେକ କ୍ଷେତ୍ରରେ ଯଥେଷ୍ଟ ସଂଯମ ଅବଲମ୍ବନ କରିବା ଉଚିତ ଏ କଥା ମୁଁ ଯଥେଷ୍ଟ ଆଗରୁ ଜାଣିଥିଲି ।

''ତୁ ଯାଉନୁ ତୋ ପାଇଁ ଗତ କାଲି ଯୋଉ ନୂଆ ଛବି ବହି ଆଣିଚି ତାକୁ ଦେଖିବୁ । ମୁଁ ଟିକିଏ ଏଇଟାକୁ ଦେଖିନିଏଁ, ଆଉ ଅଳ୍ପ ସମୟ ପରେ ସରିଯିବ ।'' ମୁଁ ତାକୁ କହିଲି ।

ଟିଭି ପରଦାରେ ଆଖି ଖୋସି ସେ ବଡ଼ ନିରୁତ୍ତାପର ଉତ୍ତରଟିଏ ଦେଇ କହିଲା

ମୁଁ ତାକୁ କାଲିଠୁ ସାରି ଦେଇଚି ।

ଟିଭିର ଆଲୋଚନାରେ ସେତେବେଳେ ବଡ଼ ଉତ୍କଣ୍ଠା ତଥା ଆବେଗପୂର୍ଣ୍ଣ ମୁହୂର୍ତ୍ତଟିଏ ଆସି ପହଞ୍ଚି ଯାଇଥାଏ । ଠିକ୍ ଗୋଟାଏ ରହସ୍ୟ ରୋମାଞ୍ଚ ସିରିଜର କାହାଣୀ ପରି । ପାଟିତୁଣ୍ଡ, ଚିତ୍କାର ଏବଂ କିଛି ପରିମାଣରେ ପରସ୍ପର ପ୍ରତି କଟୁ ବାକ୍ୟରେ ଟିଭି କମ୍ପୁଥାଏ ।

ପପୁ ବୋଧେ ଗୋଳମାଳ ଓ ପାଟିତୁଣ୍ଡକୁ ଆଉ ସହ୍ୟ କରିପାରିଲାନି । ସେ ମୋ କୋଳରୁ ଚଟ୍ କରି ତଳକୁ ଡେଇଁ ପଡ଼ିଲା ଏବଂ ନିମିଷକେ କୁଆଡ଼େ ଘର ଭିତରେ ଉଭାନ ହେଇଗଲା ।

ମୁଁ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲି । ମୁଁ ମନେ ମନେ ତାହାହିଁ ଖୋଜୁଥିଲି ।

ପ୍ରଧାନମନ୍ତ୍ରୀଙ୍କ ଭାଷଣ ଆଉ ମୋତେ ଶୁଣାଯାଉ ନଥାଏ । ଗୋଳମାଳ ଆସ୍ତେ ଆସ୍ତେ ଚରମ ସୀମାକୁ ଆସିଗଲାଣି । କିଛି ଲୋକ ତା ଭିତରେ ଏ ପାଖ ସେପାଖ ଦୌଡ଼ା ଦୌଡ଼ି ମଧ୍ୟ ଆରମ୍ଭ କରିଦେଲେଣି । କଅଣ ନାଇଁ କଅଣ ଯେ ଖୁବ୍ ଶିଘ୍ର ଘଟି ଯାଇପାରେ ଏମିତି ଗୋଟାଏ ଅସ୍ୱାଭାବିକ ପରିସ୍ଥିତି ଆସି ବୋଧେ ଦୁଆର ବନ୍ଧରେ ଉଙ୍କି ମାରିଲାଣି । ମୋ ଛାତିର ସ୍ପନ୍ଦନ ବଢ଼ି ଚାଲୁଥାଏ ।

ହଠାତ୍ ଗୋଟାଏ ଅଟୋମେଟିକ୍ ବଂଧୁକରୁ ଏକାଥରେ ଅଜସ୍ର ଗୁଳି ବାହାରି ଯିବାର ଶବ୍ଦ ମୋତେ ସ୍ତବ୍ଧ ଚକିତ କରି ଦେଲା ଏବଂ ଠିକ୍ ଏତିକିବେଳେ ଟିଭି ପରଦା ଅଂଧକାର ହୋଇଗଲା ।

କିପରି କଅଣ ଓ କେମିତି ଏ ସବୁ ଘଟିଲା ସେ କଥା ଜାଣିବା ପାଇଁ ମୁଁ ହଠାତ୍ ଠିଆ ହୋଇ ପଡ଼ିଲି ଏବଂ ଦେଖିଲି ମୋ ମୁଣ୍ଡ ଉପରେ ବୁଲୁଥିବା ପଙ୍ଖାଟା ଆସ୍ତେ ଆସ୍ତେ ବନ୍ଦ ହେଇ ଆସୁଚି ଏବଂ ମୋ ପଛ ପଟେ ପପୁ ବୀର ଦର୍ପରେ ଛିଡ଼ା ହେଇ ଏଇ ଚାରି ଦିନ ତଳେ ତାର ଜନ୍ମଦିନରେ ଉପହାର ଦେଇଥିବା ଏକେ-୪୭ର ଅଟୋମେଟିକ ବଂଧୁକଟିକୁ ଦୁଇ ହାତରେ ଟିଭି ଆଡ଼କୁ ଦେଖେଇ ଠିଆ ହେଇଚି ଜଣେ ପୁରୁଣା ଶିକାରୀ ଢ଼ଂଗରେ । ମୋତେ ଦେଖି ସେ ହୋ ହୋ ହେଇ ହସି ଉଠିଲେ ।

ମୁଁ କିନ୍ତୁ ତା ହସରେ ଇଚ୍ଛା କରି ମଧ୍ୟ ଯୋଗ ଦେଇପାରୁ ନଥିଲି ଯଦିଓ ମୋ ଅଜାଣତରେ ସାମାନ୍ୟ ଚେନାଏ ହସ ସେତେବେଳକୁ ମୋ ଓଠ ଉପରେ ଝୁଲି ସାରିଥିଲା ।

*(ଯୁବ ସମାଜ, ସ୍ୱତନ୍ତ୍ର ସଂଖ୍ୟା, ୧୯୯୭)*



# ଥୁଣ୍ଟା ଗଛ

ସୁଜାତା ସେମିତି ଛିଡ଼ା ହେଇଥିଲା । ଆଗରେ ଖୋଲା ଝରକା ଭିତରେ ସେ ଦେଖୁଥିଲା ସକାଳର ଫାଙ୍କା ଆକାଶକୁ । ଆକାଶର ଶେଥା ଜହ୍ନକୁ ଓ ଜହ୍ନର ପେଚ୍ଛୁଆ ଆଖିକୁ । ଆଉ ସେ ଆଖିରେ ଉଜବୁଜ୍ ହେଉଥିଲା କେତେ ଦିନର ପୁରୁଣା ପ୍ରଶ୍ନ । ସୁଜାତା ଦେଖୁଥିଲା ସମୟ ଯେତିକି ବଢୁଚି, ଜହ୍ନଟା ସେତିକି ମରି ମରି ଆସୁଚି । ଲିଭି ଲିଭି ଆସୁଚି ତା'ର ଆୟୁଷ ଓ ଅସ୍ତିତ୍ୱ ।

ସେଇ ଥୁଣ୍ଟା ଆମ୍ବ ଗଛ । ମାତ୍ର ବର୍ଷକ ତଳେ ଯୋଉ ଆମ୍ବଗଛ ପତ୍ର କଅଁଳେଇ ଫୁଲେଇ ଫୁଲେଇ ଡାଳ ପତ୍ର ମେଲେଇ ଝାଙ୍କି ପଡୁଥିଲା । ପନ୍ଦର ଡେଇଁ ଷୋହଳରେ ପାଦ ଦେଇ କନ୍ କନ୍ ହେଉଥିବା କିମ୍ବା ପ୍ଲସ ଟୁରେ ପାଦ ଦେବାକୁ ସଜ ହେଉଥିବା ଝିଅଟି ପରି ସୁଜାତା ଦେଖିଲା ତାର ଆଜିର ଏ ଝରାପତ୍ରର ଛିନ୍ନ ଚେହେରାକୁ । କଳାହାଣ୍ଡିର ମରୁଡ଼ି ମର୍ମର ପଂଜରା ଗଣୁଥିବା ଜୁଆନ ଟୋକାର ଛାତି ପରି ଅନେଇ ଥାଏ ଯେମିତି ରିଲିଫ ଗାଡ଼ିକୁ । ରିଲିଫ୍ ଆସିବ । ଆସିବ ତ ?

ସେ ଗାଡ଼ି ଆସେନା । କେବେ ବି ଆସେନା ।

ସ୍ୱପ୍ନ ବି ମରେନା, କେବେ ବି ମରେନା । ବରାବର ଅପେକ୍ଷା, କରେ ଆସିବା ବାଟକୁ । ଯୁଦ୍ଧରେ ନିଖୋଜ ହେଇ ଯାଇଥିବା ସୈନିକଟିର ସଦ୍ୟ ବିବାହିତା ସ୍ତ୍ରୀ ପରି । ହୁଏତ ଖବର ଆସିବ- ସେ ମିଳିଚି, ସେ ଆସିବ ।

କିନ୍ତୁ ସେ ଖବର ବି ଆସେନା । ଆସେନା ମରୁଡ଼ି ଅଞ୍ଚଳକୁ ରିଲିଫର ଗାଡ଼ି । ଆସେନା ସେ ଆମ୍ବ ଗଛରେ ପତ୍ର କଅଁଳିବାର ବଉଳିଆ ବାସ୍ନା । ଆଉ କେବେ ବି ଆସେନା ସୁଜାତାକୁ ପସନ୍ଦ କରିଥିବା ବରଘରୁ ଚିଟାଉ ।

ଅପେକ୍ଷା ଅପେକ୍ଷାରେ କଟିଯାଏ । ସେମାନେ ଆସନ୍ତି । ଦେଖନ୍ତି । ଆଳାପ ଆଲୋଚନାରେ ବନ୍ଧୁତ୍ୱର ହାତ ବଢ଼େଇବାର ଇଙ୍ଗିତ ଦିଅନ୍ତି । ସୁଜାତା ପୁଣି ଥରେ ସଜ ହେଇ ଆସେ । ସମସ୍ତ ଆଶା, ବିଶ୍ୱାସ ଓ ଭରସାରେ ଗୋଟିପଣ ଗାଧୋଇ

ପାଖେଇ ସେ ପାଦ ଥାପି ଥାପି ଆସେ । ବସେ । ପଦେ ଦି'ପଦ କଥା ହୁଏ । ତା ପରେ ଉଠିଯାଏ ।

ସୁଜାତା ଜୀବନର ଅଲିଖିତ ନାଟକର ଗୋଟିଏ ପରେ ଗୋଟିଏ ଦୃଶ୍ୟ ଏମିତି ଅପସାରିତ ହେଇଯାଏ । ଦୃଶ୍ୟରୁ ଦୃଶ୍ୟାନ୍ତର । ଆରମ୍ଭ ହୁଏ । ସରେ । ପୁଣି ଆରମ୍ଭ ହୁଏ କେବଳ ସରିବାକୁ । ସୁଜାତା ଦେଖୁଥିଲା ସେଇ ଥୁଣ୍ଟା ଆମ୍ବଗଛକୁ । ବିରାଟ ଗଣ୍ଡିର ପ୍ରତ୍ୟେକଟି ଡାଳ, ବଡ଼ ଡାଳ, ଛୋଟ ଡାଳ, ଶାଖା ପ୍ରଶାଖା । ପୁଣି ପ୍ରଶାଖାର ପ୍ରଶାଖା, ସମସ୍ତେ ଯେମିତି ଅନେଇଚନ୍ତି ସେଇ ଆକାଶକୁ ।

ବାପା ଦାଣ୍ଡପିଣ୍ଡାରେ ବସିଥିଲେ । ତାଙ୍କ ଆଗରେ ବୋଉ ଥୋଇ ଦେଇଥିବା ଚା'ଟା କେତେବେଳୁ ଥଣ୍ଡା ହେଇ ଗଲାଣି । ଥଣ୍ଡା ହେଇଥିବା କପରୁ ଆଉ ବାମ୍ଫ ଉଠୁନି । ବାପା ହୁଏତ କପକୁ ଦେଖୁଚନ୍ତି କିନ୍ତୁ ଜାଣି ପାରୁନାହାନ୍ତି ଯେ.ତାଙ୍କ ଆଗରେ ଚା' କପ ଥୁଆ ହେଇଚି ।

ବୋଉ ଚା' କପ ଥୋଇ ଆସିଲା ବେଳେ ସୂର୍ଯ୍ୟ ପ୍ରତିଦିନ ଉଇଁଲା ପରି କହେ, ନିଅ, ଚା' ଥଣ୍ଡା ହେଇ ଯିବ । ଏଥର କିନ୍ତୁ ସେ କଥା କହିଲାନି । କେମିତି ଗୋଟେ ନିରୁତ୍ତାପିତ ହାତ ବଢ଼େଇ ଖାଲି ଥୋଇ ଦେଇ ବାପାଙ୍କୁ ଟିକିଏ ଦେଖିଦେଲା ଏବଂ ମୁହଁ ଫେରେଇ ନେଇ ଲୁଗା କାନିରେ ଆଖି ପୋଛି ଫେରି ଆସିଲା ।

ସୁଜାତା ପାଦ ଥାପି ଥାପି ବାପାଙ୍କ ପାଖକୁ ଆସିଲା ଏବଂ ତା'ପରେ ଅନେକ ସାହସ, ଧୈର୍ଯ୍ୟ ଓ ଦମ୍ଭ ସଂଚୟ କରି ଘର ଭିତରେ ମାଡ଼ି ବସି ରାଜତ୍ୱ କରୁଥିବା ଅସ୍ୱାଭାବିକ ନୀରବତାକୁ ଠେଲି ପେଲି ନିକାଲି ଦେଇ କହିଲା, ''ବାପା ଚା'ଟା ଥଣ୍ଡା ହେଇ ଗଲାଣି । ମୁଁ ଆଉ ଥରେ ଗରମ କରି ଆଣୁଚି ।'' ସେ ଚାଲିଗଲା ।

ସୁଜାତା ଫେରି ଆସିଲା । ଗରମ ଚା' କପଟା ବାପାଙ୍କ ହାତକୁ ବଢ଼େଇ ଦେଇ କାଛକୁ ଆଉଜି ଠିଆ ହେଲା ।

ବାପା ଚା' ପିଇବା ଆରମ୍ଭ କଲେ ।

'ଗୋଟାଏ କଥା କହିବି ବାପା ?'' ସୁଜାତା ଆରମ୍ଭ କଲା ।

''କଅଣ ?''

'ଅଂଜଳି ନାନୀ ନୁହେଁ ? ଯିଏ ଏଥର ସରପଞ୍ଚ ହେଲେ ? ତାଙ୍କ ସାଥିରେ ଦେଖା ଦେଇଥିଲା । ସେ କହୁଥିଲେ ଏଥର ମୋ ପାଇଁ ଅନ୍ତତଃ ଲକ୍ଷେ ଟଙ୍କାର ଗୋଟାଏ ଲୋନ କରାଇ ଦେବେ । ଘରେ ବସିବା ଅପେକ୍ଷା କିଛି ଗୋଟାଏ କଲେ ହୁଅନ୍ତାନି ? ତୁମେ ବି ତ ଆଉ ଚାରି ମାସ ପରେ ରିଟାୟାର କରିବ ।''

ବାପା ତଳକୁ ମୁହଁ ପୋତିଲେ ।

ସୁଜାତା ବାପାଙ୍କର ଶୀତଳ ଉଦାସୀନତାକୁ ଉଖାରିବାକୁ ଚେଷ୍ଟା କଲା । ସେ କହିଲା, ତୁମ କଥାତ ଏଯାଏ ମାନି ଆସିଲି । ତୁମେ ମୋତେ ଏମ୍.ଏ.ପାଶ କରିବାକୁ କହିଲ, କଲି । ତୁମେ ମୋତେ ପି.ଏଚ.ଡ଼ି କରିବାକୁ କହିଲ, ତା ବି କଲି । ମୋତେ ବିବାହ ପାଇଁ ପ୍ରସ୍ତୁତ ହେବାକୁ କହିଲ, ସେଥିରେ ମଧ ମୁଁ ରାଜି ହେଲି । ମୋ ପାଇଁ ଚାକିରି ଖୋଜିଲ, ମୁଁ ସେଥିପାଇଁ ମଧ ପ୍ରସ୍ତୁତ ହେଲି ଏବଂ ଅନେକ ଜାଗାରେ କୃତିତ୍ୱର ସହତ ଉତ୍ତୀର୍ଣ୍ଣ ହେଲି ମଧ । କିନ୍ତୁ କେତେଦିନ ଆଉ ସେ ଅସରନ୍ତି ଅସମାପିକା କ୍ରିୟାର ପୁଚ୍ଛ ଧରି ଅକ୍ଷାଂଶରୁ ଦ୍ରାଘିମାଯାଏ ଅନେକ ଶୋଷକୁ ଆକଣ୍ଠ କରି ଅପେକ୍ଷା କରିବି ଯେ ?

ବାପାଙ୍କ ଛାତି ଭିତରର କ୍ଷତଟାକୁ କିଏ ଯେମିତି ଫୋଡ଼ିଦେଲା । ସେ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ ।

ସୁଜାତା ଏକଥା ଜାଣିଲା, କିନ୍ତୁ ଛେପ ଢ଼ୋକିଲା । ଛାତିକୁ ଦମ୍ଭ କଲା । ଉଠିଆସୁଥିବା କୋହକୁ ଜୋର କରି ଚାପି ରଖିଲା ଏବଂ କହିଲା, ''ତୁମେ ଆଉ ଏଣିକି କାହାକୁ ଡକାଡକି କରନା । ସେମାନେ ଖାଲି ଆସୁଥିବେ, ଦେଖୁଥିବେ ଆଉ ଯାଉଥିବେ । କଅଣ ଆଉ ମିଳିବ ସେଥିରୁ ?'' ଡାହାଣ ହାତର ବିଶି ଆଙ୍ଗୁଳି ନଖରେ କାନ୍ଥରେ ମାଟି ଖୋଳୁ ଖୋଳୁ ସେ କହିଲା କାନ୍ଥ ଦେହରେ ମୁହଁକୁ ଗେଞ୍ଜି, ଯେମିତି ପିଲାକାଳେ ସେ ମାଆ କୋଳରେ ରାଗ ଅଭିମାନ କରି ମୁହଁ ଗେଞ୍ଜୁ ଥିଲା ।

ଏକଥା କହିଲା ବେଳେ ସୁଜାତା ଭାବୁଥିଲା ଜଗନ୍ନାଥଙ୍କ ପହଡ ପରେ ସିଂହଦ୍ୱାରର ଦରଜା ବନ୍ଦ ହେଇଗଲା । ଆଉ ଖୋଲିବନି, କେବେ ବି ଖୋଲିବନି ଯେମିତି ।

ସେମିତି ସୁଜାତାର ଅଷ୍ଟବିଂଶତିତମ ବସନ୍ତ ଆଜି ପୋଡ଼ି ବୈଶାଖର ଧୂ ଧୂ ନଈବାଲି ହେଇଗଲା । ସେ ନିଜେ ସେ ସିଂହଦ୍ୱାରର ଦରଜା ବନ୍ଦ କରିଦେଲା । ଆଉ ଶୀତଳ ନଈ ପାଣିକୁ ପଛ କରି ଏଣିକି ତତଲା ବାଲିକୁ ହିଁ ସେ ଆପଣାର କରିନେଲା । ଆଉ ପଛକୁ ଚାହିଁବନି କି ଭବିଷ୍ୟତର ସ୍ୱପ୍ନକୁ ନେଇ ପଣତରେ ବାନ୍ଧିବନି ।

ବାପା ତା ମୁହଁକୁ ଅନେଇଲେ । ହସିଲେ । ତା ପରେ କହିଲେ ଏଇଟା କଅଣ ଗୋଟାଏ ରାସ୍ତା ? ସେ ରାସ୍ତାରେ ତୁ ଯାଇ କଅଣ କରିବୁ ? ସେଇଟା ତୋ ପାଇଁ ନୁହେଁ ।

ସୁଜାତା ତାର ବିରାଟ ଭବିଷ୍ୟତର ଦରଜାଟାକୁ ନିଜ ହାତରେ ବନ୍ଦ କରିଦେଇଥିବାର ଅନ୍ତର୍ଦାହରୁ ଉଠି ଆ୍‌ସୁଥିବା କୋହକୁ ଚାପି ରଖି କହିଲା ଅଂଜଳି ନାନୀ ଉପରେ ଥରେ ଭରସା ରଖାଯାଉ । ମୋ କଥାବି ତମେ ଆଉ ଚିନ୍ତା କରନା । ମୋତେ

ବି ଟିକେ ସୁଯୋଗ ଦିଅ । ଦେଖ ଥରେ । ଟିକିଏ ରହି ସେ ପୁଣି କହିଲା, ମୁଁ ଆଜି ଅଞ୍ଜଳି ନାନୀକୁ ଡାକି ଆଣିବି । ଆଜି ସନ୍ଧ୍ୟାରେ । ତା'ପରେ ସେ ଘର ଭିତରକୁ ଏକ ପ୍ରକାର ଦୌଡ଼ି ଦୌଡ଼ି ଚାଲିଗଲା ।

ଓଲଟପୁର ବ୍ଲକ ଅଫିସର ବଡ଼ବାବୁ ସେଦିନ ଚିଠିଟାକୁ ନେଇ ପାଞ୍ଚ ଥର ବିଡ଼ିଓଙ୍କ ଅଫିସରୁ ଫେରିଲେଣି । ସାହେବ ଏ ଯାଏ ଅଫିସ ଆସି ନାହାନ୍ତି । ଦିନ ବାରଟା । ପିଅନ ଯାଇ ଘରୁ ଫେରି ଆସିଲାଣି । ସାହେବ ଆସିବେ । ପିଅନ ଆସି କେବଳ ଏତକ ସମ୍ବାଦ ପରିବେଷଣ କରିଦେଇଚି ।

ଢେନାବାବୁ ପୁଣି ଥରେ ଫାଇଲ ଉଠେଇଲେ । ଚଷମାଟାକୁ ଯତ୍ନର ସହିତ ଆଖିରେ ରଖି ସେ ପୁଣି ଥରେ ଅଫିସ ଦୁଆର ମୁହଁକୁ ଗଲା ବେଳକୁ ପିଅନ କହିଲା ସାହେବ ଡାକୁଚନ୍ତି ।

ଢେନାବାବୁ ଫାଇଲଟିକୁ ସାହେବଙ୍କ ହାତକୁ ବଢ଼ାଇ ଦେଲେ ଏବଂ ସ୍ୱସ୍ତିରେ ଟିକିଏ ନିଃଶ୍ୱାସ ମାରିଲେ । ଟିକିଏ ରହି ସେ କହିଲେ, ସାର୍ ଦେଖିଲେ ସେ ମେସେଜଟାକୁ । ମୋଷ୍ଟ ଅରଜେଣ୍ଟ । କାଲି ସ୍ପେଶିଏଲ୍ ମେସେଞ୍ଜର ଦ୍ୱାରା କଲେକ୍ଟରଙ୍କ ଠାକୁ କମ୍ପ୍ଲାଏନ୍‌ସ ରିପୋର୍ଟ ଯିବ ।

ବିଡ଼ିଓ ଦେଖିଲେ । ଥରେ ନୁହେଁ । ଦୁଇ ଥର । ତିନି ଥର । ତା' ପରେ ଟିକିଏ ବିରକ୍ତ ହେଲେ ବୋଧେ । ଫାଇଲ୍‌ରୁ ଆଖି ଉଠେଇ କହିଲେ କଅଣ ମାଗୁଚି ସିଏ କହିଲେ ? ଆପଣ ପଢ଼ିଚନ୍ତି ତ ଚିଠିଟାକୁ ?

ପଢ଼ିଚି ସାର । ଯା ଆଗର ଚିଠିଗୁଡ଼ାକ ମଧ୍ୟ ପଢ଼ିଚି । ତାକୁ ଫ୍ଲାଗ ମାରିଚି । ଆପଣ ମଧ୍ୟ ଦେଖନ୍ତୁ ।

ସେ ସବୁ ଦେଖିବାକୁ ମୋର ବେଳ କାହିଁ ? ଆପଣ ଟିକେ ମୁହଁରେ କହିଲେ ।

ଢେନାବାବୁ କହିଲେ ନାରୀମାନଙ୍କ କଲ୍ୟାଣ ପାଇଁ ଯୋଉ ଯୋଜନା ହେଇଚି ସେ ଟଙ୍କାକୁ ମୋଟାମୋଟି ଭାବରେ ଏଇ ବର୍ଷ ଭିତରେ ସାରିବାକୁ ହେବ । ଅଧିକ ଅର୍ଥ ଦରକାର ହେଲେ ବେନିଫିସିଏରୀଙ୍କ ପାଇଁ ଜଷ୍ଟିଫିକେସନ ସହ ଲେଖିବାକୁ ହେବ । ମୋଟ କଥା ଆର୍ଥିକ ବର୍ଷ ଶେଷ ସୁଦ୍ଧା ଅନ୍ତତଃ ଅଣିଭାଗ ବେକାର ଯୁବତୀ ଏ ସହାୟତା ନିଶ୍ଚୟ ପାଇବେ । ଏଇଟା ହେଲା ପ୍ରଥମ ଭାଗ । ଦ୍ୱିତୀୟ ଭାଗଟି ହେଲା...

''ସେଇଟା ମୁଁ ଜାଣେ । କିନ୍ତୁ ଏତେ ଘୋଡ଼ା ଦୌଡ଼ କାହିଁକି ?''

ଏଇ ପଞ୍ଚାୟତ ନିର୍ବାଚନ ପାଇଁ କରାଯାଇ ଥିଲା । ସେଇଟା ତ ସରିଲାଣି । ଢେନାବାବୁ ହସିଲେ ।

ମେଣ୍ଟ ଆଉ କେତେ ଦିନ ? ଭାଙ୍ଗି ଯାଇପାରେ । କାଦୁଅ ଫିଙ୍ଗା ଫିଙ୍ଗିରେ

'କେତେ ଦିନ ଚଳିବ ? ଆଉ ଯଦି ରହେ ତେବେ ଏ ସ୍କିମ୍‌ର ଅବସ୍ଥା କଅଣହେବ କେଜାଣି । ଅର୍ଥମନ୍ତ୍ରୀ ପଞ୍ଚାୟତ ମନ୍ତ୍ରୀଙ୍କୁ ଦେଖି ପାରନ୍ତିନି ଏ କଥା କଅଣ ଅଜଣା ହେଇଅଛି ?

ଟିକିଏ ରହି ବିଡ଼ିଓ ପୁଣି କହିଲେ, ଆମକୁ ସେଥିରୁ କଅଣ ମିଳିବ ? ତୁମେ ଯାହା କରୁଚ କର । ମୋତେ ପଚାରିବା ଦରକାର ନାହିଁ । ଯାଅ କାମ ଆରମ୍ଭ କରିଦିଅ । ସେ ସେଥିରେ 'ଫର୍ ଇମିଡିଏଟ୍ ଆକ୍ସନ୍' ବୋଲି ଲେଖି ଜେନାବାବୁଙ୍କୁ ଫାଇଲ୍ ଧରେଇ ଦେଲେ ।

ଅଞ୍ଜଳି ନାନୀ ଯା' ଭିତରେ ସୁଜାତାଙ୍କୁ ନେଇ ପ୍ରାୟ ପାଞ୍ଚ ଥର ବିଡ଼ିଓଙ୍କ ସହିତ ଦେଖା କରି ଗଲେଣି । ସ୍କିମ୍‌ଟାକୁ ରେକମଣ୍ଡ କରିବା ପୂର୍ବରୁ ସେ ସୁଜାତା ଓ ଅଞ୍ଜଳି ନାନୀଙ୍କ ସହିତ ଆଲୋଚନା ମଧ୍ୟ କରି ସାରିଚନ୍ତି । ଖାଲି କଲେକ୍ଟରଙ୍କ ଠାରୁ ମଞ୍ଜୁରୀ ଆସିଲେ ହେଲା ।

ସୁଜାତା ଏବେ ଆଉ ପଛ କଥା କିଛି ଭାବୁନାହିଁ । ସେ କେତେଥର କହିଲାଣି ଏ ଥୁଣ୍ଟା ଆମ୍ବଗଛଟିକୁ କାଟି ଦେଇ ସେଠୁ ତା'ର ମୂଳ ଉପାଡ଼ି ଫୋପାଡ଼ି ଦେବାକୁ । ସେ ଗଛଟା ଥିବା ଯାଏ ସେଠି ଆଉ ତା ମୂଳରେ ଘାସ ଗଛଟିଏ ମଧ୍ୟ ବଢ଼ି ପାରୁନାହିଁ । ସେ ଗଛ ଜାଗାରେ ନୂଆ ଗଛ ଲଗେଇବାକୁ ସେ କେତେ ଥର ବାପାଙ୍କୁ ପ୍ରସ୍ତାବ ଦେଲାଣି । ବାପା ବୋଉ ମଧ୍ୟ ସୁଜାତାର କଥାକୁ ଏବେ ଗୁରୁତ୍ୱ ଦେବା ଆରମ୍ଭ କଲେଣି ।

ସେ ଦିନ ସକାଳେ ସୁଜାତା ଚା' ପିଉ ପିଉ ବାପାଙ୍କୁ କହିଲା, ତାର ଭବିଷ୍ୟତ ଯୋଜନା ସମ୍ପର୍କରେ । ସେ କହିଲା ବିଡ଼ିଓ ବେଶ ଭଲ ଲୋକ । ଲୋକଙ୍କ କଥା ଶୁଣୁଚନ୍ତି ଓ ବୁଝୁଛନ୍ତି ଏବଂ କେମିତି କଅଣ କରିବାକୁ ହେବ ସେ ସବୁ କଥା ସବୁ ଭଲ ଭାବରେ ବୁଝେଇ ଦିଅନ୍ତି । ଏଇ ସହୃଦୟତା କେତେ ଜଣଙ୍କଠି ମିଳିବ କହିଲେ ? ମୋର ସେ ଯୋଜନାଟା ପାଇଁ ତାଙ୍କ ଉପଦେଶ ଅନେକ କାମ ଦେଲା ।

ଚା' କପଟା ଥୋଇ ଦେଇ ସେ କହିଲା ଏ ଅଫିସରଟା ଯଦି ଏଠି ଦୁଇ ତିନି ବର୍ଷ ରହିଯାଏ ତେବେ ଏ ଅଞ୍ଚଳଟା ସୁନା ପାଲଟିଯିବ । କଲେକ୍ଟରଙ୍କ ସାଙ୍ଗରେ ଝଗଡ଼ା କରି ଟଙ୍କା ମଞ୍ଜୁର କେତେ ଜଣ କରନ୍ତି ?

ସୁଜାତାର ମୁହଁରେ ସେ ଦିନ ବାପା ଦେଖୁଥିଲେ ପ୍ରଥମ ସୂର୍ଯ୍ୟୋଦୟର ନୂତନ ରଙ୍ଗ ।

ହେଇ ଯେ ଅଞ୍ଜଳି ନାନୀ ଆସିଲେଣି । ଆଉ ସୁଜାତା କାହିଁ ? ଆପଣ ଏକୁଟିଆ ଯେ ? ଜେନାବାବୁ ପଚାରିଲେ ।

ସେ ଆଉ ଯିବ କୁଆଡ଼େ ? ସେ ମୋ କାନି ଧରିଚି । ମୁଁ ଆପଣମାନଙ୍କ ପିଛା ଧରିଚି । ତାପରେ ସେ ଟିକିଏ ପଛକୁ ଅନେଇଲେ ଏବଂ କହିଲେ, ଆଜି ସେ ତା ଜୀବନର ନୂଆ କାମ ଆରମ୍ଭ କରିବ କି ନା । ସେଇ ଖୁସିରେ ସେ ଆପଣମାନଙ୍କ ପାଇଁ କିଛି ମିଠା ନେଇ ଆସୁଚି । ଆହା ବିଚାରୀ, ଭାରି ସ୍ନେହୀ ଝିଅଟାଏ କିନ୍ତୁ, ଆପଣ ତ ଦେଖୁଥିବେ ।

ସୁଜାତା ପଶି ଆସିଲା ଛୋଟ ହାଣ୍ଡିଟାଏ ହାତରେ ଧରି ଅଫିସ ଭିତରକୁ । ତା ମୁହଁରେ ଚେନାଏ ହସ ଓହଳି ରହିଚି ।

ଜେନାବାବୁ ତରତରରେ ଚେୟାର ଛାଡ଼ି ଉଠି ପଡ଼ିଲେ ଏବଂ କହିଲେ ନାନୀ ଟିକିଏ ଏ ଆଡ଼କୁ ଆସିଲେ । ଆଉ ସୁଜାତା, ତମେ ସେଇଠି ବସ ।

ବାରଣ୍ଡାର ଗୋଟିଏ କୋଣକୁ ଯାଇ ଜେନାବାବୁ କହିଲେ, ''ନାନୀ କଅଣ କରିବା କହିଲେ । କାଲି ରାତିରେ ମେସେଜ ଆସି ପହଞ୍ଚିଛି ସରକାରଙ୍କ ଆର୍ଥିକ ଦୁରବସ୍ଥା ଯୋଗୁ ସେ ସ୍କିମ୍‌ଟାକୁ ଏବେ ସ୍ଥଗିତ ରଖା ଯାଇଚି । ସୁଜାତାକୁ ଆପଣ ଟିକିଏ ବୁଝେଇ ଦିଅନ୍ତୁ । ଆର ବର୍ଷକୁ ମଞ୍ଜୁରୀ ଆସୁ, ତାପରେ ଦେଖିବା ।''

ଜେନାବାବୁ ଅଞ୍ଜଳି ନାନୀକୁ ଆଉ ଅନେଇ ନ ପାରି ତଳକୁ ମୁହଁ ପୋତିଲେ । ଆଉ ସେ ପଟେ ଖଣ୍ଡେ ଦୂରରେ ସୁଜାତା ପ୍ଲେଟମାନଙ୍କରେ ମିଠା ସଜାଡି ରଖୁଥିଲା । ସେ ଆଜି କାମ ଆରମ୍ଭ କରିବ ।

*(ଝଂକାର, ମେ, ୧୯୯୭)*



# ଗାଈ

**ସେ** ଦିନ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌ରେ ଯେଉଁ ଫାକ୍ସ ମେସେଜଟି ପହଞ୍ଚିଲା ତାହା ମୋଟାମୋଟି ଥିଲା ଏମିତି ।

ପ୍ରଧାନମନ୍ତ୍ରୀ ଆସନ୍ତା ମାସ ପାଞ୍ଚ ତାରିଖରେ ଗୋଟାଏ ଦିନିକିଆ ଗସ୍ତରେ ଆସିବେ । ଏହି ଗସ୍ତ ସମୟରେ ସେ ରାଜ୍ୟର ଦାରିଦ୍ର୍ୟର ସୀମାରେଖା ତଳେ ଥିବା ନିମ୍ନବର୍ଗର ଲୋକମାନଙ୍କର ତଥା ନାରୀ ଓ ଯୁବକମାନଙ୍କଠାରେ କିପରି ଆମ ଯୋଜନାର ସଫଳ ରୂପାୟନ ହୋଇପାରିଚି ତାର ଅନୁଧ୍ୟାନ କରିବେ ଏବଂ ସାଧାରଣ ସଭାରେ ଉଦ୍‌ବୋଧ ଦେବେ । ପ୍ରଧାନମନ୍ତ୍ରୀ ଏକଥା ମଧ୍ୟ ଚାହାନ୍ତି ଯେ ତାଙ୍କ ଗସ୍ତ ସମୟରେ ନୂତନ ଯୋଜନାମାନଙ୍କର ଶୁଭ ଦେବା ସଙ୍ଗେ ସଙ୍ଗେ ସରିଥିବା ଯୋଜନାମାନ ଉଦ୍‌ଘାଟନ କରି ତାକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିବେ । ତେବେ ଆରମ୍ଭ ହୋଇ ନ ଥିବା ଯୋଜନାମାନଙ୍କ ପାଇଁ ଏବେଠାରୁ ଚିନ୍ତା କରି ତାଲିକା ପ୍ରସ୍ତୁତ ହେବ ଏବଂ ପ୍ରଧାନମନ୍ତ୍ରୀଙ୍କ ଗସ୍ତ ସମୟରେ ସେ ସବୁକୁ ଗୋଟିଏ ଉଚ୍ଚସ୍ତରୀୟ ଆଲୋଚନାରେ ବିଚାର କରାଯିବ ।

ପ୍ରଧାନମନ୍ତ୍ରୀ ତାଙ୍କ ଗସ୍ତ ସମୟରେ, ଗତମାସ ତାଙ୍କ ଦପ୍ତରରୁ ଆସିଥିବା ଅଉଲ ନମ୍ବର ନିର୍ଦ୍ଦେଶ ଅନୁସାରେ ଯେଉଁ ପନ୍ଦରଟି 'ପ୍ରୋ-ପୁଅର' ଡିପାର୍ଟମେଣ୍ଟ ଖୋଲାଯାଇଛି ତାର କାର୍ଯ୍ୟ ମଧ୍ୟ ତଦାରଖ କରିବେ । ସେଥିରେ ଏକଥା ମଧ୍ୟ ଉଲ୍ଲେଖ ଥିଲା ଯେ ଚଳିତ ମାସ ପ୍ରଥମ ସପ୍ତାହରେ ରାଜ୍ୟ ମୁଖ୍ୟମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କୁ ତାଙ୍କ ସାତଦିନିଆ ବିଦେଶ ଗସ୍ତ ଉଦ୍ଦେଶ୍ୟରେ ଯାଉଥିବାବେଳେ ବିମାନ ବନ୍ଦରରେ ଭେଟି ପ୍ରଦେଶର ଉତ୍କଟ ଦାରିଦ୍ର୍ୟ, ବେରୋଜଗାରୀ, ବନ୍ୟା ଓ ମରୁଡ଼ି ଇତ୍ୟାଦିର ନିରାକରଣ ପାଇଁ ଯେଉଁ ମେମୋରାଣ୍ଡାମ ଦେଇଥିଲେ ଏବଂ ପ୍ରଦେଶ ପ୍ରତି ପ୍ରଧାନମନ୍ତ୍ରୀଙ୍କର ସଦୟ ଶୁଭଦୃଷ୍ଟି ନିବେଦନ କରିଥିଲେ ତାହା ସେ ଅନୁଧ୍ୟାନ କରୁଛନ୍ତି ଏବଂ ସେଥିପାଇଁ ରାଜ୍ୟକୁ କିପରି ସ୍ୱତନ୍ତ୍ର ତାଲିକାଭୁକ୍ତ କରାଯାଇପାରିବ ସେକଥା ପ୍ରଧାନମନ୍ତ୍ରୀ ନିଜେ ଚିନ୍ତା କରୁଛନ୍ତି । ତେବେ ରାଜ୍ୟରେ ବିଗତ ଚାରିବର୍ଷର ପ୍ରଳୟଂକରୀ ବନ୍ୟା ଏବଂ ତାକୁ

ଅନୁସରଣ କରିଥିବା ଭୟଙ୍କର ମରୁଡ଼ି ଜନିତ ଘଟିଥିବା ଅନାହାର ମୃତ୍ୟୁ ସମ୍ପର୍କରେ ଯାହା ମୋମୋରାଣ୍ଡାମ୍‌ରେ ଉଲ୍ଲେଖ ଅଛି ସେଥିରେ ପ୍ରଧାନମନ୍ତ୍ରୀ ଗଭୀର ଉଦ୍‌ବେଗ ପ୍ରକାଶ କରିଛନ୍ତି । ସେଥିରେ ଆହୁରି ମଧ ଥିଲା ଯେ ଆସନ୍ତା ଛଅମାସ ମଧରେ ପ୍ରଦେଶର ଦାରିଦ୍ର୍ୟ ଅଧ୍ୟୁଷିତ ଅଞ୍ଚଳରେ ଲୋକଙ୍କର ଶିଘ୍ର ଦୁର୍ଦ୍ଦଶାର ମୋଚନ ପାଇଁ ଗୋଟିଏ ପାକେଜ ପ୍ଲାନର ଘୋଷଣା କଥା ଚିନ୍ତା କରୁଛନ୍ତି । କିନ୍ତୁ ତାହା ଫିଫଟି ସେଆରିଂ ବେସିସ୍‌ରେ ହେବ କି ରାଜ୍ୟକୁ ଋଣ ଆକାରରେ ଦିଆଯିବ ସେ କଥା ମଧ ଚିନ୍ତା କରାଯାଉଛି ।

ସେକସନ୍ ମୁଖ୍ୟ ମେସେଜ୍‌ଟିକୁ ନେଇ ଯା ଭିତରେ ତିନିଥର ଯାଇ ଡେପୁଟି ସେକ୍ରେଟେରୀଙ୍କ ଅଫିସରୁ ଫେରି ଆସିଲେଣି । ଡେପୁଟି ସେକ୍ରେଟେରୀ ଏ ଯାଏ ଆସିନାହାନ୍ତି । ୧୧.୩୦ ହେଲାଣି ଦେଖି ସେକସନ୍ ମୁଖ୍ୟ ପୁଣିଥରେ ଡେପୁଟିଙ୍କ ପି.ଏ.କୁ ପଚାରିଲେ ତମେ ଟିକିଏ ସାହେବଙ୍କ ଘରକୁ ଫୋନ୍ କରି ବୁଝ ସେ କେତେବେଳେ ଆସିବେ ।

ପି.ଏ. ସାହେବ କହିଲେ ଫୋନ୍ କଲେ କଅଣ ହେବ ? ଆଜି ତାଙ୍କ ରାଣ 'ଲକ୍ଷ୍ମୀ' ର ତୃତୀୟ ଗର୍ଭରୁ ମଧ ଅଣ୍ଡିରା ବାଛୁରୀଟିଏ ଜନ୍ମଲାଭ କରିଥିବାରୁ ତାଙ୍କ ମନ ଖୁବ୍ ଖରାପ । ତେଣୁ ସେ ଆଜି ତିନିଟା ପୂର୍ବରୁ ଅଫିସ ଆସିବାର ସମ୍ଭାବନା ନାହିଁ । ସାକ୍‌ସେନା ବାବୁଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ଦୀର୍ଘ ତିରିଶ ବର୍ଷର ଚାକିରି ପରେ ସେ କେବେ ତାଙ୍କ କାମରେ ହେଳା କରିନାହାନ୍ତି । ତାଙ୍କ ଟେବୁଲ ଖାଲି ନ ହେବାଯାଏ ସେ ଅଫିସ ଛାଡ଼ନ୍ତିନି । ଟେବୁଲ ଖାଲି ହେବାକୁ ଯଦି ରାତି ଆଠ କି ନଅ ହୁଏ ସେଥିପ୍ରତି ତାଙ୍କର ନଜର ନଥାଏ ।

ସେ ଦେଖିଲେ ଫେକ୍ସ ବାର୍ତ୍ତାଟି ଡେପୁଟି ସେକ୍ରେଟେରୀଙ୍କ ଠାରୁ ସେକ୍ରେଟେରୀ । ସେଠୁ ପୁଣି ଚିଫ୍ ସେକ୍ରେଟେରୀ, ତାପରେ ପୁଣି ଚିଫ୍ ମିନିଷ୍ଟରଙ୍କ ସେକ୍ରେଟେରୀଙ୍କ ଦେଇ ଚିଫ୍ ମିନିଷ୍ଟରଙ୍କ ଠାକୁ ଯିବା ଏକାନ୍ତ ଜରୁରୀ । ଏ ସମସ୍ତ କାମ ଆଜି ଚାରିଟା ସୁଦ୍ଧା ହେବା ଦରକାର । ଏହା ସେ ବେଶ ଭଲ ଭାବରେ ବୁଝୁଥିଲେ ମଧ ତାଙ୍କର କିଛି କରିବାର ନଥିଲା । କାରଣ ଏମାନଙ୍କ ଭିତରୁ କାହାକୁ ବାଯପାସ୍ କରିବାର ପ୍ରଶ୍ନହିଁ ଉଠୁନାହିଁ ।

ସାକ୍‌ସେନା ବାବୁ ଡାଏରୀ ଦେଖିଲେ, ଆଜି ଶନିବାର । ସୋମବାର ସକାଳେ ଚିଫ୍ ମିନିଷ୍ଟର ଦିଲ୍ଲୀ ବାହାରି ଯିବେ । ସେଠୁ ଆସିବେ ଦୁଇଦିନ ପରେ । ଆସିବା ମାତ୍ରେ ବାହାରିଯିବେ ବମ୍ବେ । ସେଠି ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ପରେ ସେଇଠୁ ଚାଲିଯିବେ ଜାପାନ, ଗୋଟିଏ ତିରିଶ ଜଣିଆ କୃଷି ଓ ଶିଳ୍ପ ବିଶେଷଜ୍ଞ କମିଟିର ନେତୃତ୍ୱ ନେଇ ।

ଜାପାନରେ ସମବାୟ ଆନ୍ଦୋଳନକୁ ଦୁର୍ନୀତିମୁକ୍ତ କରି ତା ମାଧ୍ୟମରେ ଛତୁ, ଘାସ ଓ ଚାକୁଣ୍ଡା ଚାଷକୁ କିପରି ଅର୍ଥକାରୀକରି ହେବ ଯା ଫଳରେ ଗାଁରେ ଲୋକେ ସହରାଭିମୁଖୀ ନହେଇ କିମ୍ବା ଶିଳ୍ପ ଉପରେ ନିର୍ଭର ନ କରି ଚାଷକୁ ଏକ ଆଦର୍ଶଜୀବିକା ଭାବରେ ଗ୍ରହଣ କରିନେବେ ସେ ବିଷୟରେ ବିଚାର ବିମର୍ଷ କରିବେ । ତାଛଡ଼ା ଗ୍ରାମରୁ ବେକାରୀ ତଥା ଦାରିଦ୍ର୍ୟ ଦୂରୀକରଣ ପାଇଁ ମସିଣା ଓ ହେଁସ ବୁଣା, ପଥରରୁ ଶିଳ ଓ ଶିଳପୁଆ ତିଆରି କିମ୍ବା ଏପରିକି ବିଶେଷ ଭାବରେ ଜାତୀୟ ନେତାଙ୍କ ମୂର୍ତ୍ତି ତିଆରି, ଗ୍ରାମ୍ୟ ନାରୀମାନଙ୍କ ସୁନ୍ଦର ସୁନ୍ଦର କନ୍ଥା ସିଲେଇ ଏବଂ ରଦ୍ଦି କାଗଜରୁ ଠୁଙ୍ଗା ତିଆରି ଇତ୍ୟାଦିକୁ ଆଧୁନିକ ପ୍ରଣାଳୀରେ କୁଟୀରଶିଳ୍ପରେ ପରିଣତ କରି ଲୋକପ୍ରିୟ କରାଯାଇପାରିବ ସେ ବିଷୟ ମଧ୍ୟ ଆମ ବିଶେଷଜ୍ଞ କମିଟି ଅନୁଧ୍ୟାନ କରିବେ । ତା'ଛଡ଼ା ଫେରିଲାବେଳେ ତାଙ୍କର ଅଷ୍ଟ୍ରେଲିଆ ଓ ହଂକଂ ମଧ୍ୟ ଗସ୍ତ କରିବାର ଅଛି । ସେସବୁ ସ୍ଥାନମାନଙ୍କରେ କେତେଗୁଡ଼ିଏ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମରେ ତାଙ୍କର ଯୋଗ ଦେବାର ଅଛି ।

ଏସବୁର ଅର୍ଥ ହେଲା ପ୍ରଧାନମନ୍ତ୍ରୀଙ୍କର ଆସିବାର ଠିକ ଗୋଟିଏ ଦିନ ପୂର୍ବରୁ ମୁଖ୍ୟମନ୍ତ୍ରୀ ବିଦେଶ ଗସ୍ତରୁ ଫେରିବେ । ତେଣୁ ମେସେଜଟା ଯେମିତି ହେଲେ ଆଜି ଚାରିଟା ସୁଦ୍ଧା ଚିଫ୍ ମିନିଷ୍ଟରଙ୍କ ପାଖରେ ପହଞ୍ଚିବା ଦରକାର । ସାକ୍‌ସେନା ବାବୁ ଭାବୁଥିଲେ ଅନ୍ତତଃ ମେସେଜଟା ଡେପୁଟିଙ୍କ ପାଖକୁ ଚାଲିଗଲେ ତାଙ୍କ କାମ ଶେଷ । ଯଦିଓ ସେ ଭଲଭାବେ ଜାଣନ୍ତି ଯେ ଡେପୁଟି ସେକ୍ରେଟେରୀ କଅଣ ଏପରିକି ଚିଫ୍ ମିନିଷ୍ଟର ଦେଖିଲା ପରେ ମଧ୍ୟ ସବୁକାମ ତାଙ୍କୁ ହିଁ କରିବାକୁ ପଡ଼ିବ ।

ଦିନ ଗୋଟାଏ । ତଥାପି ଡେପୁଟି ସେକ୍ରେଟେରୀଙ୍କ ଦେଖାନାହିଁ । ସାକ୍‌ସେନା ବାବୁ ବ୍ୟସ୍ତ ହେଇପଡ଼ିଲେ । ଏବେ ଲଞ୍ଚ ଆୱାର ହୋଇଗଲା । ପୂରା ଅଫିସ୍‌ଟା ଖାଲି ହେଇଯିବ । କୁଆ କୋଇଲିବି ଦେଖିବାକୁ ନଥିବ ଏଠି । ଫାଇଲ ନବା ଆଣିବାତ ଦୂରର କଥା, ପାଣି ଗିଲାସେ ମଧ୍ୟ ଆଣିବାକୁ କେହି ଏଠି ନଥିବେ ।

ସମସ୍ତ ସୌଜନ୍ୟ ଓ ଶୃଙ୍ଖଳାର ବିରୁଦ୍ଧାଚରଣ କରି ଶେଷରେ ସାକ୍‌ସେନା ବାବୁ ଡେପୁଟିଙ୍କ ଘରକୁ ଫୋନ୍ ଲଗେଇଲେ । ଅର୍ଡ଼ରଲି ଫୋନ୍ ଉଠେଇ କହିଲା, ଆଜ୍ଞା, ଥରେତ କହିଲି ସାହେବ ତିନିଟାବେଳକୁ ଅଫିସ ଯିବେ । ତା' ପୂର୍ବରୁ ମୋଟେ ଯାଇପାରିବେନି । ସେ ଏବେ ଅନେକ ବ୍ୟସ୍ତ । ମୋଟେ ସେ କାମରୁ ଉଠି ପାରିବେନି । ମୁଁ କହିବି କେମିତି ? ତେବେ ସେ କହିଛନ୍ତି ଯେତେ ଜରୁରୀ ଫାଇଲ ଅଛି ସବୁତକ ତାଙ୍କ ଟେବୁଲ ଉପରେ ରଖି ଦିଅନ୍ତୁ । ସେ ଆସିଲେ ପ୍ରଥମେ ତାକୁ ଦେଖିବେ ।

ସାକ୍‌ସେନା ବାବୁ ବଡ଼ ବିନୟ ହେଇ କହିଲେ, ଆରେ ରୁସ୍ତମ୍ । ମୁଁ ଅଫିସରୁ

ବଡ଼ବାବୁ କହୁଚି । ତାଙ୍କ ପି.ଏ. ନୁହେଁ । ଇଯେ କଅଣ କରିବା କହିଲୁ ? ସାହେବଙ୍କ ପାଇଁ ଗୋଟେ ବହୁତ ଜରୁରୀ କଥା ଅଛି । କେମିତି ସେ ଜରୁରୀ କଥାଟା ତୋତେ କହିବି କହିଲୁ ? କିନ୍ତୁ ଖାଲି କହିଲି ବୋଲି ତୁ ଟିକିଏ ତାଙ୍କ କାନରେ ପକେଇ ପାରିବୁନି ?

ରୁସ୍ତମ ବଡ଼ବାବୁଙ୍କ କଥା ଶୁଣି କହିଲା, ସାବ୍ ରାମ୍‌ରାମ୍. ମୁଁ ଭାବିଥିଲି ପି.ଏ. ବୋଲି । ତେବେ ସାର ଶୁଣନ୍ତୁ । ମୁଁ ଅସଲ କଥାଟା କହିଦଉଚି । କଥାଟା ହେଲା ସାହେବ ଏଇନେ ମୋଟେ କଥା ହେଇପାରିବେନି । କାରଣ ଏଇନେ ଜଣେ ଗୁଣିଆ ଆସିଚି । ଗାଈର ଦୁଧ ଯେମିତି ହରଣ ହେଇ ନ ପାରେ ସେଥିପାଇଁ ସେ ମନ୍ତୁରାଇବ । ତା ପାଇଁ ଦରକାର ପାଞ୍ଚ ଆଙ୍ଗୁଳିର ତିନିଟି ଦୁବ ଘାସ ଏଆଡ଼େ ମିଳା ନାହିଁ ବୋଲି ଦୁଇଟା ଲୋକ ଯାଇଛନ୍ତି ଷ୍ଟାଡିଅମ ଆଡ଼େ । ସେଠୁ ଆସିଲେ ସେ କାମ ହେବ । ଯା ଭିତରେ ଗୁହାଳ ଚାରିପଟେ ଲୁହା କଣ୍ଟା ମନ୍ତୁରା ଯାଇ ପିଟା ଚାଲିଚି । ସାହେବ ସାହେବାଣୀ ସେଇଠି ବସିଚନ୍ତି । ସେଠୁ ଉଠିଲେ ଅଣ୍ଡିରା ବାଛୁରୀକୁ କିଣିବା ପାଇଁ ଯୋଉ ଦୁଇଟା ଲୋକ ଆସି ସକାଳ ପହରରୁ ବସିଛନ୍ତି, ସେମାନଙ୍କ ସହିତ କଥା ହେବେ । ଦରଦାମ ଛିଣ୍ଡିବ । ସେମାନେ ଯିବେ । ତାପରେ ଗାଧୁଆ ପାଧୁଆ ସାରି ପୂଜାରେ ବସିବେ । ତାପରେ ଖାଇବେ । ଟିକିଏ ବିଶ୍ରାମ ନେବେ । ତା ପରେ ଯାଇ ଅଫିସ ଯିବେ । କିନ୍ତୁ ଯିବେ ନିଶ୍ଚୟ ।

ସାକ୍‌ସେନା ବାବୁ ଫୋନ୍ ଛାଡ଼ିଦେଲେ ।

ତିନିଟା ବାଜିବା ପୂର୍ବରୁ ସାକ୍‌ସେନା ବାବୁ ଯାଇ ଡେପୁଟି ସେକ୍ରେଟେରୀଙ୍କ ଅଫିସ ଆଗରେ ଠିଆ ହେଇଗଲେ ଫାଇଲଟାକୁ ଧରି । ୩ ଟା ୨୦ରେ ସାହେବ ଅଫିସକୁ ଆସିବା ମାତ୍ରେ ସେ ଭିତରକୁ ପଶିଯାଇ ଫାଇଲଟାକୁ ଟେବୁଲ ଉପରେ ଥୋଇ ଦେଲେ । ଫାଇଲରେ 'ଇମିଡିଏଟ୍' ଫ୍ଲାଟ୍‌ଟା ସେ ଆଗରୁ ଲଗେଇ ଦେଇଥିଲେ । ସେଇଟା ନଲାଗିଲେ ସାହେବମାନେ ଫାଇଲକୁ ଆଡ଼ ନୟନରେ ମଧ ଅନାନ୍ତି ନାହିଁ ।

ସାହବ ଡେରିକରି ଅଫିସ୍‌କୁ ଆସିଲେ କଅଣ ହେଲା, ଆସିଲା ମାତ୍ରେ ହାତ ରାଜଧାନୀ ଏକ୍ସପ୍ରେସ୍ ପରି ଚାଲେ । ମୁହଁ ଟେକି ଅନ୍ୟ କାହାକୁ ଅନାନ୍ତି ନାହିଁ ।

କିନ୍ତୁ ହେଲେ କଅଣ ହେଲା, ସାକ୍‌ସେନା ବାବୁ ଫାଇଲଟାକୁ ଯୋଉଠି ରଖି ଦେଇଥିଲେ ସେଇଠି ପଡ଼ିରହିଲା । ଡେପୁଟି ଅନ୍ୟପଟୁ ଫାଇଲ ଦେଖିବା ଆରମ୍ଭ କଲେ, କାରଣ ସେ ଜାଣନ୍ତି ଯେ ଯୋଉ ଫାଇଲଟା କିରାଣୀଙ୍କ ହାତରେ ଆସିଥାଏ ସେଥିରେ ବେଳେ ବେଳେ ଭିତିରିଆ ଉଦ୍ଦେଶ୍ୟ ମଧ ଥାଏ । ସେ କଅଣ ଏମାନଙ୍କ ନାଡ଼ି ଚିପି ନାହାନ୍ତି ?

ସାକ୍‌ସେନା ବାବୁ ଘଡ଼ିକୁ ଦେଖି ବ୍ୟସ୍ତ ହୋଇପଡ଼ିଲେ । ସାଢ଼େ ତିନିଟା ବାଜି ସାରିଲାଣି । ସାହେବଙ୍କ ମତିଗତି ସେ ମଧ୍ୟ ଜାଣନ୍ତି । ତେଣୁ ବର୍ତ୍ତମାନ ଯେଉଁଭାବରେ ଫାଇଲ ଦେଖିବା ଆରମ୍ଭ ହେଲାଣି ସେଥିରେ ଆଜି ସନ୍ଧ୍ୟାସୁଦ୍ଧା ତାଙ୍କ ଫାଇଲର ଫିତା ଖୋଲା ହେବ ନାହିଁ ।

ଶେଷରେ ସେ ବାଧ ହୋଇ ପାଟି ଖୋଲିଲେ । କହିଲେ, 'ସାର୍ । ଏଇଟା ବଡ ଜରୁରୀ । ଦିଲ୍ଲୀରୁ ଆସିଛି ।'

ଡେପୁଟି କହିଲେ ଆଉ ଏଗୁଡ଼ା ଗ୍ରାମ ପଞ୍ଚାୟତରୁ ଆସିଛି ବୋଲି ଭାବୁଚ କି ?'

ସାକ୍‌ସେନା ବାବୁ ଆଉ କିଛି କହିଲେନି । ଟିକିଏ ପରେ ଡେପୁଟି କହିଲେ, 'ହଉ, ଦିଲ୍ଲୀରୁ କି ଲଡୁ ଆଣିଚ ଦେଖାଅ ।'

ଅତ୍ୟନ୍ତ ଉତ୍ସାହର ସହିତ ସାକ୍‌ସେନା ବାବୁ ଫାଇଲ୍‌ଟା ଉଠେଇ ଡେପୁଟିଙ୍କ ହାତକୁ ବଢ଼େଇଦେଲେ ।

ଲମ୍ବା ମେସେଜ୍‌ଟିରେ ଡେପୁଟି ଖାଲି ଥରେ ଆଖି ବୁଲେଇନେଲେ ଏବଂ ଛୋଟିଆ ଦସ୍ତଖତଟିଏ କରି ପୁଣି ସାକ୍‌ସେନା ବାବୁଙ୍କ ହାତକୁ ବଢ଼େଇଦେଲେ । ସେଇ ସେତକ ପାଇଁ ତ ସାକ୍‌ସେନା ବାବୁ ଅପେକ୍ଷା କରିଥିଲେ । ବାକି କଅଣ କରିବାକୁ ହେବ ସେ କଥା ସେ ଜାଣନ୍ତି । ତେଣୁ ସେଠି ଅପେକ୍ଷା ନ କରି ତୁରନ୍ତ ସେ ସେଠୁ ଫାଇଲ ନେଇ ଚାଲିଆସିଲେ । ତାପରେ ପିଅନ ହାତରେ ଫାଇଲଟା ସେକ୍ରେଟେରୀଙ୍କ ପାଖକୁ ପଠେଇ ଦେଇ ନିଜ ସିଟ୍ ପାଖକୁ ଫେରିଆସିଲେ ଏବଂ ଢ଼ଗଢ଼ଗ କରି ଗିଲାସେ ପାଣି ଉଦରସ୍ଥ କରିଦେଲେ ।

ଏଥର ସେ ଭାବିଲେ ଯା ହେଉ ଆଜି ରାତିଟା ନିଶ୍ଚିନ୍ତରେ କଟିଯିବ । ତାପରେ ଦେଖିବା କାଲିକୁ । ସେ ପକେଟରୁ ପାନ ଡ଼ବା କାଢ଼ି ଖଣ୍ଡେ ପାନ ପାଟିରେ ପୂରେଇଲେ ଏବଂ ଅଠା ଅଠା ହୋଇ ଯାଇଥିବା ପାଟିଟାକୁ ଟିକେ ରସାପ୍ଳୁତ କରି ପକେଇଲେ । ଆସନ୍ତାକାଲିର ରବିବାରଟିକୁ ସେ ଏଥର ମନର ସମସ୍ତ ଆହ୍ଲାଦ ଦେଇ ଉପଭୋଗ କରିବାକୁ ମନେ ମନେ ଗୋଟାଏ ପ୍ରସ୍ତୁତି ପର୍ବର ନକ୍ସା ଆଙ୍କି ପକେଇଲେ ।

ସେଦିନ ଦି ପହରର ଲମ୍ବା ସମୟଟା (ଯଦିଓ ସେଥିରୁ ଅଧାଅଧି ଚାଲି ଯାଇଥିଲା) ସାକ୍‌ସେନା ବାବୁଙ୍କୁ ଅତି ଛୋଟ ଜଣାଗଲା । ହଠାତ୍ ଘଡ଼ି ଦେଖିଲାବେଳକୁ ପାଞ୍ଚଟା ବାଜିଯାଇଥିଲା । ତଥାପି ଗଦାଏ 'ଇମିଡିଏଟ୍' ଫ୍ଲାଗ୍‌ର ଫାଇଲ ତାଙ୍କ ଟେବୁଲ ଟ୍ରେରେ ହତାଶ ହେଇ ଉପରକୁ ଅନେଇ ପଡ଼ିଥାଆନ୍ତି । ସେମାନଙ୍କୁ ଥରେ ଦେଖିଲେ । ତାପରେ ପିଅନକୁ ଡାକ ପକେଇଲେ, ରଣ ସିଂ, ରଣ ସିଂ ବେଟା ।

**ଖୋଳ**

ରଣ ସିଂ ଆସିବାରୁ ସାକ୍ସେନା ବାବୁ କହିଲେ ଏଗୁଡ଼ାକ ନେଇ ସେ ଆଲମିରାରେ ରଖ୍ଦେ । କାଲି କାଢ଼ିବୁ । ତାପରେ ପୁଣି କହିଲେ ନା ନା କାଲିତ ରବିବାର । ସେମିତି ରଖ୍ଦେ । ପରେ ଯେତେବେଳେ କହିବି ସେତେବେଳେ ବାହାର କରିବୁ ।

ରଣ ସିଂ ଫାଇଲଗୁଡ଼ାକ ନେଇଗଲା ପରେ ସାକ୍ସେନା ବାବୁ ଟେବୁଲଟାକୁ ଥରେ ଦେଖ୍ଲେ । ଯା', ଏକଦମ ସଫା ହୋଇଗଲା । ଏମିତି ବରାବର ରହନ୍ତା କି ?

ସାକ୍ସେନା ବାବୁ ସେଦିନ ପ୍ରଥମ କରି ପାଞ୍ଚଟା ବେଳକୁ ଘରକୁ ଯିବାକୁ ବାହାରିଲେ । ସେତେବେଳକୁ ଆଉ ଅଫିସ୍‌ରେ କେହି ନଥିଲେ । ସେ ରଣ ସିଂକୁ ରୁମ୍‌ରେ ଚାବି ପକେଇବାକୁ କହି ରୁମ୍ ବାହାରେ ଠିଆ ହୋଇଥିଲାବେଳେ ଅନ୍ୟ ଦିଗରୁ ଡେପୁଟି ସେକ୍ରେଟେରୀଙ୍କ ପିଅନ ଫାଇଲଟାଏ ଧରି ତାଙ୍କ ଆଡକୁ ଧପାକି ଆସୁଥିବାର ଦେଖ୍ଲେ । ଦୂରରେ ଥିଲେ ମଧ ଫାଇଲଟାକୁ ସାକ୍ସେନା ବାବୁ ଠିକ ଚିହ୍ନିପାରିଲେ । ଆରେ ଏଇଟାତ ସେଇ ଫାଇଲ ଯୋଉଟା ସେ ଏଇ ଟିକକ ଆଗରୁ ସେକ୍ରେଟେରୀଙ୍କ ଠାକୁ ପଠାଇଥିଲେ ତେବେ ଫେରିଲା କାହିଁକି ? ଅଧିକା ଆଉ କଅଣ ଦରକାର ଅଛି ଯେ ?

ସେ ଫାଇଲ ଖୋଲିଲେ । କି ଆଶ୍ଚର୍ଯ୍ୟ ଏତେ ଶିଘ୍ର ଫାଇଲ ମୁଖ୍ୟମନ୍ତ୍ରୀଙ୍କଠାରୁ ଫେରି ଆସିଲିଣି । ତେବେ କିଏ କହୁଚି ଦେଶର ଗଣତନ୍ତ୍ର ଫାଇଲ ଭିତରେ ବନ୍ଧା ହୋଇ ପଡ଼ିଚି ବୋଲି । ଛେ ଛେ. । ଅପନିନ୍ଦୁକ ଗୁଡ଼ାକ । ଏପରି କଲେ ପ୍ରଶାସନର ମେରୁଦଣ୍ଡ ଦୋହଲି ଯିବ ଯେ ।

କିନ୍ତୁ ଏ କଅଣ ? ସବୁ ଯାକ ନିର୍ଦ୍ଦେଶ ନେଇ ଫାଇଲଟା ତାଙ୍କରି ପାଖକୁ ଫେରି ଆସିଚି ।

ସେ ଆଉ ଯିବେ କଅଣ । ଲେଉଟି ଆସିଲେ ଚେଆର ପାଖକୁ । ସବୁଯାକ କାମ ଏବେ ତାଙ୍କୁଇ କରିବାକୁ ହେବ । ସବୁ ସେକସନ ଡିପାର୍ଟମେଣ୍ଟକୁ ଚିଠି ପଠାଅ । ନିର୍ଦ୍ଦେଶ ଦିଅ । କୋଅର୍ଡ଼ିନେଟ୍ କର । ପ୍ରୋଗ୍ରେସ ରିପୋର୍ଟ ତିଆରି କର । ଡିସକାସନ ପାଇଁ ନୋଟ ତିଆରି କର । ତାଙ୍କ ସେକସନର କାମ କେବେ ସରେ ନାହିଁ । ନଈବଢ଼ି ପରି ମାଡ଼ିଯାଏ । ଖାଲି ବର୍ଷାଋତୁରେ ନୁହେଁ, ସବୁ ଋତୁରେ ସମାନ ଭାବରେ । ସେ ଫାଇଲ ଭିତରେ ନିଜକୁ ହଜେଇ ଦେଲେ ବରାବର ପରି ।

ପ୍ରଧାନ ମନ୍ତ୍ରୀଙ୍କ ଆସିବା ଦିନ ଯେତିକି ପାଖେଇ ଆସୁଥାଏ ସମଗ୍ର ସେକ୍ରେଟେରୀଏଟ ଖାଲି ନୁହେଁ, ରାଜ୍ୟର ପ୍ରତ୍ୟେକ ଜିଲ୍ଲା କଲେକ୍ଟରଙ୍କ ଠାରୁ ଆରମ୍ଭ କରି ବି.ଡି.ଓ.ଓ ତହସିଲଦାର ପର୍ଯ୍ୟନ୍ତ ସମସ୍ତେ ଓ ସମସ୍ତଙ୍କ ଅଫିସ ସମାନ ତାଳ,

ଲୟ ଓ ମାନ ରକ୍ଷା କରି ନାଚିବାକୁ ଆରମ୍ଭ କଲେ । ରାଜ୍ୟର ପ୍ରଶାସନ ଯେମିତି ଦୀର୍ଘଦିନର କୁମ୍ଭକର୍ଣ୍ଣ ନିଦ୍ରା ପରେ ଏବେ ସମ୍ପୂର୍ଣ୍ଣ ଜାଗି ଉଠିଚି । କାହାକୁ ନିଃଶ୍ୱାସ ନେବାକୁ ବେଳ ନାହିଁ । ସରକାରୀ ଗାଡ଼ି, ଟେଲିଫୋନ୍, ଫେକ୍ସ ଓ ସ୍ପେଶିଆଲ ମେସେଞ୍ଜର ସମସ୍ତେ । ସେମାନେ ସମସ୍ତେ ଘଣ୍ଟା କଣ୍ଟା କେତେବେଳେ ବଦଳିଯାଇ ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ କେତେବେଳେ ଆସି କେତେବେଳେ ଯାଉଚି ମୋଟେ କିଛି ଜାଣିପାରୁ ନାହାନ୍ତି । ସମସ୍ତେ ଏକସଙ୍ଗେ ମୁଖର ହେଇ ଉଠିଛନ୍ତି । ସବୁ ଅମୂର୍ତ୍ତ ଏବେ ମୂର୍ତ୍ତ ହେଇ ଯାଇଛନ୍ତି କେବଳ ଗୋଟିଏ କଲମରେ ।

ପ୍ରଧାନ ମନ୍ତ୍ରୀଙ୍କ ଆସିବାର ଦିନକ ପୂର୍ବରୁ ସେକ୍ରେଟେରୀଏଟ୍‌ର ଗୋଟାଏ ବିରାଟ ପ୍ରକୋଷ୍ଠ ଆଲୋଚନା ପାଇଁ ଆସିଥିବା ଫାଇଲଗୁଡ଼ିକରେ ଏପରି ଭାବରେ ଭର୍ତ୍ତି ହୋଇଗଲା ଯେ ତା ଭିତରକୁ ଆଉ ଯିବାକୁ ରାସ୍ତା ରହିଲାନି ।

ପ୍ରଧାନମନ୍ତ୍ରୀଙ୍କ ଗସ୍ତ । ପୁଣି ସେ ଉନ୍ନୟନ ମୂଳକ ଯୋଜନାଗୁଡ଼ିକୁ ଅନୁଧ୍ୟାନ କରିବେ । କମ କଥା ନୁହେଁ । ସାରା ରାଜ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଗୋଟିଏ ଖିଅରେ ବନ୍ଧା ନହେଲେ ଚିରଦିନପାଇଁ ପ୍ରଗତିର ସୂର୍ଯ୍ୟ ଅସ୍ତମିତ ହେଇଯିବ । ସମସ୍ତଙ୍କୁ ପସ୍ତେଇବାକୁ ପଡ଼ିବ । ଶାସନର ଶିରପା ଭୂଲୁଣ୍ଠିତ ହେଇଯିବ ।

ବିରୋଧିଦଳ ମାଡ଼ି ବସିବେ । ମୁଖ୍ୟମନ୍ତ୍ରୀ ଠିକ୍ ଭାବେ ଦାବୀଗୁଡ଼ିକ ଉପସ୍ଥାପିତ କରିପାରିଲେନି । ଯୋଜନାର ସୁଫଳଗୁଡ଼ିକ ସେ ନିଜେ ଗ୍ରହଣ କରି ପାରିଲେନି । ଜନତାକୁ ଦେବେ କଅଣ । ତାଙ୍କର ଅଜ୍ଞତା, ଅଜ୍ଞାନତାକୁ ବା ସୁଧାରିବ କିଏ ?

ଆସନ୍ତା କାଲି ପ୍ରଧାନମନ୍ତ୍ରୀ ଆସି ପହଞ୍ଚିବେ । ପ୍ରୋଗ୍ରାମ ମୋଟାମୋଟି ପ୍ରସ୍ତୁତ । ମାନେ ଫାଇନାଲ ଷ୍ଟେଜ୍‌ରେ । ଆଉ କିଛି ବାକି ରହିଗଲା କି ନା ଆଉଥରେ ଦେଖି ନେଉଥିଲେ ସାକ୍‌ସେନା ବାବୁ ।

ଆଉ ଗୋଟିଏ ମେସେଜ ଆସିଲା ଦିଲ୍ଲୀରୁ । ପ୍ରଧାନମନ୍ତ୍ରୀଙ୍କ ସହିତ ଯୋଜନା କମିଶନଙ୍କ ଉପାଧକ୍ଷ ମଧ ଆସୁଛନ୍ତି । ଆହୁରି ଆସୁଛନ୍ତି ତାଙ୍କ ସହିତ ଶିଳ୍ପମନ୍ତ୍ରୀ ଓ ଅର୍ଥମନ୍ତ୍ରୀ । ସବୁ କାମ ଏଇଠି ଫଇସଲା ହେଇଯିବ । ତେଣୁ ପ୍ରଧାନମନ୍ତ୍ରୀ ଚାହାନ୍ତି ତାଙ୍କ ତୋଫାନୀ ଗସ୍ତକାଳରେ ରାଜ୍ୟପାଇଁ ସେ କଅଣ କଅଣ ଯୋଜନା ଘୋଷଣା କରିପାରିବେ- ଶୀଘ୍ର ଜଣାଅ ।

ଏଇଟା ପୁଣି କି ମେସେଜ୍ ? ସାକ୍‌ସେନା ବାବୁଙ୍କ ମୁଣ୍ଡ ବୁଲେଇ ଦେଲା ।

ଆମେ କଅଣ କରିବୁ ଏବଂ କଅଣ ଆଉ ବାକି ଅଛି ସେ କଥା ସିନା ଆମକୁ ଜଣା । ସେ ଆମକୁ କଣ ଦେବେ, କଅଣ ତାଙ୍କ ମନ ଗହନରେ ଉଙ୍କିମାରୁଚି ସେ କଥା ଆମେ କେମିତି ଜାଣିବା ? ସେ ତାଲିକା ଆମେ କେମିତି ତିଆରି କରିବା ?

ସେ ପୁଣି ଥରେ ଡେପୁଟିଙ୍କ ପାଖକୁ ଉଠିଗଲେ ।

'ସାର୍, ଏଇଟାର ଉତ୍ତର କେମିତି କଅଣ ହେବ ମୁଁ ମୋଟେ ବୁଝିପାରୁନି ।' ତାଙ୍କ କପାଳରେ ବିନ୍ଦୁ ବିନ୍ଦୁ ଝାଳ ।

ଡେପୁଟି ସେକ୍ରେଟେରୀ ତାଙ୍କର ସଦାଚଞ୍ଚଳ ହାତଟିକୁ ବନ୍ଦକରି ଟେବୁଲ ଉପରେ ଥିବା ଖଇନି ଡ଼ବାରୁ ଟିକିଏ ନେଇ ଓଠତଳେ ଢାକି ପୂରା ଫାଙ୍କା ମନରେ ସାକ୍ସେନା ବାବୁଙ୍କୁ ଅନେଇଲେ ଏବଂ କହିଲେ, 'ଅଚାନକ ଗାଈଟାର ଦୁଧ କେମିତି ହରଣ ହେଇଗଲା ହୋ ସାକସେନା ବାବୁ ? ଗୋଟାଏ ଟୋପାବି ନାହିଁ, ମୋ ନାତିଟା କଅଣ ଖାଇବ ? ଆମେ ତ ମହା ଚିନ୍ତାରେ ପଡ଼ିଯାଇଚୁ ?

'ଟିକିଏ VAS ଙ୍କୁ ଡାକିଲେନି ?' ସାକ୍ସେନା ବାବୁ କହିଲେ ମେସେଜଟାକୁ ଟେବୁଲ ଉପରେ ଥୋଇଦେଲେ ।

'ସେଗୁଡ଼ା କଅଣ କରିବେ ? ଏଇଟା କଅଣ ରୋଗ ବାଧକିହେଇଚି କି ?' ମେସେଜଟା ଉପରେ ଖଇନି ଡବାଟାକୁ ପେପାରୱେଟ୍ ପରି ଥୋଇ ସେ ଡାହାଣ ଗୋଡ଼ ଉପରକୁ ଟେକି ଆଙ୍ଗୁଳିଗୁଡ଼ାକୁ ଟାଣି ଫୁଟାଇବାକୁ ଲାଗିଲେ । ତାପରେ ପୁଣି ଗୋଡ଼ ତଳକୁ ନେଇ ସେ ସାକ୍ସେନା ବାବୁଙ୍କୁ ଚାହିଁ ପଚାରିଲେ ଭଲ ଗୁଣିଆ କେହି ତମ ନଜରରେ ଅଛି ? ଥରେ ଭଲକରି ଯଦି ଝାଡ଼ି ଦିଅନ୍ତା ତେବେ ପହ୍ନାରେ ହାତମାରିବା ଦରକାର ହୁଅନ୍ତାନି ।

ସାକ୍ସେନା ବାବୁ ମୁଣ୍ଡ କୁଣ୍ଡେଇଲେ । ତାପରେ କହିଲେ ନାହିଁ କାହିଁକି ? ଅନେକ ଅଛନ୍ତି । ତେବେ ଗାଁରେ । ଏଠି କାହିଁ ?

ଡେପୁଟି ଚେଆର୍‌ରେ ସିଧା ହୋଇ ବସିଲେ । କହିଲେ, ଠିକ୍ କହିଚ । ଏଠି ଭଲ ଗୁଣିଆ ମୋଟେ ନାହିଁ । ଗାଁରେ ଏମିତି ଗୁଣିଆ ଅଛନ୍ତି ନା ସେମାନେ ପରା ଶହେ କୋଶରୁ ସାପ ବିଷ ଝାଡ଼ି ଦେଇପାରନ୍ତି । ଗାଁରେ କେତେଟା ଡାକ୍ତର ଅଛନ୍ତି ? ରୋଗବାଧକ ଏବେବି ଏମିତି ଭଲ ହେଉଚି ନା ।

ତାପରେ ସେ କଥା ବଦଳେଇ କହିଲେ, କୋଉ ଗାଁ କଥା ତମେ କହୁଥିଲ ? କେତେ ଦୂର ? ରଣ ସିଂକୁ ପଠେଇଲେ ହେବନି ? ରାତି ପାହିଲାବେଳକୁ ଯେମିତି ତାକୁ ସାଇକେଲ ପଛରେ ବସେଇ ନେଇ ଆସନ୍ତା । କ୍ଷୀର ଅଟକି ପହ୍ନା ଫୁଲି ହେଁ ମୋଟ ହେଇଚି । କିନ୍ତୁ ହାତମାରିବାକୁ ଦଉଚି କି ? ତମେ ଦେଖିଲେ କାବା ହେବ ।

ସାକ୍ସେନା ବାବୁ ତ ବ୍ୟସ୍ତ ହେଉଥିଲେ । ସେ କହିଲେ, ଠିକ୍ ଅଛି । ମୁଁ ରଣ ସିଂକୁ ପଠେଇ ତାର ସବୁ ବ୍ୟବସ୍ଥା କରିଦେବି । କିନ୍ତୁ ଏଇଟା ସାର୍ ଟିକେ ଦେଖନ୍ତୁ ।

କଅଣ ଏଇଟା ?

ଦେଖୁ ନାହାନ୍ତି । ମୋ ମୁଣ୍ଡକୁ ତ କିଛି ବୁଝି ପଡୁନି । ପୁଣି ମୁହଁ ଉଠେଇ ଡେପୁଟି ଟିକିଏ ଦେଖିଲେ ତା ପରେ କହିଲେ, 'ଗାଈଟା ପାଞ୍ଚକିଲୋ ଦୁଧ ଦିଏ ହୋ । ଏଥର ମୋଟେ ନାହିଁ । ହଁ, କିଛି ରୋଗ ଥାଆନ୍ତା, ବେଶ ହୃଷ୍ଟପୁଷ୍ଟ । ଛୁଆ ହେଉଛି ବୋଲି କେହି କହିବ ? ଖିଆପିଆ ସବୁ ଠିକ୍ । କିଛି ଗୋଳମାଳ ନାହିଁ ।'

ସାକ୍ସେନା ବାବୁ କହିଲେ ମୁଁ ଏବେ ରଣ ସିଂକୁ ପଠେଇ ଦଉଚି । ସାର୍ ଏଇଟା ଟିକେ ଦେଖନ୍ତୁ ।

'କି ଓ ତମେ କହୁନ କଅଣ ଲେଖିବା ।'

'ମୁଁ ସାର୍ ବୁଝିପାରୁନି ।'

'ହଉ ମୁଁ ଲେଖି ଦେଉଚି । କିନ୍ତୁ ତମେ ଟିକେ ସେ କଥାଟା ଦେଖ । ସେ ଏବେ ଚାଲିଯାଉ ।

ଡେପୁଟି ମେସେଜ୍‌ଟାକୁ ଉଲଟେଇ ତା ପଛପଟେ ଲେଖିଲେ- ୧୩ଟା ଷ୍ଟିଲ ପ୍ଲାଣ୍ଟ୍, ୫ଟା ପାୱାର ପ୍ଲାଣ୍ଟ, ୩ଟା ତୈଳ ବିଶୋଧନାଗାର, ଦୁଇଟା ବନ୍ଦର ଓ...

ସେ ସେଇଠି ଅଟକି ଗଲେ ଏବଂ କହିଲେ, 'ଆଉ ଟିକିଏ ବଡ଼ କାଗଜ ସିନା ଆଣିଥାଆନ୍ତ ।'

ସେ କାଗଜଟା ସାକ୍ସେନା ବାବୁଙ୍କ ହାତକୁ ବଢ଼ାଇଦେଲେ । ତାପରେ ବ୍ୟସ୍ତ ହୋଇ କହିଲେ ତମେ ତାକୁ ଟିକିଏ ଜଲଦି ପଠେଇ ଦିଅ । ଆସିଲାବେଳେ ନାତିଟା ଯେମିତି ରାହା ଧରି କାନ୍ଦୁଥିଲା ନା ।

*(ଏକବିଂଶ ଶତାବ୍ଦୀ, ପୂଜା ବିଶେଷାଙ୍କ, ୧୯୯୭)*



# ଅଭିନ୍ନ ଭିନ୍ନ

ନଈର ନା ସତ୍‌ଲେଜ ଆଉ ଗାଁର ନା ସାତପୁର । ନଈଟା ବହି ଯାଉଚି ଯୁଗରୁ ଯୁଗକୁ । ଅତୀତରୁ ବର୍ତ୍ତମାନକୁ । ପୁଣି ବର୍ତ୍ତମାନରୁ ଭବିଷ୍ୟତକୁ । ଟାଣି ନେଇଯାଏ ଆଗକୁ ଓ ଆଗକୁ । ପଛକୁ ଅନାଏନା । ନଈ କେବେ ପଛକୁ ଦେଖେନା । ନଈ ଯେମିତି ଆଗକୁ ବଢ଼ି ବଢ଼ି ଯାଏ, ମଣିଷ ବି ସେମିତି ଆଗକୁ ବଢ଼େ । ଆଗକୁ ବଢ଼ିବା ହିଁ ଏମାନଙ୍କର ଧର୍ମ ।

କୋଉ ଆଦିମ କାଳରୁ ସତଲେଜ ନଦୀ ଓ ସାତପୁର ଗାଁର ଲୋକମାନେ ଏଇ ନୀତି ପାଳି ଆସୁଚନ୍ତି । ସେମାନେ ଆଗକୁ ବଢ଼ି ଯାଆନ୍ତି ହାତ ଧରା ଧରି ହୋଇ । ସୃଷ୍ଟିର ଆବହମାନ କାଳରୁ ସେଇ ନଈ ଓ ମଣିଷ, ସେଇ ନୀତି- ସମାନ ଓ ସମାନ୍ତର ସରଳରେଖା ପରି ଚାଲି ଆସୁଛନ୍ତି ।

ନଈର ସୁଅ କେତେବେଳେ କମିଯାଏ କେତେବେଳେ ବଢ଼ିଯାଏ । ପାଣି ଗୋଳିଆ ହୁଏ ପୁଣି ନିର୍ମଳ ହୁଏ । ସମୟ ସାଥିରେ ତାଳ ଦେଇ ନଈର ସୁଅ ପରି ସାତପୁର ଗାଁର ବି ଏମିତି ବେଳେ ବେଳେ ପରିବର୍ତ୍ତନ ହୁଏ । ପରିବର୍ତ୍ତନ ହୁଏ ତାର ଆକାର ଓ ପ୍ରକାରରେ । ତାର ଚଳଣି ଓ ଚରିତ୍ର ସବୁ ବଦଳିଯାଏ ସମୟ ସହିତ ।

କିନ୍ତୁ ସେମାନେ କେହି ନଈକୁ ଛାଡ଼ି ଦୂରେଇ ଯାଆନ୍ତିନି ।

କୋଉଠୁ ଆସୁଚି ସେ ନଈର ପାଣି ? ଏତେ ବି ମିଠା ? ଏତେ ମଧୁର ? ସେ ନଈର ପାଣି ସହିତ ସାତପୁରା ଗାଁର ଲୋକମାନେ ଆଉ କାହାକୁ ତୁଳନା କରି ପାରନ୍ତିନି ।

କାହା ସହିତ ତୁଳନା କରି ହେବ ? ନଈର ପାଣି ସହିତ ଆଉ କାହାକୁ ତୁଳନା କରି ହେବ ଯେ ? ଦୁଧ ? ମହୁ ? ପଇଡ଼ ପାଣି ? ସକାଳର କାକର ? କାହାକୁ ବା ତା ସହିତ ତୁଳନା କରି ହେବ ?

ନଈ ପାଣିଟା ସବୁବେଳେ ନଈ ପାଣି ପରି । ତାର ଆଉ ତୁଳନା ନାହିଁ । ତୁଳନା

ଥିଲେ ସେଇଟା ନଈ ପାଣି ହେଇ ନଥାଆନ୍ତା । ହେଇ ଥାଆନ୍ତା ଆଉ କିଛି । କଅଣ ସେଇଟା ? ତା' ବି କହି ହେବନି ?

ହଠାତ୍ ଦିନେ ଅଧ ରାତିରେ, ନିଘୋଡ଼ ନିଦରେ ସମସ୍ତେ ଶୋଇଥିଲା ବେଳେ, ମେଘ ଗର୍ଜୁଥିଲା ବେଳେ, ମେଘରୁ ବଜ୍ର ବର୍ଷା ହେଉଥିଲା ବେଳେ କାହାକୁ କୁହା ପୋଛା ନ କରି ସତଲେଙ୍ଗ ନଈ, ଅଜଗର ସାପ କର ଲେଉଟାଇଲା ପରି ତାର କାୟା ବିସ୍ତାର କଲା ଏବଂ ସାତପୁର ଗାଁକୁ ତିନି ଦିଗରୁ ଘେରି ପକାଇଲା । ଠିକ୍ ଯେମିତି ଆମେ ଦୁଇ ହାତରେ ଆଂଜୁଳାଏ ଫୁଲ ରଖି ଠାକୁରଙ୍କୁ ନିବେଦିତ କରୁଁ ।

ଗାଁଟା ଏବେ ସମ୍ପୂର୍ଣ୍ଣ ସୁରକ୍ଷିତ ହେଇଗଲା ପରି ହେଲା । ସେ ପଟେ, ପଶ୍ଚିମ ପଟରେ ଥିବା ଘଂଚ ଜଂଗଲରୁ ବାଘ କି ହେଟାଟାଏ ଆସି ସାତପୁର ଗାଁର ମେଣ୍ଢାକି ଛେଳିଟାଏ ଭିଡ଼ିନେଇ ଯୋଉ ଆତଙ୍କ ବେଳେ ବେଳେ ସୃଷ୍ଟି କରୁଥିଲେ ଏବେ ଆଉ ସେ କଥା ହେବ ନାହିଁ ।

ରାତି ପାହି ସକାଳ ହେଲା ବେଳକୁ ନଈ କୂଳରେ ଶହ ଶହ ଲୋକ । ସେମାନେ ନଈର ନବ କଳେବର ଦେଖି ତାଟକା ହେଇଗଲେ । ନଈ ଯେ ଖାଲି ଗାଁ ଲୋକଙ୍କୁ ପାଣି ଯୋଗାଏ ତା ନୁହେଁ ଗାଁଟାକୁ ଏବେ ତ ଦୁଇ ହାତରେ ଘୋଡ଼େଇ ପକେଇଚି । ସ୍ନେହରେ ? ଆଦରରେ ? ହେଇଥିବ । ତାର ମାୟା କିଏ କଳିବ ? ସେଇ ମାୟାରେ ଛନ୍ଦିହେଇ ପଡ଼ିଲେ ସାତପୁର ଗାଁର ଲୋକମାନେ ଅତି ନିବିଡ଼ ଭାବରେ । ଆଉ କହିଲେ ନଈ ଆମ ମାଆ । ସେଇ ଦିନୁଠୁ ସେମାନେ ନଈକୁ ମାଆ ବୋଲି ଡାକିଲେ । ସେ ଗାଁର ଲୋକେ ନଈକୁ ଉହ୍ନେଇବା ପୂର୍ବରୁ ପ୍ରଥମେ ତା ପାଣି ଆଣି ମୁଣ୍ଡରେ ମାରନ୍ତି । ନାଉରିଆ ନଈରେ ନାଆ ମେଲିବା ପୂର୍ବରୁ ତା ପାଣି ଆଣି ମୁଣ୍ଡରେ ଛୁଏଁ । ''ମାଗୋ ! ରକ୍ଷାକର'' କହି ଆହୁଲା ମାରେ ।''

ଏ ନଈର ପାଣି କୋଉଠୁ ଆସୁଚି ? ଛୋଟ ପିଲାଟିଏ ନଈର ସେ ଅକାତକାତ ପାଣି ଓ ସାପ ମୁଣ୍ଡ କଟା ପାଣିର ସୁଅ ଦେଖି ଏମିତି ଅଜବ ପ୍ରଶ୍ନଟିଏ ଥରେ ପଚାରିଥିଲା । ତା ଜେଜେ ତାକୁ ବୁଝେଇ ଦେଇ କହିଥିଲେ, ସ୍ୱର୍ଗରୁ ।

ସ୍ୱର୍ଗରୁ ? ନଈକୁ ପାଣି ସ୍ୱର୍ଗରୁ ଆସୁଚି ? କେମିତି ? କାହିଁ ମୋତେ ଦିଶୁନି ।

ଜେଜେ ତା ମୁଣ୍ଡ ଆଉଁସି ଦେଲେ । ବାୟାଟା । କିଛି ଜାଣିନି । ନଈର କେତେ କରାମତି ସେ କଥା ସେ କଳ୍ପନା ବି କରି ପାରୁନି । ତା ପରେ ତାକୁ କହିଲେ, ହେଇ ଦେଖ- ହେଇ ସେ ନଈର ଉପମୁଣ୍ଡାକୁ ଦେଖିଲୁ ।

ପିଲାଟି ଜେଜେ ତାଙ୍କ ଲମ୍ୱା ହାତ ବଢ଼ାଇଥିବା ଦିଗକୁ ଅନେକ ଦୂରକୁ ଆଖି ବଢ଼େଇ ଦେଖିବାକୁ ଚେଷ୍ଟା କଲା । ଯେଉଁ ଆଡ଼କୁ ଜେଜେଙ୍କ ଆଖି ଖେଂଚି ହେଇ

ଯାଉଚି ସେଇ କେନ୍ଦ୍ର ବିନ୍ଦୁର ଆଖପାଖ ଏବଂ କିଛିଟା ଉପରକୁ ମଧ ଆଖି ବୁଲେଇ ଦେଖିବାକୁ ଲାଗିଲା । ତାପରେ ନିରାଶ ହେଇ କହିଲା, କାହିଁ ସ୍ୱର୍ଗତ ମୋତେ ଦେଖାଯାଉନି । ତମ ଚଶମାଟା ଦେଲ ଜେଜେ । ସେ ଭାବିଲା ଏମିତି ଢ଼ିମା ଢ଼ିମା ଚଷମାଟା ଜେଜେ ଲଗେଇଛନ୍ତି ବୋଲି ବୋଧେ ସ୍ୱର୍ଗରୁ ନଈକୁ ପାଣି ଆସୁଥିବାଟା ସେ ଦେଖି ପାରୁଛନ୍ତି ? ଆଉ ତାର ଚଷମା ନଥିବାରୁ ସେ ଦେଖିପାରୁନି ।

ଜେଜେ ହସିଲେ । କହିଲେ ସ୍ୱର୍ଗଟା ଚଶମାରେ ଦେଖା ଯାଏନିରେ । ସେ ତାକୁ ବୁଝେଇବାକୁ ଚେଷ୍ଟା କଲେ । କହିଲେ ତୁ କଥାଟା ପ୍ରଥମେ ବୁଝିଗଲେ-ତାପରେ ଦେଖି ପାରିବୁ। ହେଇ ଦେଖ, ଏଇଟା ଉତ୍ତର ଦିଗ । ଏଇ ଦିଗରେ ହିମାଳୟ । ସେଇ ଦିଗରୁ ନଈଟା ଆସିଚି ନା ? ତାପରେ ଆଉ ଗୋଟାଏ କଥା । ତୁ ଟିକିଏ ବଡ଼ ହେଲେ ଜାଣିବୁ । ହିମାଳୟର ମଥାଟା ସ୍ୱର୍ଗକୁ ଲମ୍ବିଚି । ଏଥର ବୁଝିଲୁ ଏ ନଈକୁ ପାଣି କୋଉଠୁ ଆସୁଚି ?

ଜେଜେ ନଈ ପାଣି ଆଉ ଥରେ ଉଠାଇ ଆଣିଲେ ଏବଂ ନାତି ମୁଣ୍ଡରେ ଛିଞ୍ଚି ଦେଲେ ।

ସତଲେଜ ନଦୀ ପ୍ରତି ମାୟା ମମତା ଶ୍ରଦ୍ଧା ଓ ସମ୍ମାନ ଏମିତି ଭାବରେ ସେ ମଣିଷମାନଙ୍କର ଉପରୁ ତଳକୁ ଉହ୍ଲେଇ ଆସିଚି । ଯେମିତି ନଈର ପାଣି ସ୍ୱର୍ଗରୁ ତଳକୁ ଗଡ଼ି ଆସୁଚି ବୋଲି ସେମାନଙ୍କର ଧାରଣା ଯୁଗ ଯୁଗର ରହି ଆସିଚି ।

ଆଉ ଦିନକର କଥା । ନିଶା ଗର୍ଜୁଚି । ହଠାତ୍ କେମିତି ଗୋଟାଏ ବିକଟ ଚିତ୍କାର ସାତପୁରା ଗାଁର ସମଗ୍ର ଗଗନ ପବନକୁ ପ୍ରକମ୍ପିତ କରି ଦେଲା । ନଈର ଛାତି ଥରି ଉଠିଲା । କମ୍ପି ଉଠିଲା ପାଣି ଓ ପବନ । ରାତି ପାହିଲା ବେଳକୁ ନଈର ପାଣି ଲାଲ ହେଇ ଉଠିଚି । ରକ୍ତନଦୀ ? ଇସ୍, କି କୁତ୍ସିତ କି କଦର୍ଯ୍ୟ ସେ ନଈର ଦୃଶ୍ୟ । ଏମିତି କେମିତି ବଦଳି ଗଲା ? ସୃଷ୍ଟି ଆରମ୍ଭରୁ ତ ଏମିତି କେବେ ହେଇ ନଥିଲା । ନଈ ତାର ରୂପ ବଦଳାଏ ? ତାର କାୟା ବଦଳେଇବା କଥା ଆମେ ଜାଣୁଁ । କିନ୍ତୁ ଇଏ କଅଣ ? ମାଆ ଦେହରେ ରକ୍ତ । ଏଇଟା କଅଣ ମାଆର ରକ୍ତ ନା ଆଉ କାହାର ?

ତାପରେ କେତେଜଣ ଲୋକ ଆସିଲେ । ସେମାନେ ଫିତା ପକେଇ ଏ ପାଖରୁ ସେ ପାଖ ଯାଏ ମାପ କଲେ । ବାରମ୍ବାର ନଈର ଏପାଖ ସେପାଖ ହେଲେ । ଏ ପାଖରେ ପଥର ଖମ୍ବ ପୋତା ହେଲା । ଆଉ ସେ ପାଖରେ ବି । ଦୁଇ ପାଖରେ ଦୁଇଟି ଶିବିର । ସେମାନେ କହିଲେ ଆଜିଠୁ ତୁମେ ଏ ପାଖର ମଣିଷ । ଆଉ ସେମାନେ ସେ ପାଖର । ତମକୁ ସେ ପାଖକୁ ଯିବାକୁ ମନା । ଆଉ ସେମାନେ ଏ ପାଖକୁ ଆସିବାକୁ ମନା ।

ସେମାନଙ୍କ ପୃଥିବୀ ଦୁଇ ଫାଳ ହେଇଗଲା । ଗୋଟିଏ ଏ ପାଖରେ । ଆଉ ଗୋଟିଏ ସେ ପାଖରେ । ଯେଉଁମାନେ ଯୁଗ ଯୁଗ ଧରି ନିଜ ଚାରି ପାଖରେ ଗୋଟିଏ

ଗୋଲକ ସୃଷ୍ଟି କରି ଆସିଥିଲେ ନିଜ ପାଇଁ. ଖାସ୍ ନିଜ ପାଇଁ, ସେମାନେ ଆଜି ଦୁଇ ଭାଗ ହୋଇଗଲେ । ସେମାନଙ୍କ ମଝିରେ ଅଶରୀରି ପାଚେରୀଟିଏ ଆପେ ଆପେ ଗଢ଼ା ହୋଇଗଲା । କେବଳ ସେମାନଙ୍କୁ ଦୁଇ ଭାଗ କରିବାପାଇଁ ।

ମଝିରେ ରହିଲା ସତଲେଜ୍ । ଦୁଇ ମଣିଷଙ୍କୁ ଦୁଇ ବାହୁରେ ଧରି ସତଲେଜ ଶୋଇ ପଡ଼ିଚି । ସେ କାହାକୁ ପର କରିବ ? ଯାଆଁଳ ପିଲାକୁ କୋଉ ମାଆ ପର କରେ ? ସମସ୍ତେ କହନ୍ତି ସେଇ ଦିନଠୁ ଗଭୀର ରାତିରେ ନଇର କାନ୍ଦଣା ଶୁଣାଯାଏ । ସାତପୁରା ଗାଁର ଲୋକମାନେ ସେ କାନ୍ଦଣା କେତେଥର ଶୁଣିଛନ୍ତି ।

ପୁନମ୍ ନଈ କୂଳରେ ସେମିତି ବସିଚି । ମୁଣ୍ଡ ଉପରେ ଆକାଶ । ଆକାଶ ସାରା ପୃଥିବୀକୁ ଘେରି ରହିଚି । ପବନବି ସମଗ୍ର ଆକାଶକୁ ବ୍ୟାପି ଯାଇଚି । ବିନା ବାଧାରେ ସେମାନେ ଆକାଶ ସାରା ଘୂରି ବୁଲୁଛନ୍ତି । ନଈ ଏ ପାଖର ଆକାଶ, ସେ ପାଖର ଆକାଶ ଗୋଟିଏ । ଏ ପାଖର ପବନ ସେ ପାଖର ପବନ ବି ଗୋଟିଏ । ନଈ ଏ କୂଳର ଜଳ ସେ କୂଳର ଜଳବି ଗୋଟିଏ । ଏ ସମସ୍ତେ ଏକ ହେଉଥିଲା ବେଳେ ଏ ମଣିଷକୁ ଅଲଗା କଲା କିଏ ? ହେଇ ତ ସେ ପାଖରେ କିଆଫୁଲ ବାସ୍ନା ଏ ପାଖର ପବନକୁ ମହକେଇ ଦେଉଛି । ଆଉ ଏ ପାଖର ଭଅଁର ବି ସେ ପାଖକୁ ଉଡ଼ି ଯାଉଛି । ପ୍ରତିବଂଧକ ଏମାନଙ୍କ ପାଇଁ ନୁହେଁ ।

ପ୍ରତିବଂଧକ କେବଳ ଏଇ ମଣିଷ ପାଇଁ । କି ଅପରାଧ ଏ ମଣିଷ କରିଥିଲା ? ମଣିଷ ହେଇ ଜନ୍ମ ହବାଟା ଆଉ ଅପରାଧ ହେଲା କି ? ତେବେ କଅଣ ପାଇଁ ମଣିଷ ମଣିଷ ସହିତ ମିଶି ପାରୁନି ? ଭାଇକୁ ଭଉଣୀ ଠାରୁ ସ୍ତ୍ରୀକୁ ସ୍ୱାମୀଠାରୁ ଏବଂ ପ୍ରେମିକାକୁ ପ୍ରେମିକ ଠାରୁ ଅଲଗା କରି ଦିଆଯାଉଛି ?

ମଣିଷକୁ ତାର ସଂପର୍କ ଠାରୁ ଅଲଗା କରିବା ଅର୍ଥ ମାନବିକତା ଠାରୁ ଅଲଗା କରିବା ।

କିଏ ଏ ସବୁ କରୁଚି ? ଏ ସୀମାରେଖା ? କଅଣ ପାଇଁ ଏ ସୀମାରେଖା ? କିଏ କେବେ ରେଖାଟାଣି ମଣିଷକୁ ମଣିଷଠାରୁ ଅଲଗା କରିଥିଲା ? ସାରା ପୃଥିବୀ ପରା ଗୋଟିଏ ପରିବାର ? ଗୋଟିଏ ଘର ? ଆମେ ସବୁ ଗୋଟିଏ ? ସଭିଏଁ ଆମ କୁଟୁମ୍ବ ?

ତେବେ ଆଜି ଏ ଭାଗ ଭାଗ କାହିଁକି ? ମଣିଷର ମନ ପୁଣି ଏତେ ପଙ୍କିଳ କେମିତି ହେଲା ? କାହିଁକି ହେଲା ?

ନଈ ସେ ପାଖର ସାତପୁର ଆଜି ହେଇଯାଇଛି ସୁଲତାନପୁର । ଆଃ, ପୁନମ୍ ଚିତ୍କାର କରି ଉଠିଲା । ସାତପୁର ହେଉ କି ସୁଲତାନ ପୁର ହେଉ, ସ୍ୱର୍ଗପୁର ହେଉ କି ନର୍କପୁର ହେଉ ସେଥିରେ ଯାଏ କେତେ ଆସେ କେତେ ?

ଖୋଳ

କିନ୍ତୁ କୁଆଡ଼େ ଗଲା ସିଏ ? ଯାହାକୁ ସେ ଆଜି ତିନିଦିନ ହେଲା ଦେଖି ନହିଁ ? ଯାହାକୁ ସେ ଦିନେ ନ ଦେଖିଲେ ପାଣିବି ପିତା ଲାଗୁଥିଲା, ସେ କୁଆଡ଼େ ଗଲା ?

ପୁନମ୍ ଦେଖିଲା ମେଣ୍ଢା ଗୁଡ଼ାକ ଅନେକ ଦୂରକୁ ଚାଲି ଗଲେଣି । ଏଇ ଖରାବେଳଟା ହିଁ ପୁନମ୍ ପାଇଁ ଉପଯୁକ୍ତ ସମୟ । ମେଣ୍ଢା ଗୁଡାକ ଚରେଇବା ପାଇଁ ସେ ନଈ କୂଳକୁ ଆସିଯାଏ । ସଂଜବେଳକୁ ଫେରେ ।

ଏଇଠି ତାର ବରାବର ଦେଖାହୁଏ ଇକବାଲ ସହିତ । ସାତପୁରଟା ସୁଲତାନପୁର ହେଇ ଗଲାପର ଠାରୁ ଇକବାଲ ସହଜରେ କି ସୁବିଧାରେ ଏ ପାଖକୁ ଆସି ପାରେନା । ଅନେକ କଟକଣା । ଶିବିରମାନଙ୍କ ସହିତ ଭଲ ସଂପର୍କ ନଥିଲେ କଟକଣା ସବୁ କଡାକଡ଼ି ହେଇଯାଏ ।

ପୁନମ୍ ଅନେକ ଥର ଦେଖିଚି, ଇକବାଲକୁ ନଈ ପହଁରି ଏ ପାଖକୁ ଆସିବାକୁ ଖୁବ୍ ବେଶିରେ ଲାଗେ ଦଶ ମିନିଟ୍ । କି ଦୁଃସାହସ ତାର ? ଟିକିଏ ବି ସୁଅକୁ ଖାତିର ନାହିଁ । ଭଲ ପହଁରି ପାରେ । ଏମିତି ତ ନଈ କୂଳର ସମସ୍ତେ ପହଁରା ଜାଣନ୍ତି । ପଶୁ ବି । ଏବେ ବି ସୁଲତାନ ପୁରରୁ ଗାଈ ଗୋରୁମାନେ ଏ ପାଖର ବୁଦି ବୁଦିକିଆ ଜଂଗଲ ଭିତରେ ଘାସ ଖାଇବାକୁ ପ୍ରାୟ ପ୍ରତିଦିନ ନଈ ପହଁରି ଏ ପାଖକୁ ଆସନ୍ତି ଏବଂ ଏ ପାଖରୁ କେହି ଜଣେ ସେ ପାଖକୁ ଅଡ଼େଇ ଦେଲେ ସେମାନେ ପୁଣି ଚାଲି ଯାଆନ୍ତି । ଏଇଟା ତ ଅନେକ ଦିନରୁ ଚଳି ଆସୁଚି । ଏ କଥାଟା ଏତେ ଦେହସୁଆ ହେଇଯାଇଚି ଯେ ସାତପୁରାର ପ୍ରାୟ ଅଧିକାଂଶ ଜାଣନ୍ତି ସୁଲତାପୁର ଗାଁର କୋଉ ଗାଈ କାହାର । ତେଣୁ ନଈ ପାରିହେଇ ଆସିଲେ ବି ସେ ଗାଈ କେବେ ହଜେନା କି ବାଟ ଭୁଲେନା ।

ଇକବାଲ କିନ୍ତୁ ଲୁଚି ଲୁଚି ଆସେ । ନଈ କୂଳେ କୂଳେ ଛାଉଣୀ ପଛପଟେ ଯେଉଁ ଘଂଚ ବୁଦା ସବୁ ଅଛି ଇକବାଲ ତା ପଛେ ପଛେ ଲୁଚି ଲୁଚି ଯାଇ ବେଶ ଖଣ୍ଡେ ବାଟ ଗଲାପରେ ପେଣ୍ଟ ସାର୍ଟ ସବୁ ଖୋଲିଦିଏ ଏବଂ ବୁଦା ମୂଳରେ ଲୁଚେଇ ଦିଏ । ତାପରେ ନିଃଶବ୍ଦରେ ନିଜ ଦେହକୁ ନଈ ଦେହରେ ମିଶେଇ ଦିଏ ।

ପୁନମ୍ ଆଖି ବୁଜି ଦିଏ । ତାର ସମସ୍ତ ଶରୀର ଯେମିତି ଅସାଡ଼ ହେଇଯାଏ । ରକ୍ତସଂଚଳନ ବଂଦ ହେଇ ଆସେ । ସେ ମନେ ମନେ ପ୍ରାର୍ଥନା କରେ, ନଈ ମାଆ ଲୋ ! ଇକବାଲକୁ ଭଲରେ ଭଲରେ ଏ ପାଖରେ ପହଂଚେଇ ଦିଅ । ମୁଁ ତୋତେ ଭୋଗ ଦେବି ।

ଆଖି ଖୋଲିଲା ବେଳକୁ ଇକବାଲ ଏ କୂଳରେ । ପାଣିରେ ଚିତ୍ ହେଇ ପଡ଼ିଥାଏ ଏବଂ ପାଟିରେ ପାଣି ନେଇ ଫୁତ୍ କରି ଉପରକୁ ଛାଡ଼େ ।

ଦେଖିଲୁ କେତେ ଜଲ୍ଦି ତୋ ପାଖକୁ ଆସିଗଲି ।

ପୁନମ୍ ଓଢ଼ଣୀଟା ତା ହାତକୁ ବଢ଼େଇ ଦିଏ । କହେ, ଉଠି ଆସୁନୁ । ତୋତେ ଥଣ୍ଡା ଲାଗୁନି କି ? ହେଇ ନେ । ପୋଛି ହେଇ ପଡ଼ । ଏ କଟକଟିଆ ଶୀତରେ ତୋତେ ଆସିବାକୁ ଅନେକ କଷ୍ଟ ହେଉଚି ନା ?

ଇକବାଲ କିଛି କହେନା । ଚୁପ୍ ଚାପ୍ ତା ହାତରୁ ଓଢ଼ଣୀଟା ନେଇ ଟିକେ ଅଟକି ଯାଏ ।

ଆରେ ଉଠୁନୁ କାହିଁକି ?

ତୁ ଆଗ ଆଖି ବୁଜ୍ ।

କାହିଁକି ?

ଫେର ପାଗଳାମି ବାହାର କଲା । ତୁ ଜାଣିନୁ ମୁଁ ଖାଲି ଚଡ଼ିଟାଏ ପିନ୍ଧିଚି ।

ପୁନମ୍ ଫିକ୍ କରି ହସିଦିଏ । ମୁଁ ତୋତେ ପିଲା କାଳେ ଦେଖି ନାହିଁ କି ?

ସେମିତି କହିଲେ ଏଇଠୁ ଫେରିଯିବି ।

ପୁନମ୍ ଆଖି ବୁଜି ଦିଏ ।

ସେ ଆଜି ବି ଅପେକ୍ଷା କରୁଚି । କାହିଁକି ଆସୁନାହିଁ ଇକବାଲ ? କାମରେ ଅଟକି ଯାଇଚି ? କିଏ ତାକୁ ଅଟକେଇ ଦେଇଛି ? ତାକୁ କିଏ ଅଟକେଇ ପାରିବ ? ସେ ତ କାହା କଥା ମାନେନା । ମାନିବାର ପିଲା ବି ସେ ନୁହେଁ । ଆଉ ତାକୁ ଜୋର କରି କିଏ ବା ଅଟକେଇ ପାରିବ ? କମ୍ ତାର ବଳ ? ସେ ଦିନ ହାତ ଦି'ଟାକୁ ଚିପି ଧରିଲା ଯେ ମୋର ତ ମନେ ହେଲା ଭାଂଗି ଖଣ୍ଡ ଖଣ୍ଡ ହେଇଯିବ ।

ପୁନମ୍ ଦେହରେ ବି କମ୍ ବଳ ନାହିଁ । ଯେତବେଳେ ମେଣ୍ଢାମାନେ ଦୁଷ୍ଟାମି କରନ୍ତି, କଥା ମାନନ୍ତିନି, ରାସ୍ତାରେ ନ ଚାଲି ଏ ପାଖ ସେ ପାଖ ଦୌଡ଼ି ବୁଲନ୍ତି, ପୁନମ୍ ରାଗିଯାଏ । ସେ ସେଥିରୁ ଗୋଟାକୁ ଟେକିନେଇ କାନ୍ଧରେ ପକେଇ ଦିଏ । ତାପରେ ବାକି ମେଣ୍ଢାଗୁଡ଼ାକୁ ଆରାମରେ ଅଡ଼େଇ ଅଡ଼େଇ ନିଏ ।

ସେଇ ପୁନମ୍ କିନ୍ତୁ ଇକବାଲର ହାତର ଚାପକୁ ମୋଟେ ସମ୍ଭାଳି ପାରେନା । ଇକବାଲ ତାର ହାତଟାକୁ ହସି ହସି ଧରି ପକେଇଲା ମାତ୍ରେ ପୁନମ୍‌ର ମନେ ହୁଏ ସେ ଯେମିତି ଜଳୁଥିବା ମହମ ପରି ତରଳି ତଳକୁ ନିଗିଡ଼ି ପଡୁଚି ।

ନଈ ସେ ପାରିକୁ ପୁଣିଥରେ ଅନେଇଲା ପୁନମ୍ । କୌଣସି ଏକ ଧର୍ମଗ୍ରନ୍ଥର ଉଚ୍ଚାରିତ ସ୍ୱରପରି ସତଲେଜ ନଦୀର ଜଳ ସେ ଦିନ କେମିତି କେଜାଣି ବେଶ ଶାନ୍ତ ଓ ସୁନ୍ଦର ମନେ ହେଉଥିଲେ ମଧ ତା ଉପରେ ଚୂନା ଚୂନା ଢେ଼ଉ ଗୁଡିକରୁ ନଦୀର ବକ୍ଷ ସାମାନ୍ୟ ବାତ୍ୟା ବିକ୍ଷୁବ୍ଧ ଥିଲାପରି ମନେ ହେଲା । ଶୀତ ଦିନର ଉତ୍ତରା ପବନ

ବେଳେ ବେଳେ ନଦୀକୁ ଉନ୍ମନା କରିଦିଏ । କାଁ ଭାଁ କେତେଟା ଡଙ୍ଗା ନଈ ଭିତରେ ଏ ପାଖ ସେପାଖ ହେଉ ଥାଆନ୍ତି, ଯେମିତି ବରାବର ହୁଏ । ଶିବିର ସହିତ ସେମାନଙ୍କ ସଂପର୍କ କାହାକୁ ଅଜଣା ନଥାଏ ।

ହେଇ ତ ଉଦ୍ଧାମ ବୁଢ଼ା ଡ଼ଙ୍ଗାରେ ସେ ପାଖକୁ ଯାଉଚି ବୋଧେ । ଦୁଇ ତିନି ଦିନକୁ ସେ ଥରେ ତା ନାତିକୁ ଦେଖିବାକୁ ଯାଏ । ତିନୋଟି ନାତୁଣୀ ପରେ ଗୋଟାଏ ନାତି । ବର୍ଷେ ହେଲା ତାର ଏକମାତ୍ର ଝିଅ ଘରକୁ ନାତିଟି ଆଲୋକିତ କରୁଚି ବୋଲି ସେ କହେ । ହଁ ତ ବୁଢ଼ୀ ଏ ପାଖରେ ବୁଢ଼ାକୁ ପଠେଇ ଦେଇ କୂଳରେ ଅପେକ୍ଷା କରିଚି । ଶିବିରର ପ୍ରହରୀମାନେ ବୁଢ଼ୀକୁ ସେ ପାଖକୁ ଯିବାକୁ ହେଲେ ଅସ୍ୱାଭାବିକ ଶୁଳ୍କ ଦାବୀ କରିଥିବେ ବୋଧେ । ହେଇତ, ବୁଢ଼ୀ ତା ଆଖିକୁ ଓଢ଼ଣୀ କାନିରେ ପୋଛି ପକଉଚି । ନାତିକୁ ଦେଖିବାର ସୁଯୋଗ ସେ ପାଇ ପାରୁନି । କ୍ରୁର ଅମାନବିକତାର ସୀମାରେଖା ତା ନାତିକୁ ତା ଛାତିରୁ ଛଡ଼େଇ ନେଇ ଅଲଗା କରି ଦେଇଚି ।

ପୁନମ୍ ଆଖି ବି ଢଳେଇ ଆସିଲା । ଆଜି ବି କଅଣ ଇକ୍‌ବାଲ ଆସିବନି ? ଆସିଲେ ବି ସେ ଆଜି ତା ସହିତ କଥା କହିବନି । ଶାସ୍ତି ଦେଲେ ଶାସ୍ତି ପାଇବାକୁ ହୁଏ ଏକଥା ସେ ଜାଣିବା ଉଚିତ । ବଡ ଲଗାମ ଛଡ଼ା ହେଇ ଯାଉଚି ସେ ଆସ୍ତେ ଆସ୍ତେ । ସେ ଦେହରେ ଲମ୍ବିଥିବା ଓଢ଼ଣୀକୁ ଦେଖିଲା । ଏଇ ଓଢ଼ଣୀ ସହିତ ଏଇ ସେଲୱାର କମିଜକୁ ଇକବାଲ ଖୁବ୍ ଭଲପାଏ । ପ୍ରଥମେ ଯୋଉ ଦିନ ସେ ଏଇ ଡ୍ରେସଟାକୁ ଦେଖିଲା ତାର ଆଖି ବୁଜି ହେଇ ଯାଇଥିଲା । କହିଲା ତୁ ପରୀଟାଏ କିରେ ?

ପୁନମ୍‌ର ପାଚିଲା କମଳା ରଂଗର ମୁହଁଟା ଲାଜରେ ଲାଲ ପଡ଼ି ଯାଇଥିଲା ।

ଆଜି ସେ ସେଇ ଡ୍ରେସ୍‌ଟାକୁ ପିନ୍ଧିଚି ।

ଆରେ କିଏ ଏଇଟା ଏମିତି କୁମ୍ଭୀର ପରି ପହଁରି ପହଁରି ଆସୁଚି ? ଇକବାଲ ଛଡ଼ା ଆଉ କିଏ ହେଇପାରେ ? ବିନା ଶବ୍ଦରେ ତୀର ପରି ଆଗକୁ ଭୁଷିବା ଆଉ କାହାର କାମ ହେଇପାରେ ? ହେଇ ଦେଖ, ମଗରଟାଏ ଯେମିତି ।

ପୁନମ୍ ଗୋଟାଏ ପଥର ଉପରକୁ ଯାଇ ପୁଣିଥରେ ଦେଖିବାକୁ ଲାଗିଲା । ତାପରେ କଅଣ ଭାବି ସେଠୁ ଓହ୍ଲେଇ ଆସିଲା ଏବଂ ନିଜ ଓଢ଼ଣୀଟାକୁ ନେଇ ଗୋଟାଏ ବୁଦା ମୂଳରେ ଲୁଚେଇ ଦେଲା । ଆଜି ସେ କହିବ ଓଢ଼ଣୀ ଆଣିନି ।

ଇକବାଲ ଓଦା ସରସର ଦେହରେ କୂଳରେ ଠିଆ ହେବ । ତାର ଗୋରା ଟକ ଟକ ବଳିଲା ଦେହରେ, ଓସାରିଆ ଛାତିରେ ପାଣି ବହି ପଡୁଥିବ ଝର ଝର ହେଇ । ଆଃ, କେମିତି ଦିଶୁଥିବ ସେ ?

ହେଇ ତ ମଝି ନଈକୁ ଆସି ଗଲାଣି । ଆଉ କେଇଟା ମିନିଟ୍ ପରେ ସେ ଏଠି

ପହଂଚି ଯିବ । କୂଳକୁ ଆସି ସେ ଆଗପରି ପାଟିରୁ ପାଣିର ଫୁଆର ବାହାର କରିବ । ସତେ ଯେମିତି ଗଡ଼ ଜିଣି ଯାଇଚି । ତାପରେ ସେମିତି ପାଣିରେ ପିଠି ଦେଖେଇ କହିବ, ଆଲୋ ଆଗେ ଓଢ଼ଣୀଟା ଦେଲୁ ।

ଓଢ଼ଣୀ ଅଛି ଯେ ନବ । କେଞ୍ଚେ ପାଉ ଆଜି । ଲାଜ ମନକୁ ମନ ଛାଡ଼ି ଯିବନି ?

ନଈ ସେ ପାଖରୁ କଳା ମେଘଟାଏ ମାଡ଼ି ଆସୁଚି । ଅଦିନିଆ ମେଘ । ତଥାପି ଆସୁ । ଖୁଉବ୍ ବର୍ଷୁ ।

ଆଜି ସେ ତାକୁ ଛାଡ଼ିବନି । ଜୋର କରି ଅଟକେଇ ଦେବ । ସେ ଥର କହି ଯାଇଚି ଏଥର ଆସିଲା ବେଳେ ଅଣ୍ଟିରେ ପୂରେଇ ସିନ୍ଦୁର ନେଇ ଆସିବ । ଧେତ୍ ଫାଜିଲଟା । ଖାଲି ବସେ ଓ ଗପେ । ସେ ଗପର ବି କିଛି ବାଗ ବାଇସ ନଥାଏ । କୁରୁଳି ଉଠୁଥାଏ ପୁନମ୍ । ଆସୁ ଆଜି ।

''ଓ ଦେଖୋ, ଶାଲା ଭାଗତା ହେ ।''

କେହି ଜଣେ ସେ ପାଖର ତମ୍ବୁ ପାଖରୁ ବୋଧେ ଗର୍ଜି ଉଠିଲା । ଏବଂ ତା ପରେ ସୁଉବ୍ ଗୁଡୁମ୍, ସୁଉବ୍ ଗୁଡୁମ୍, ସୁଉଚ ଗୁଡୁମ୍ ।

ପୁନମ୍ ଚମକି ପଡ଼ିଲା । କଅଣ ହେଲା ? କୋଉଠୁ ଆସିଲା ଏ ଶବ୍ଦ ? ଏ ପାଖର ଶିବିର ଓ ସେ ପାଖର ଶିବିର ଭିତରେ ଅହେତୁକ ଉତ୍ତେଜନା । ସମସ୍ତେ ହଠାତ୍ ଯେମିତି ଚଳ ଚଂଚଳ ହେଇ ଉଠିଲେ ।

ଆରେ ଇକବାଲ କୁଆଡ଼େ ଗଲା ? ସେତ କାହିଁ ଆଉ ଦେଖା ଯାଉନି । ମେଂଚାଏ କଂଚା ଲାଲ ରକ୍ତ ସେଠି ଦେଖା ଯାଉଚି ।

ଗୋଟାଏ ଆର୍ତ୍ତ ଚିତ୍କାର କରି ପୁନମ୍ ଡେଇଁ ପଡ଼ିଲା ନଈ ମଝିକୁ, ''ଇକବାଲ, ମେରେ ଇକବାଲ ।''

ଆଉ ଥରେ କମାଣ ଗର୍ଜି ଉଠିଲା । ତା ସହିତ ହିଂସ୍ର ବ୍ୟାଘ୍ରର ଆଉ ଏକ ପ୍ରଚଣ୍ଡ ଗର୍ଜନ ।

ଫିର୍ ଚଲାଓ । ଖତମ୍ କରୋ ଏ ସବ୍ ।

ସତଲେଜର ନିର୍ମଳ ମଧୁର ଜଳ ଏବେ ବି ରକ୍ତ ରଂଜିତ । ଏବେ ବି ସତଲେଜର ଦୁଇ କୂଳରୁ ରାତି ଅଧରେ, ଖରାବେଳେ କି ସଂଜବେଳେ କରୁଣ କ୍ରନ୍ଦନର ସ୍ୱର । ସେମାନେ କହନ୍ତି, ସେମାନେ ଶୁଣିଚନ୍ତି । ସେ ସ୍ୱର ଯୁଗରୁ ଯୁଗକୁ ସେମିତି ପବନରେ ଭାସି ଆସୁଥିବ ଯେତେଦିନ ଯାଏ ସତଲେଜର ଜଳ ବହି ଆସୁଥିବ ।

*(ତାର ତରଙ୍ଗ, ଶାରଦୀୟ ବିଶେଷାଙ୍କ, ୧୯୯୮)*



ଖୋଳ

# ହାଡ଼ି

ଅବନୀ ଚିଠି ଲେଖିଚି

ଛୋଟ ଚିଠିଟିଏ । ବରାବର ସେ ଏମିତି ଲେଖେ । ଚିଠିର ଆଗ ପଛ କିଛି ନଥାଏ । ଗୋଟାଏ କଥା ଢ଼େଙ୍କାନାଳରୁ ତ ଆଉ ଗୋଟାଏ କଥା କଲିକତାରୁ । ସବୁ ଗୋଳେଇ ମିଶେଇ କହେ ।

ଚିଠିଟା ଥିଲା ଏମିତି, ''କଅଣ କରୁଚ ଆଜିକାଲି ? ଖାଲି ବସି ବସି ଦି' ଜଣ ଯାକ ଅନ୍ନ ଧ୍ୱଂସ କରୁଚ । କେତେଥର ଭାବିଲିଣି ଲେଖିବାକୁ, ବେଳ କାହିଁ ? ଥରେ ଆସି ଏଆଡ଼ୁ ବୁଲିଗଲେ ହୁଅନ୍ତାନି ? ଏଠିକା ପାହାଡ଼, ନଈ, ବଣ, ଜଂଗଲ, ମନ୍ଦିର ଏ ସବୁ ଦେଖନ୍ତୁ । ତାକୁ ନ ଦେଖିଲେ ଏଠିକା ରାଜନୀତି ଟିକିଏ ପ୍ରତ୍ୟକ୍ଷ କରନ୍ତୁ । ଜୀବନ ଓ ତାର ଯନ୍ତ୍ରଣାମାନେ କେମିତି ଅହରହ ଛଟପଟ ହେଉଚନ୍ତି, ମାଛକୁ ପୋଖରୀରୁ ଧରି ଆଣି ହୁଡ଼ାରେ ଛାଡ଼ି ଦେଲେ ଯେମିତି ହୁଅନ୍ତି- ସେ ସବୁ ଦେଖନ୍ତ । ଲେଖାଲେଖି କରୁଚ ପରା ?

ବେଶ ମଜା ଲାଗେ । ହସ ବି ମାଡ଼େ ତା ଚିଠି ପାଇଲେ । ସବୁ କଥାରେ ଅମଡ଼ା ମାଡ଼ି ଚାଲିଯାଏ । ତାକୁ ବାଟ ଅବାଟ କିଛି ଜଣା ପଡ଼େନି ।'' ପୁଣି ଲେଖିଚି-

ଛାଡ଼ ସେ କଥା । ଦି' ହେଁ ଆସନ୍ତା ୨୮ ତାରିଖ ପୂର୍ବରୁ ଆସି ଏଠି ପହଞ୍ଚିବ । କେତେବେଳେ କୋଉ ଗାଡ଼ିରେ ଆସିବ ଜଣେଇଲେ ମୁଁ ତାର ବ୍ୟବସ୍ଥା କରିବି । ବରଂ ମୋତେ ଟିକିଏ ଫୋନ କରିବ । ଅନ୍ୟ ସମସ୍ତେ ସେତିକି ବେଳକୁ ଆସି ପହଞ୍ଚିବେ ।

ଏକା ଶରରେ ଦୁଇଟା ଚଢ଼େଇ ମାରୁଚି । ଗୋଟାଏ ୨୮ରେ ଏବଂ ଅନ୍ୟଟି ୧ରେ । କଅଣ ବୁଝିଲ ? ତେଣୁ ଚାରିଦିନ ଏଠି ରହଣି ହେବ । ଏ କଥା ମନେ ଥାଏ ଯେମିତି । ହଁ ଏକ ତାରିଖରେ ଚନ୍ଦ୍ରର ରିସେପସନ ଏବଂ ସେଇ ଦିନ ମିନିର ବାହାଘର ବି । ଆଉସବୁ ଆସିଲେ ଜାଣିବ ।

ଅବନୀ ବୟସରେ ମୋଠୁ ସାମାନ୍ୟ ଛୋଟ । ମୋ ବଡ଼ବାପାଙ୍କ ପୁଅ ଭାଇ । ନୀଳଗିରିରେ ଘର କରି ରହୁଚି ଆଜକୁ କୋଡ଼ିଏ ବର୍ଷ ହେଲା । ନିଜ ଘର ଜଳେଶ୍ୱର

ଠାରୁ ପ୍ରାୟ ଦଶ କିଲୋମିଟର ଦୂର ଗୋଟାଏ ଗାଁରେ । ଗାଁରେ ତାର ଜମିବାଡ଼ି ସବୁ ଅଛି । ଆମର ଆଉ ଭାଇମାନେ ବି ଅଛନ୍ତି ।

ମୁଁ ଚାକିରିରୁ ଅବସର ନେଲାପରେ ଆଉ ନୀଳଗିରି ଯାଇନି । ନ ଯିବାର ଆଉ କିଛିକାରଣ ନାହିଁ । ରାଉରକେଲାରୁ ନୀଳଗିରି ଯିବା କାଠିକର ପାଠ । ବସ୍‌ରେ ଗଲେ ଲାଗେ ୧୬ଘଣ୍ଟା । ଆଉ ଟ୍ରେନ୍‌ରେ ଗଲେ ଜଣେ କେତେବେଳେ ପହଞ୍ଚିବ କି ନାହିଁ ସେ କଥା କିଏ କହିବ ? ଆଜିକାଲି ଅବସ୍ଥା ଏମିତି ହେଇଚି ଯେ ଜଣେ ବାଘକୁ ବିଶ୍ୱାସ କରି ପାରିବ କିନ୍ତୁ ରେଳ ଗାଡ଼ିକୁ ନୁହେଁ । କୋଉଠି କେତେବେଳେ କେମିତି ଏବଂ କୋଉ ଅବସ୍ଥାରେ ଜଣେ ପହଞ୍ଚିବ ସେ କଥା ଭଗବାନ ମଧ ଜାଣି ନଥିବେ ।

ଥରେ ତ ଏମିତି ହେଲା । ଦିନ ଦଶଟା ବେଳେ ଚାରିଜଣ ଲୋକ ଗୋଟିଏ କାର୍‌ରେ ଆସି ମୋ ପଡ଼ିଶା ଘରେ ପହଞ୍ଚିଲେ । ସେମାନେ ସାଥିରେ ଆଣିଥିବା ଦୁଇଟା କଟା ଗୋଡ଼ ଭଦ୍ରଲୋକଙ୍କୁ ଦେଖେଇ କହିଲେ ଚିହ୍ନିଲେ ଦୁଇଟା ଗୋଡ଼ରୁ । ଗତକାଲି ରାତିରେ ଯେଉଁ ଟ୍ରେନ ଦୁର୍ଘଟଣା ହୋଇଥିଲା, ମାନେ ପୋଲ ଉପରୁ ଗାଡ଼ିଟା ତଳକୁ ଖସି ପଡ଼ିଥିଲା ସେଥିରେ ଏ ଦୁଇଟା କେବଳ ମିଳିଚି । ଆମେ ରିଜରଭେସନ ଚାର୍ଟରୁ ଅନୁମାନ କରୁଚୁ....।

ତା ପରର କଥା କହି କିଛି ଲାଭ ନାହିଁ । ଥରେ ଘରୁ ବାହାରି ଗଲେ କେତେବେଳେ ଯେ କଅଣ ହେବ ସେ କଥା କିଏ କହିବ ? ତେଣୁ ସ୍ୱାଭାବିକ ରୀତିରେ ଆମର ଯିବା ଆସିବା କମିଯାଇଛି ।

ମୁଁ ମୋ ସ୍ତ୍ରୀଙ୍କୁ ଡାକିଲି । କଅଣ କରିବା କୁହ ? କେବେ ଯିବା ? ଆଉତ ଚାରିଟା ଦିନ ମାତ୍ର ରହିଲା । ଏତେବେଳେ ଯେମିତି ଗାଡ଼ି ମୋଟର ଭିଡ଼ ଲାଗିଚି ସେଥିରେ ଟିକଟ ମିଳିବତ ? ବିନା ରିଜରଭେସନରେ କେମିତି ଯିବା ?

ମୋ ସ୍ତ୍ରୀ କହିଲେ ମୁଁ ବସରେ ମୋଟେ ଯାଇପାରିବିନି । ମୋ ଆଣ୍ଠୁ ବଥା ଏବେବି ଅଛି । କେମିତି ହେଲେ ଟ୍ରେନ୍‌ରେ ଟିକଟ କରିଦିଅ ।

୨୮ ତାରିଖ ସକାଳ ୧୦ଟା ବେଳକୁ ଆମେ ଯାଇ ଅବନୀ ଘରେ ପହଞ୍ଚିଲା ବେଳକୁ ସେ ଖାଲି ଗେଟ ପାଖରେ ଏ ପାଖ ସେ ପାଖ ହେଉଚି । ଆମକୁ ଦେଖି ପାଟି କରି ଉଠିଲା, ଆଃ ଏତେ ବେଳେ ଆସୁଛ ନା ? ଅନ୍ତତଃ କାଲିଠାରୁ ଆସିବାର ଥିଲା । ମୋତେ ଟିକିଏ ଫୋନ ବି କଲନି । ମୁଁ ତମ ପାଇଁ ବଡ଼ ଚିନ୍ତାରେ ପଡ଼ି ଯାଇଥିଲି । ସେ ଆମ ପାଦ ଛୁଇଁଲା ଓ ସୁଟକେଶଟା ହାତରୁ ନେଲା ।

ଆମେ ଘର ଭିତରକୁ ଆଗେଇଲୁଁ, ଅନ୍ୟ ସମସ୍ତେ ସେତେବେଳକୁ ଆସି ଯାଇଥିଲେ । ସମସ୍ତଙ୍କୁ ଦେଖିଲେ ପେଟଟା ପୂରି ଉଠେ । ଯେଉଁମାନଙ୍କୁ ବର୍ଷ ବର୍ଷ ଧରି ଦେଖି ହୁଏନା ସେମାନଙ୍କୁ ହଠାତ୍ ଦେଖିଲେ ଯାହା ହୁଏ । କିଏ ପାଦ ଛୁଉଁଚି ତ କିଏ

ଲମ୍ୱ ହୋଇ ପଡ଼ି ଯାଉଚି । କିଏ ଓଢ଼ଣା ଭିତରୁ ଟିକିଏ ଦେଖି ଗୋଡ଼ ପାଖରେ ନଇଁ ପଡୁଚି । ଅବନୀ ମୋତେ ସେମାନଙ୍କୁ ଚିହ୍ନେଇ ଦେଉ ଥାଏ । ବିଶେଷ କରି ମୁଁ ଯେଉଁମାନଙ୍କୁ ଚିହ୍ନି ପାରୁ ନଥାଏଁ । କିଏ ବେଶ ଲମ୍ବା ହେଇ ଗଲାଣିତ କିଏ ଯା ଭିତରେ ଛୁଆମାଆ ହୋଇ ସାରିଲାଣି । ଏ ସବୁ ମଣିଷକୁ ବିଭୋର କରି ଦିଏ ।

ଅବନୀ ଚନ୍ଦ୍ରକୁ ପାଟି କରି ଡାକିଲା । ଚନ୍ଦ୍ର ତା ପୁଅ । କହିଲା ଏମାନଙ୍କୁ ଉପର ଘରକୁ ନେଇ ଯାଆ । ତାପ୍‌ରେ ଏମାନଙ୍କର ଗାଧୁଆ ପାଧୁଆର ବ୍ୟବସ୍ଥା କର । ମୁଁ ସେ ଆଡ଼କୁ ଯାଉଛି । ଏ ଯାଏ ଗାଡ଼ିଟା ମଧ ଫେରିଲାନି । କାମ ଆଉ କେତେବେଳେ ହେବ ?

ଆମେ ଗାଧୁଆ ସାରି ଏକାଠି ବସି ଜଳଖିଆ ଖାଇଲା ବେଳକୁ ଅବନୀକୁ ମୁଁ ବାହାଘର ର ଆୟୋଜନ ବିଷୟରେ କିପରି କଅଣ ହେଇଚି ଏବଂ ଆଉ କଅଣ ବାକି ଅଛି ସେ ସବୁ କଥା ପଚାରିଲି । ସେ ମୋତେ ସବୁ କଥା ବୁଝେଇ ଦେଲା । କହିଲା ଆଜିକା କଥା ଛାଡ଼ । ତାର କାମ ସବୁ ହେଇ ସାରିଚି । ବରଯାତ୍ରୀଙ୍କ ପାଇଁ ଗାଡ଼ି, ସେମାନଙ୍କ ଅତିଥି ସେବା ଏସବୁ ହେଇ ସାରିଚି । ତାପରେ ସେଠି ପହଞ୍ଚିଲା ପରେ କୋଉ କାମ କେତେବେଳେ ହେବ, ମାନେ ବର ସେଠି କେତେବେଳେ ପହଞ୍ଚିବ, ବାହାଘର କେତେବେଳେ ଆରମ୍ଭ ହେବ, ହାତ ଗଣ୍ଠି କେତେବେଳେ ପଡ଼ିବ ଏବଂ ବର ସେଠୁ କେତେବେଳେ ବିଦା ହେବ ସେ ସବୁ ଗୋଟିଏ କାଗଜରେ ଲେଖି ତାଙ୍କୁ ଦେଇ ଦେଇଚି । ଏ କଥା ମଧ କହି ଦେଇଚି । ଗୋଟାଏ ସେକେଣ୍ଡ ମଧ ଯେମିତି ଏଥିରେ ଏ ପାଖ ସେ ପାଖ ନ ହୁଏ । ଖାଲି କଅଣ ସେତିକି ? ତାଙ୍କ ବ୍ରାହ୍ମଣ ବାରିକ ଏବଂ ଆମ ବ୍ରାହ୍ମଣ ବାରିକ ଏମାନଙ୍କୁ ମଧ ସତର୍କ ବାଣୀ ଶୁଣେଇ ଦିଆ ଯାଇଚି । ଲଗ୍ନ ଏପାଖ ସେ ପାଖ ମୋଟେ ହେବ ନାହିଁ ।

ମୁଁ ଆଶ୍ଚର୍ଯ୍ୟ ହେଲି । ପୃଥିବୀ ଯେତେବେଳେ ଏକ ବିଂଶ ଶତାବ୍ଦୀର୍ ଦୁଆର ମୁହଁରେ ପହଞ୍ଚିଲାଣି, ବିଜ୍ଞାନ ଯାଇ କାହିଁ କୋଉଠି ପହଞ୍ଚିଲାଣି ଏବଂ କମ୍ପ୍ୟୁଟର ଯେଉଁଠି ମଣିଷର ଜୀବନକୁ ସଂପୂର୍ଣ୍ଣ ଭାବରେ କରାୟତ୍ତ କରି ସାରିଲାଣି ସେତେବେଳେ ଅବନୀ କହୁଚି ସବୁ କଥା ପାଞ୍ଜି ଅନୁସାରେ ହେବ ।

ଟିକିଏ ମଜା କରିବାକୁ ଯାଇ ମୁଁ କହିଲି ତେବେ କୋଷ୍ଠୀ ମେଳତ ସେମିତି ଜବର ହୋଇଥିବ ?

ସେ କଥା ଆଉ କହିବାକୁ ଅଛି ? ଥରେ ନୁହେ, ଦୁଇ ଦୁଇଥର କରେଇଚି । ଆଗେ ଗାଁକୁ ଯାଇ ଆମ ମାଣିଆ ନାଇକ ଦ୍ୱାରା କରେଇଲି । ତୁମେ ତ ଜାଣ ତା ଗଣନା କେତେ ଏକ୍ୟୁରେଟ । ଲୋକଟା ସିନା ଗାଁରେ ରହି ଯାଇଚି । ନଚେତ ସେ ଯଦି ସହରରେ ଥାଆନ୍ତା ନା, ତୁମେ ଦେଖନ୍ତ ସେ ଆଜି କୋଉ ହାଇଟ୍‌କୁ ଉଠି ଯାଇ

ଥାଆନ୍ତା । ମୁଁ ତ ତାକୁ ସାମନ୍ତ ଚନ୍ଦ୍ରଶେଖର ବୋଲି କହେ ।

ମୁଁ ତାକୁ ମୁଣ୍ଡ ଟେକି ଦେଖିଲି, ସେ କହି ଚାଲୁଥାଏ । ମାଣିଆ ନାଇକ ପୂରା ଗୋଟାଏ ପୃଷ୍ଠା ଲେଖି ଦେଇଚି । ଚନ୍ଦ୍ରର ଆର୍ଯ୍ୟା ବି ସେ ତିଆରି କରିଥିଲା । ସେଥିରେ ସେ ଯାହା ଲେଖିଛି ନା । ଲେଖିଚି ୨୮ ହେଇଗଲେ ତା ବାହାଘର କେହି ଅଟକେଇ ପାରିବେନି ।

ତା କଥାରେ ମୋଡ଼ ବଦଳେଇବାକୁ ଯାଇ ମୁଁ କହିଲି ତାପରେ ସେ କୋଷ୍ଠୀ କଥାଟା କଅଣ ହେଲା ?

ସେ କହିଲା ଗାଁରୁ ଆସିଲା ପରେ ଏଠି ଜଣେ ଭଦ୍ରଲୋକ ମୋତେ କହିଲେ ଆଜିକାଲି ଯୁଗରେ ହାତ ଗଣନା ଏତେ ଠିକ୍ ହେଇ ନ ପାରେ । ଟିକିଏ ନା ଟିକିଏ ଭୁଲ୍ ରହିଯାଏ । କିନ୍ତୁ କମ୍ପ୍ୟୁଟର ଏକଦମ ଏକ୍ୟୁରେଟ୍ । ତାଙ୍କ କଥା ମୋ ମନକୁ ପାଇଲା । ତାଙ୍କୁ ସାଙ୍ଗରେ ନେଇ ଜଣେ ନାମଜାଦା ଲୋକଙ୍କ ପାଖକୁ ଗଲି । ସେ ଆମେରିକାରୁ କମ୍ପ୍ୟୁଟର ପଢ଼ି ଆସିଛନ୍ତି । ତାଙ୍କୁତ ଦେଖାକରିବାକୁ ଆମକୁ ଦୁଇ ଘଣ୍ଟା ଲାଗିଗଲା । ଲମ୍ବା ଲାଇନ । ବାବୁ ବସିଛନ୍ତି ଏଆରକଣ୍ଡିସନଡ ରୁମରେ । ସବୁ କହିଗଲି । ଖାଲି ଶୁଣିଲେ ଉଁ କି ଚୁଁ ପାଟି ଫିଟେଇଲେନି । କୋଷ୍ଠୀ ନେଲେନି । ଖାଲି ଡେଟ୍ ଅଫ୍ ବାର୍ଥ ଦୁଇ ଜଣକର ନେଲେ । ଗୋଟାଏ ମିନିଟରେ କାଗଜ ବାହାରି ଆସିଲା । ଭାଇ, ତୁମେ ବିଶ୍ୱାସ କରିବନି ମାଣିଆ ନାଇକ ଯାହା କହିଥିଲା ଠିକ୍ ସେଇଆ । କାଗଜ ଅଛି ତୁମେ ଦେଖିବ ? କମ୍ପ୍ୟୁଟର ଆହୁରି ଅଧିକା କଅଣ କହିଲା ଜାଣ ? କହିଲା ବୋହୂର ନା ଯଦି 'କ'ରେ ରଖାଯାଏ ତେବେ ସାରା ଜୀବନ ଆଉ ଚିନ୍ତା ନାହିଁ ।

'କଖାରୁ' ବା 'କନ୍ଦମୂଳ' ଦେବୁ ଠିକ କଲୁ ?

ସମସ୍ତେ ହୋ ହୋ ହେଇ ହସି ଉଠିଲେ ।

ତମେ ତ ସେମିତି କହିବ । ତମର ଆଜିବି ସେଇ ନାସ୍ତିକତା ଗଲାନି । ପୁଅ ଝିଅ ବାହା ହେଲେ, ନାତି ନାତୁଣୀ ଦେଖିଲ ତଥାପି ତୁମର ସେହି ମୂଢ଼ ବୁଦ୍ଧି ଗଲାନି । ଆରେ ବାବୁ, ମୋର କଥା ହେଲା ବିଜ୍ଞାନ ଥାଉ, ଆମରି ପୁରୁଣା ନୀତି ନିୟମ ବି ଥାଉ । ଆଚ୍ଛା କହିଲ, ଆମ ଶାସ୍ତ୍ର ପୁରାଣରେ ଯାହା ଯାହା ମୁନି ଋଷିମାନେ କହି ଯାଇଛନ୍ତି ସେ ସବୁ ଫଳୁଚି ନା ନାହିଁ ? ସେ ପାଞ୍ଜି ଓ ଚଷମା ହାତରେ ଧରି ଉଠି ପଡ଼ିଲା ।

ବୋହୂର ନାଁ କଅଣ ହେବ କହିଲୁ ନାହିଁ ଯେ ?

'କମଳା' । ବେଶ ବେଶ, ଖୁବ ଭଲ ନାଁ । ଦୁଇ ଆଡୁ କାମ ଦେବ । ଏକରେ ନାଁ ବଦଳିବ । ତା ଛଡ଼ା 'କମଳା' ମାନେ ଲକ୍ଷ୍ମୀ । ସେ ବି ଆସିବେ । ତେବେ କଅଣ କଅଣ ଆଣୁଛ ଶୁଣେ ।

**ଖୋଳ**

କଅଣ ଆଣିବି ମ ? ତେବେ ଦିଅନ୍ତେ ନାହିଁକି ? ସେଲସ୍ ଟେକ୍ସ ଇନସପେକ୍ଟର ଜୋଇଁ ଯେତେବେଳେ ପାଇବେ, ଦିଅନ୍ତେ ନି ? ବାହାଘରର ଚାରି ଦିନ ଆଗରୁ ଜିନିଷ ପତ୍ର ସବୁ ଆସିଗଲାଣି । ଏଇତ ଦେଖୁଛ ଘରେ ଗୋଡ଼ ପକେଇବାକୁ ଜାଗା ନାହିଁ ।

ମୁଁ କହିଲି ଆରେ, ମୁଁ ତ ଭାବିଥିଲି ଏ ଗୁଡ଼ାକ ତୁ ଝିଅକୁ ଦେବୁ ବୋଲି ସଜିଲ କରି ରଖୁଚୁ ।

ନାଇଁମ । ମୁଁ ସେ ଗୁଡ଼ାକ ତାଙ୍କ ଘରକୁ ଆଗରୁ ପଠେଇ ସାରିଲିଣି । ନ ହେଲେ ଜାଗା କୋଉଠି ହୁଅନ୍ତା ? ତା ପରେ କଥା ହୋଇ ସାରିଚି ଯେତେବେଳେ, ତାକୁ ଆଉ ବାକି ରଖନ୍ତି କାହିଁକି ? ଜୋଇଁ ବି ସେମିତି ପାଉଛି । ତମେ ଦେଖିବନି । ସବୁ ଈଶ୍ୱରଙ୍କ ଇଚ୍ଛା, ତାପରେ ତୁମେ ଯାହା କୁହ, ମୋର କିନ୍ତୁ ଏସବୁ ଦବା ନବା କଥାରେ ମୋଟେ ବିଶ୍ୱାସ ନ ଥାଏ । ମୁଁ ମୋର ସମୁଦୀଙ୍କୁ ମାନେ ପୁଅର ଶ୍ୱଶୁରକୁ କହିଲି, ତୁମେ ଯାହା ଦଉଚ ଦିଅ । ମୁଁ ତୁମକୁ କିଛି କହୁନି କି କହିବିନି ମଧ୍ୟ । ଦବାଟାତ ବଡ଼ ପଣ । ସେଥିରେ କଅଣ ବଂଧୁତା ଥାଏ ? ଅସଲ ବନ୍ଧୁତା କୋଉଥିରେ ଜାଣ ?

କୋଉଥିରେ ?

ବୃକ୍ଷ ରୋପଣରେ ।

ମୁଁ ହାଁ କରି ତା ମୁହଁକୁ ଅନେଇ ରହିଲି । ସେ କହିଲା ରିସେପସନ ଦିନ ସେ ଏଠାକୁ ଆସି ଆମ ବାଡ଼ି ପଟେ ପୋଖରୀ ହୁଡ଼ାରେ ପଚାଶଟା ଶାଗୁଆନ ଗଛର ଚାରା ରୋପଣ କରିବେ । ଏଇ ଏକମାତ୍ର ଚୁକ୍ତି ମୋର ତାଙ୍କ ସହିତ ସ୍ୱାକ୍ଷରିତ ହେଇ ସାରିଚି ବୋଲି କହିପାର ।

ସେ କୋଉଠୁ ଆଣିବେ ?

ହଇଓ ନଈମାଛକୁ ତୁମେ ପାଣି ଉଧାର ମାଗୁଛ ? ସେ ପରା ଫରେଷ୍ଟ ରେଂଜର ।

ତାପରେ ପାଟି କରି ଡାକିଲା ଚନ୍ଦ୍ରକୁ । କହିଲା ଦେଖିଲୁ ଗାଡ଼ି ଆସିଲା କିନା । କଅଣଟାଏ ଶବ୍ଦ ହେଲା ବୋଧେ ।

କି ଗାଡ଼ି ?

ସେଇ ବାଜା ପାଇଁ ମ । ବାହା ଘରେତ ହାଡ଼ି ବାଜାଟାଏ ନିହାତି ଦରକାର । ଶଂଖ ମହୁରୀ ବାଜିବନି, ଢ଼ୋଲ ନାଗରା ବାଜିବନି, ବାହାଘର କେମିତି ହେବ କହିଲ ? ଆଜିକାଲି ଏ ଟୋକାଙ୍କ କଥାତ ଜାଣିଚ । କହୁଚି କଅଣ ନା ବାହାଘର ସମୟରେ ମାଇକରେ ବିସମିଲ୍ଲା ଖାଁର ସାନାଇ ବାଜିବ । ଚାଳିଶଟା କେସେଟ ଆସିଚି । ଗୋଟିକ ଶହେ ଟଙ୍କା ଲେଖାଏଁ ସାତ ଦିନ ପାଇଁ । କହୁଚି ହାଡ଼ି ବାଜା ଆଣନା, କାନ ପରଦା ଫାଟି ଯିବ । କି ବିପରୀତ ବୁଦ୍ଧି ଏମାନଙ୍କର ଦେଖିଲ ।

ଖୋଳ

ମୋ ସ୍ତ୍ରୀ ଜଳଖିଆ ପ୍ଲେଟ ଗୁଡ଼ିକ ଉଠେଇ ନେଉ ନେଉ କହିଲେ, ହେଲା ଯେ ଏ ଆଇଡ଼ିଆ ମଧ ମନ୍ଦ ନୁହେଁ । ସେ ସାନାଇ ଥରେ କାନରେ ପଡ଼ିଲେ ପ୍ରାଣ ଉଚ୍ଛୁଳି ଉଠେ । କି ଚମତ୍କାର ତାର ସ୍ୱର ।

ଅବନୀ ଅଟକି ଗଲା । ତମର ବି ଏଇ ବୁଦ୍ଧି ଭାଉଜ ? ଆମ ଘରେ ଆମ ପର୍ବ ପର୍ବାଣୀ ଆମ ହିନ୍ଦୁ ଶାସ୍ତ୍ର ଅନୁସାରେ ହେବ ନା ନାହିଁ ? ବାହାଘରରେ ମହୁରୀ ବାଜିବା ଉଚିତ୍ । ସେଇଟାତ ଆମ ଶାସ୍ତ୍ର ସମ୍ମତ । ଆମ ସଂ ିବି । କିନ୍ତୁ ଖାଁ ସାହେବଙ୍କ ରେକର୍ଡ଼କୁ ଆମ ଶାସ୍ତ୍ର ସ୍ୱୀକୃତି ଦେଇଚିକି ? ଆମେ ତାକୁ ଗ୍ରହଣ କରିବା କେମିତି ? ବରଂ ସେ ଶବ୍ଦଟାତ ଆମ କାନକୁ ଅପବିତ୍ର କରିଦେବ । ସେ ଶବ୍ଦରେ ଘର ଫାଟି ପଡୁଥିଲା ବେଳେ ଆମ ପୁରୋହିତ ମନ୍ତ୍ର ଉଚ୍ଚାରଣ କରି ପାରିବେତ ? କରିବା ଉଚିତ ହେବ ନା ? ନା ନା ଯାହା ଶାସ୍ତ୍ର କହୁଚି । ତୁମେ ମାନିଲେ ମାନ, ନ ମାନିଲେ ନାହିଁ, କିନ୍ତୁ ଆମ ସଂସ୍କୃତିଟା ଆମେ କେମିତି ଛାଡ଼ିଦେବା ? ତେବେ ଆମର ହେଇ ଆଉ ରହିଲା କଅଣ ?

ଅବନୀ ଠାରୁ ଏ କଥା ଶୁଣିଲା ପରେ ମୋର ମନେ ହେଉଥିଲା ହୁଏତ ଏକବିଂଶ ଶତାବ୍ଦୀ ଆହୁରି ଦୁଇ ଚାରି ଶତାବ୍ଦୀ ଆଗକୁ ଘୁଞ୍ଚି ଗଲା । ନଚେତ୍ ଅବନୀ ବୋଧେ ନିଜେ ଦୁଇ ଚାରି ଶତାବ୍ଦୀ ପଛକୁ ଚାଲି ଯାଇଛି । ହଠାତ୍ ଯେମିତି ବ୍ୟବଧାନଟା ଅଚାନକ ବଢ଼ି ଲମ୍ବା ହୋଇଗଲା । ମୁଁ ଦେଖୁ ଦେଖୁ ଏଇଟା ଇଲାଷ୍ଟିକ ପରି ଲମ୍ବି ଯାଉଚି କାହିଁ କେତେ ଦୂରକୁ । ଗୋଟାଏ ସୀମାରେଖା ଦିଗନ୍ତ ସେ ପଟେ ଯାଇ ଲୁଚି ଯାଉଚି ।

ତୁ ତେବେ ଏଠି ବାଜା ଓ ମହୁରୀର ବନ୍ଦୋବସ୍ତ କରିଚୁ ନା କଅଣ ? ମୁଁ ପଚାରିଲି । ଏଠି ମିଳୁଚି ? ସହର ଜାଗାରେ ବିଶେଷ କରି ରାଉରକେଲା ପରି କସ୍‌ମୋପଲିଟାନ ସହରରେ, ନା ଆଜିକାଲି କେହି ହାତି ବାଜା ଖୋଜୁଛି ନା ସେ ସବୁ ମିଳୁଚି । ତେଣୁ ଆମେ ବେଣ୍ଡ ସଂସ୍କୃତିକୁ ଆଦରି ନେଇଛୁଁ ।

ଅବନୀ କହିଲା, ବନ୍ଦୋବସ୍ତ କରିଚି ମାନେ ? ସହରର ବାଜା କଅଣ ଆଉ ହାତି ବାଜା ହେଇଅଛି ? ସେମାନେ ସବୁତ ବେଣ୍ଡ ପାର୍ଟିରେ ମିଶି ଗଲେଣି । ସେମାନେ ବି ଭେଜାଲ ହେଇ ଗଲେଣି । ଏ ସବୁ ଶୁଭ କାମରେ ସେମାନଙ୍କୁ ଆଣିବା ଯାହା ନ ଆଣିବା ସେଇଆ । ସେମାନେ କଅଣ ବାହାଘର ସମୟରେ ଯେଉଁ ବାଜା ଦରକାର ତାକୁ ବଜେଇ ପାରିବେ ? ସେମାନେ ସେଇ ବେଣ୍ଡ ସୁର ବଜେଇବେ । ତାର ବା କଅଣ ମୂଲ୍ୟ ଅଛି ? ବାହାଘରର ପବିତ୍ରତା କଅଣ ସେଥିରୁ ମିଳିବ ?

ମାନେ ? ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି ।

ମାନେ ବୁଝି ପାରିଲନି ? ବାହାଘର ପ୍ରଭୃତି ଯେତେ ମଙ୍ଗଳ କାମ ହୁଏ

ସେଥିରେ ଭିନ୍ନ ଭିନ୍ନ ସମୟରେ ଭିନ୍ନ ତାଳ ଓ ଲୟର ବାଦ୍ୟ ବାଜେ, ଯେମିତି ବାହାଘରରେ ପାଣି ଛୁଇଁବା ସମୟରେ ଯାହା ବାଜେ, ନାନ୍ଦିମୁଖୀ ଶ୍ରାଦ୍ଧ ସମୟରେ ସେଇଟା ବାଜେନା । ସେମିତି, ହାତ ଗଣ୍ଠି ପଡ଼ିଲା ବେଳେ ଆଉ ପ୍ରକାରେ ବାଜେ । ସେ ସବୁ ତାଳ ଓ ସ୍ୱର ଅବଶ୍ୟ ମୁଁ କିଛି କିଛି ଜାଣିଥିଲି । ଏବେ ଭୁଲି ଗଲିଣି । କିନ୍ତୁ ଏବେ ଯେଉଁ ହାଡ଼ି ମାନେ ସହରରେ ଅଛନ୍ତି ସେମାନଙ୍କ ପାଖରେ ଆମେ ଏ ସବୁ ପାଉବାନି । କାରଣ ସେମାନେ ସହରୀ ବେଣ୍ଡ ବାଜା ସହିତ କେତେକାଂଶରେ ମିଶି ଗଲେଣି ।

ତୁ ତେବେ ବାଜା ବାଲା ପାଖ ଗାଁରୁ ଆଣୁଚୁ ? ଏଠି ମିଳୁଚି ?

ପାଖ ଗାଁରୁ କାହିଁକି ଆଣିବି ? ସେଥିରେ ଓରିଜିନାଲଟି କୋଉଠୁ ମିଳିବ ? ତେଣୁ ନିଜ ଗାଁରୁ ଆଣୁଚି । ସେଇମାନଙ୍କ ପାଇଁ ଟ୍ରେକରଟିଏ ଭଡ଼ା କରି ପଠେଇଚି । ସେମାନେ ତ ଆମ ସହିତ ପୁରୁଷ ପୁରୁଷ ହେଲା ଅଛନ୍ତି । ଆମର ସବୁ କାମରେ ସେମାନେ ଖୋଜା ଲୋଡା ପଡୁଛନ୍ତି । ଗାଁରେ ଥିଲାବେଳେ ମାସନ୍ତ ସଂକ୍ରାନ୍ତି ଏମିତିକି ପୁଅ ଏକୋଇଶିଆ, ଷଠି ଘର, ଅନ୍ନ ପ୍ରାଶନ ସବୁଥିରେ ଏମାନଙ୍କୁ ନ ଡାକିଲେ ବି ଆସି ପହଞ୍ଚି ଯାଆନ୍ତି । ଆମକୁ କେତେ ଆପଣାର ଭାବନ୍ତି । ମୁଁ ଆଜି ସହରରେ ରହିଲି ବୋଲି ଗାଁରୁ ଦୂରେଇ ଗଲି ବୋଲି ସେମାନଙ୍କୁ ଛାଡ଼ି ଦେବି ? ସେମାନଙ୍କୁ ଛାଡ଼ିବା ମାନେ ମୋ ପରମ୍ପରା ଛାଡ଼ି ଦେବା । ସେ କଥା ମୋ ଦେଇ ହେଇ ପାରିବନି । ଏ ସମ୍ପର୍କ ତ ଯୁଗ ଯୁଗର । ଆଜି କେମିତି ତାକୁ ଛାଡ଼ି ଦେବି ?

ଅବନୀ ପ୍ରତି ମୋ ଭିତରେ ଗୋଟାଏ ସ୍ୱାଭାବିକ ସମର୍ଥନର ସମୁଜ୍ଜ୍ୱଳ ଆଭା ଫୁଟି ଉଠୁଥିଲା । ମୁଁ ନିଜେ ସେମାନଙ୍କ ଠାରୁ ଦୂରେଇ ଯାଇ ଥିବାରୁ କେମିତି ଗୋଟାଏ ନିପାରିଲା ପଣ ମୋତେ ଆସ୍ତେ ଆସ୍ତେ ଘୋଡ଼େଇ ପକାଉଥିଲା । ସେ ସହରରେ ଥାଇ ମଧ ଗାଁକୁ ଭୁଲି ପାରିନି । ସେ ଗୋଟାଏ ସୁପର କମ୍ପ୍ୟୁଟରର ଆଧୁନିକ ଯୁଗକୁ ଆସି ମଧ ପରଂପରାକୁ ପାଶୋରି ଯାଇନି । ଏ ସବୁ ମୋତେ ବେଶ ଆମୋଦିତ କରୁଥିଲା । ଆମେ ସମସ୍ତେ ଆଗକୁ ଯିବାବେଳେ ଦୃଷ୍ଟିଟା ଆଗକୁ ରଖିଥାଉଁ । କିନ୍ତୁ ଅବନୀ ଆଗକୁ ଯାଇଥିଲାବେଳେ ପଛକୁ ପଛ କରି ଦେଇନି । ବରଂ ସାଥି କରି ନେଇଛି । ଧର୍ମ ସଂସ୍କୃତି ପରମ୍ପରା ସବୁକୁ ସେ ଜାବୁଡ଼ି ଧରିଚି । ଅତି ଆପଣାର ଚିଜଟିଏ ପରି କୋଳେଇ ନେଇଛି । ଏଥିରେ ତାକୁ ଯଦି କେହି ମୌଳବାଦୀ ବୋଲି କହେ ମୁଁ ସେଥିରେ ଦୁଃଖ କରିବିନି । ବରଂ ଖୁସି ହେବି । ଆମ ପରିବାର ଭିତରେ ଅବନୀ ଏକ ବ୍ୟତିକ୍ରମ ।

ଘରର ଗେଟ ଆଗରେ ଟ୍ରେକରଟିଏ ଆସି ଅଟକିଲା । ଅବନୀ ଉତ୍ସାହରେ କୁରୁଳି ଉଠିଲା । ହେଇ ଆସିଗଲେ । ଓଃ ଗୋଟାଏ ଚିନ୍ତା ଗଲା । ତାପରେ ସେ ପାଟି କରି ଡାକିଲା, କାହ୍ନୁରୁ, ଏଆଡ଼େ ଆସିଲୁ ।

କାହ୍ନୁରୁ ଗାଡ଼ିର ଡ୍ରାଇଭର । ଗାଡ଼ିରୁ ଜଣ ଜଣ କରି ପ୍ରାୟ ଦଶ ଜଣ ଖଣ୍ଡେ ଓହ୍ଲାଉ ଥାଆନ୍ତି । ଢ଼ୋଲ, ନାଗରା, ମହୁରୀ ଏସବୁ ବି ।

କିରେ ଏତେ ଡେରି କାହିଁକି ହେଲା ?

ପାଖକୁ ଆସି କାହ୍ନୁରୁ କହିଲା ସେମାନେ ବାହାରୁ ବାହାରୁ ଡେରି କଲେ । କାହାର ଲୁଗା ନାହିଁ ତ ଜଣକଠୁ ମାଗି ଆଉ ଜଣକର ଗେଞ୍ଜିଟାଏ ଧରି ଆସିଚି । ଆଉ ଜଣେ ତ କହିଲା ଆଃ, ବାବୁ କଅଣ ଆମ କଥା ଜାଣି ନାହାନ୍ତି ? ମୁଁ ଏଇ ଗାମୁଛା ପିନ୍ଧି ଯିବି । ବାବୁଙ୍କ ପୁଅ ବାହାଘର ହେଉଚି ଯେତେବେଳେ ମୋତେ କଅଣ ଲୁଗା ଖଣ୍ଡେ ତ ମିଳିବନି ? କେତେ କୁଆଡ଼େ ଇମିତି ପଡ଼ିଥିବ, ଯେତେ ଦେଲେ ତାଙ୍କର କଅଣ ସରିବ ? ସେ ଯେତେ ଦେଉଥିବେ ଭଗବାନ ତାଙ୍କର ସେତିକି ଭରଣା କରୁଥିବେ ।

ତାପରେ ସେମାନଙ୍କୁ ଆଣି ମହୁରୀ ଘରକୁ ଆସିଲା ବେଳକୁ ଶିରି ମନ୍ତିଆ କହିଲା ଯିବି ଚାରିଦିନ ପାଇଁ । ଚାରିଦିନର ଚାଉଳ ରଖି ଗଲେ ସିନା ହେବ । ଘଣ୍ଟେ ତ ଗଲା ସେଇଠି ।

ହଉ, ହଉ ଯା ହେଉ ଆସିଲେ । ନ ଆସନ୍ତେ କେମିତି ? ମୁଁ କହୁଚି ପରା ମୁଁ ଡାକିଚି ଯେତେବେଳେ ସେମାନେ ଆସିବେ ନିଶ୍ଚୟ ।

ବିରାଟ ଢ଼ୋଲଟାକୁ କାନ୍ଧରେ ଝୁଲେଇ ଜଣେ ଆସି ଅବନୀକୁ ଓ ମୋତେ ଜୁହାର ହେଲା ।

ହେଇ ନବଘନ ଆସିଗଲା । ବୁଝିଲୁ, ଏଇନେ ତୋ କଥା ପଡ଼ିଥିଲା । କେତେବେଳେ ବାହାରି ଥିଲ କିରେ ? କଅଣ ଏତେ ଡେରି ହେଲା ?

ଆଜ୍ଞା ପାଞ୍ଚ ଜଣିଆ କଥା । ବାହାରୁ ବାହାରୁ ଡେରି ହେଲା । ଆପଣତ ଜାଣନ୍ତି ଚାରିଦିନ ପାଇଁ ଆସୁଚୁଁ ଯେତେବେଳେ.......

ମୁଁ ପଚାରିଲି ଆରେ ନବଘନ ଏ ବାହାଘର ବେଳେ ଯୋଉ ବାଜା ବାଜେ ସେ ସବୁ କୁଆଡ଼େ ଅଲଗା ଅଲଗା ରକମର ? ମାନେ ହାତ ଗଣ୍ଠି ପଡ଼ିଲା ବେଳେ ଗୋଟାଏ । ଝିଅ ବିଦା ହେଲା ବେଳେ ଗୋଟାଏ, ଏମିତି ଅଛି କି ?

ଅବନୀ କଥା ଯୋଡ଼ି କହିଲା, ହଁ କହିଦେଲୁ । ଇଏ ମୋ କଥା ମାନୁ ନାହାନ୍ତି ।

ନବଘନ କହିଲା ସବୁ ତାଳମାନ ଗୋଟିଏ ପ୍ରକାର କେମିତି ହେବ ଆଜ୍ଞା ? ଯୋଉ କାମକୁ ଯୋଉ ବାଜା ହାତଗଣ୍ଠି ବେଳେ ଯୋଉ ବାଜା ବାଜିବ ତାକୁ ନାଣ୍ଡିମୁଖି ଶ୍ରାଦ୍ଧ ବେଳେ କେମିତି ବଜେଇ ହେବ । ଶୁଭ ଅଶୁଭ ସବୁ କେମିତି ମିଶିବ ? ଏ ସବୁର ଗୋଟିଏ ଶାସ୍ତ୍ର ପ୍ରମାଣ ଅଛି ।

ଶାସ୍ତ୍ର ପ୍ରମାଣ ? କି ଶାସ୍ତ୍ର ?

ନବଘନ ଢୋଲଟାକୁ ସଜାଡ଼ି ନେଇ କହିଲା ଶାସ୍ତ୍ର ଯଦି ନାହିଁ ତେବେ ଏ ଢୋଲ ମହୁରୀ ସୃଷ୍ଟି ହେଲା କେମିତି ? ଏ ସବୁ ଆପଣଙ୍କ ପୂଜା ପାର୍ବଣରେ ଲାଗୁଛି କେମିତି ? ମନକୁ ମନ ହେଉଛି କି ?

ମୁଁ ତା ମୁହଁକୁ ଅନେଇ ରହିଲି । ଏମିତି ବି ଅଛି ?

ସବୁ ଅଛି ଆଜ୍ଞା । ଶାସ୍ତ୍ର ପ୍ରମାଣ ନଥିଲେ ଏ ସବୁ କାମ ଆରମ୍ଭ କଲେ କିଏ ? ଠାକୁରଙ୍କ ନିର୍ଦ୍ଦେଶ ନଥିଲେ ଏ କଥା କେମିତି ହେବ ? ସେ ହସିଲା । ତାପରେ କହିଲା ମୁଁ ମୋ ବାପ ଗୋସାପଙ୍କ ଠୁ ଶୁଣିଚି । ସେମାନେ ସେମିତି ତାଙ୍କ ବାପ ଗୋସାପଙ୍କ ଠାରୁ ଶୁଣି ଥିବେ । କଥାଟା ଶୁଣନ୍ତୁ ।

ନବଘନ ଢୋଲଟାକୁ ଧରି ପିଣ୍ଡା ତଳେ ଥିବା ଗୋଟାଏ ବଡ଼ କାଠ ଗଡ଼ ଉପରେ ବସି ପଡ଼ିଲା । ଦୁଇ ଆଣ୍ଠୁ ଉପରେ ଢୋଲଟାକୁ ଥୋଇ ଦେଲା ଏବଂ କହିଲା

ବ୍ରହ୍ମା ଯେତେବେଳେ ସୃଷ୍ଟି ଆରମ୍ଭ କଲେ, ସେ ପ୍ରଥମେ ଜନ୍ତୁମାନଙ୍କୁ ସୃଷ୍ଟି କଲେ ଏବଂ ତା ପରେ ସବାଶେଷରେ ମଣିଷମାନଙ୍କୁ ସୃଷ୍ଟି କଲେ । ତାପରେ ନିୟମ କଲେ ଯେ ମଣିଷମାନେ ଦେବତାଙ୍କ ପୂଜା କରିବେ । କିନ୍ତୁ ଦେବତାମାନେ ବ୍ରହ୍ମାଙ୍କୁ କହିଲେ ଆମେ ରହିଲୁଁ ସ୍ୱର୍ଗରେ, ମଣିଷମାନେ ରହିଲେ ମର୍ତ୍ତ୍ୟରେ । ସେମାନେ ଆମର ପୂଜା କଲେ କିନା ଆମେ କେମିତି ଜାଣିବୁ ?

ବ୍ରହ୍ମା କହିଲେ ମଣିଷମାନେ ପୂଜା ଆରମ୍ଭ କଲେ ପ୍ରଥମେ ଶଂଖ, ମହୁରୀ ଓ ବାଜା ବଜେଇବେ ତାକୁଇ ଆବାହନର ପ୍ରଥମ ଅଂଗ କୁହାଯାଏ । ସେତେବେଳେ ଯାଏ ମଣିଷମାନେ ବାଜା ଓ ମହୁରୀ ଦେଖି ନଥିଲେ । ଶଂଖଟା ଶ୍ରୀକୃଷ୍ଣଙ୍କ ହାତରେ ଥିବାରୁ ସମସ୍ତେ ଦେଖିଥିଲେ । ତେଣୁ ଆମେ ମଣିଷମାନେ ଯାଇ ବ୍ରହ୍ମାଙ୍କୁ କହିଲୁ । ସେ ବାଜା ଓ ମହୁରୀ କେମିତି ତିଆରି ହେବ ? ବ୍ରହ୍ମା କହିଲେ ବାଜାଟା ଶିବଙ୍କ ଡମ୍ବରୁ ପରି ହେବ, କିନ୍ତୁ ମଝିଟା ମୋଟା ହେବ ।

କିନ୍ତୁ ସେଇଟା ବାଜିବ କେମିତି ? ସେ କହି ଚାଲିଥାଏ । ବ୍ରହ୍ମା କଥାଟା ଚିନ୍ତା କଲେ । ତାପରେ କହିଲେ ମୁଁ ଗୋଟାଏ ଗଛ ତିଆରି କରି ଦେଉଚି । ତା ନାଁ ହେବ ବାଉଁଶ ଗଛ । ସେ ଗଛର ମୂଳଟା ହେବ ଲଂଗଳ । ମଝିଟା ହେବ ଧନୁ । ତାର ଅଗଟା ହେବ ବଇଁଶୀ ବା ମହୁରୀ । ସେ ଗଛର ଡାଳ ହେବ ନାହିଁ । ଛୋଟ ଛୋଟ କେନା ବାହାରିବ । ସେଇ କେନା ବା କଣିଚାକୁ ବାଡ଼ି କରି ସେଥିରେ ବାଜା ବଜେଇବ । ଏମିତି ଭାବରେ ବ୍ରହ୍ମା ଢୋଲ ଓ ମହୁରୀ ତିଆରି କଲେ । ତାପରେ ତାଳ ମାନ ଇତ୍ୟାଦି ତିଆରି ହେଲା ।

ମୁଁ କହିଲି ଯା ଭିତରେ ତେବେ ଏତେ କଥା ଅଛି ?

ସବୁ ଶାସ୍ତ୍ର କଥା ହଜୁର । ଢୋଲଟାର ଆକାର ଶିବଙ୍କ ଡମ୍ବରୁ ପରି ହେଇ

ଥିବାରୁ ଆମେ ଢ଼ୋଲ ବଜେଇବା ପୂର୍ବରୁ ଆପଣଙ୍କ ଠାରୁ ପାଞ୍ଚପା ଚାଉଳ ଓ ଧୂପ ନେଇ ତାକୁ ପୂଜା କରୁଁ ।

ସେ ମୋତେ କାହାଣୀର ସମସ୍ତ କଥାଟା ସିଧା ସଳଖେ ବୁଝେଇ ଦେଇ ଥିବାରୁ ଏକ ପ୍ରକାର ଆତ୍ମ ସନ୍ତୋଷର ହସ ହସିଲା ।

ନବଘନର ଏ କଥାରେ ସେ ଦିନ ମୁଁ କୌଣସି ପୌରାଣିକ ସତ୍ୟ ଅଛି କି ନା ସେ କଥା ଖୋଜିବାକୁ ଚେଷ୍ଟା କରି ନଥିଲି । କିନ୍ତୁ ତା କଥାଟା ଏମିତି କାବ୍ୟିକ ଓ ହୃଦୟସ୍ପର୍ଶୀ ଥିଲା ଯେ ତାକୁ ଆଉ ଥରେ ଘଣ୍ଟା ଘଣ୍ଟି କରିବାକୁ ମୋର ଇଚ୍ଛା ହେଉ ନଥିଲା । ଅବନୀ କହିଲା ଦେଖିଲ, ଢ଼ୋଲ ମହୁରୀ ପଛରେ କେତେ କଥା ଲୁଚି ରହିଚି । ଏ ସବୁ ସହିତ ଆମ ସଂସ୍କୃତିର ସମ୍ପର୍କଟାକୁ ଅସ୍ୱୀକାର କରି ହେବ କି ?

ଆମ ସଂସ୍କୃତି ସହିତ ଏତେ ନିବିଡ଼ ଭାବରେ ଜଡ଼ିତ ହେବାକୁ ଯେଉଁ ବ୍ରହ୍ମା ଢ଼ୋଲଟିଏ ଓ ମହୁରୀଟିଏ ତିଆରି କରି ଦେଲେ ସେଇ ବ୍ରହ୍ମା କଅଣ ମଣିଷମାନଙ୍କୁ ଏ ନିର୍ଦ୍ଦେଶ ମଧ ଦେଇଛନ୍ତି କି ସେଇ ଢ଼ୋଲଟିକୁ ଆମେ ଛୁଇଁ ଦେଲେ ଆମ ଦେହ ଅପବିତ୍ର ହେଇଯିବ ? କିମ୍ବା ସେଇ ଶୁଭ କାମରେ ପବିତ୍ର ସ୍ୱରଟିଏ ସୃଷ୍ଟି କରୁଥିବା ଢ଼ୋଲକୁ ଯିଏ ଜୀବନ ଯାକ ବେକରେ ବୋହି ଚାଲୁଥିବ ତା ଛାଇର ସ୍ପର୍ଶରେ ମଧ ଆମ ଦେହ ଅପବିତ୍ର ହୋଇଯିବ ?

ମୁଁ କିନ୍ତୁ ଅବନୀକୁ ଏ ସବୁ କଥା କିଛି କହି ପାରିଲିନି । ତାକୁ ସେ କଥା କହିବାର କିଛି ଆବଶ୍ୟକତା ମଧ ନଥିଲା । ତେବେ ଅନ୍ୟ କିଛି କହିବା ପୂର୍ବରୁ ଅବନୀ ଠିଆ ହେଇ ପଡ଼ିଲା ଏବଂ କହିଲା ହଉ, ଏବେ ସେ ସବୁ କଥା ଥାଉ । ତମେ ସବୁତ ସକାଳୁ ସକାଳୁ ବାହାରି ଥିବ, କିଛି ଖାଇ ନଥିବ ।

ନବଘନ ଶୀରିମନ୍ତକୁ ଚାହିଁ ହସିଲା । କହିଲା ବାବୁଙ୍କ ପୁଅ ବାହାଘରକୁ ଆମେ ଯେତେବେଳେ ଆସୁଚୁଁ ସେତେବେଳେ ଘରୁ ଆଉ କାହିଁକି ଖାଇ ଥାଆନ୍ତୁ ? ଆମେ ହସିଲୁ ।

ଶୀରିମନ୍ତ ସାଙ୍ଗେ ସାଙ୍ଗେ କହିଲା ସତେ ଯେମିତି ସେ ସକାଳେ ପୁରି ତରକାରି ଜଳଖିଆ ନ ଖାଇଲେ ଘରୁ ବାହାରେନି । କେବେ ଖାଇଚୁ ନା ଆଜି ବାବୁଙ୍କୁ ଦେଖି ଏମିତି କହୁଛୁ ?

ସେମାନେ ଦୁହେଁ ହସି ଉଠିଲା ବେଳକୁ ମୋ ମୁହଁରେ ଲହଡ଼ି ଭାଙ୍ଗୁ ଥିବା ହସ ଟିକକ ହଠାତ୍ ଉଭେଇ ଗଲା ।

ଅବନୀ କହିଲା, ହଉ, ତମେ ସବୁ ଯାଅ, ଆଗ ସେ ପଛପଟ ଗାଡ଼ିଆରୁ ମୁହଁ ହାତ ଧୋଇ ଆସ । ଜଳଖିଆ ଖାଅ । ବିଶ୍ରାମ ନିଅ । ତାପରେ କାମ ଆରମ୍ଭ ହେବ ।

ନବଘନ ପଚାରିଲା ଏ ଜିନିଷ ଗୁଡ଼ାକ କୋଉଠି ରଖିବୁଁ ? ଆମକୁ ଖଣ୍ଡେ ଜାଗା

ଦେଲେ ଆମେ ସବୁ ଠିକ ଠାକ କରି ନେବୁଁ ।

ଚନ୍ଦ୍ର ଏ ଯାଏ ଠିଆ ହେଇ ସବୁ ଶୁଣୁ ଥିଲା । ନବଘନ କଥା ଶୁଣି ସେ ତରତରରେ ଘର ଭିତରକୁ ଯାଉଥିଲା ବେଳେ ଅବନୀ ତା ପଛେ ପଛେ ଏକ ପ୍ରକାର ଦଉଡ଼ି ଆସିଲା ଏବଂ ଦାଣ୍ଡ ମେଲାରେ ତାଂକୁ ଅଟକାଇ ଅନୁଚ୍ଚ ସ୍ୱରରେ ପଚାରିଲା କୁଆଡେ ଯାଉଛୁ କି ?

ତା ପଛେ ପଛେ ମୁଁ ବି ସେଠି ଯାଇ ପହଞ୍ଚିଗଲି । ସେତେବେଳେ ନବଘନ ଶୀରୀମନ୍ତ ଓ ତାଙ୍କ ଦଳମାନେ ଘରର ପଛ ପାଖ ଦେଇ ଗାଡ଼ିଆ ଆଡ଼କୁ ଯାଉଥାଆନ୍ତି ।

ଚନ୍ଦ୍ର କହିଲା ସେମାନଙ୍କ ପାଇଁ ଦି'ଟା ମସିଣା ଆଣିବାକୁ ଯାଉଚି ।

ମସିଣା ? କି ମସିଣା ? ତୁ ଆଣି ମସିଣା ପାରିଦେଲେ ସେମାନେ ବସିବେ ? ପାଠ ଶାଠ ପଢ଼ି ତୋର ଏଇ ବୁଦ୍ଧି ?

ମୁଁ ଅବନୀକୁ ଅନେଇ ରହିଲି । ସେ ମୋତେ ଚାହିଁ କହିଲା ଆଜିକାଲିକା ପିଲାଙ୍କ ବୁଦ୍ଧି ଦେଖ । ହାଡ଼ିମାନଙ୍କ ପାଇଁ ମସିଣା ଆଣିବାକୁ ଯାଉଚି । ଆରେ, ଆଙ୍ଗୁଳି ଦେଖେଇଲେ ବାହା ଗିଳି ଦେବେ । ସେମାନେ ଆଉ ଆମକୁ ମାନିବେ ? ଆଜି ମସିଣା ପାରି ଦେଲେ କାଲି କହିବେ ଆମ ପତର ଉଠାଅ ।

ସେ ପଛ ପଟକୁ ବୁଲି ପଡ଼ି ବାହାରି ଗଲା ଏବଂ ନବଘନକୁ ପାଟି କରି ଡାକିଲା। ବାପ ନବଘନ, ଆସିଲାବେଳେ ସେ ଗୁହାଳ ପାଖ ଭାଡ଼ି ଉପରେ ଚଉତା ହୋଇ ଟାଟଟାଏ ପଡ଼ିଚି । ତାକୁ ଆଣି ସେହି ପଣସଗଛ ମୂଳରେ ପକେଇବ । ଏ ପାଖ ଏ ଭିଡ଼ ଜାଗାମାନଙ୍କରେ ନ ବସି ତମେମାନେ ସେଇଠି ବସିଲେ ଟିକିଏ ଶାନ୍ତିରେ ବିଶ୍ରାମ ନେଇ ପାରିବ । ମୁଁ ତୁମର ଆଉ ସବୁ ସୁବିଧା ସେଇଠି କରି ଦେଉଚି । କିଛି ଦରକାର ହେଲେ ମୋତେ କହିବ । ନିଜ ଘର ଭଳିଆ ଭାବିବ । ବୁଝିଲ ?

ତାପରେ ସେ ଚନ୍ଦ୍ରକୁ କହିଲା, ତୁ ଯାଆ ତୋ କାମ କର । ମୁଁ ଏମାନଙ୍କ କଥା ବୁଝିବି ।

*(ତ୍ରିବେଣୀ, ପୂଜାସଂଖ୍ୟା-୧୯୯୯)*



# ପ୍ରଥମ ମୃତ୍ୟୁ

**ମୁଁ** ତାଙ୍କୁ ଯେଉଁଦିନ ପ୍ରଥମ କରି ଦେଖିଲି ସେ ଦିନର କଥା ଆଜି ମୋର ବେଶ୍ ମନେ ଅଛି । ସେ ଗୋଟାଏ ସଭାରେ ଭାଷଣ ଦେଉଥିଲେ । ଭାଷଣ ଦେଉଥିଲା ବେଳେ ତାଙ୍କର ପତଳା ନହକା ଦେହଟା ବେଳେ ବେଳେ ନହକା କାଣ୍ଡ ପରି ବଂକେଇ ଯାଉଥିଲା । ତାଙ୍କ ଲମ୍ବା ହାତଟା କେତେବେଳେ ଏମିତି ତେରଛା ହେଇ ଦିଗ୍‌ବଳୟ ଆଡ଼କୁ ଲମ୍ବି ଯାଉଥିଲା ଯେ ମୋର ସେତେବେଳେ ସହର ମଝିରେ ସେ ବଡ଼ ଚାରି ମୁହାଣୀ ଛକ ଉପରେ ପ୍ରାୟ ଦଶଫୁଟ ଉଚ୍ଚର ପିଣ୍ଡିଟା ଉପରେ କୋଉ ଆବହମାନ ଯୁଗରୁ ପାଉଁଶିଆ ରଂଗର ମାର୍ବଲରେ ତିଆରି ଷ୍ଟେଚୁଟା କଥା ମନେ ପଡ଼ି ଯାଉଥିଲା । କାରଣ ତାର ହାତ ମଧ ଠିକ୍ ସେମିତି ସଦାବେଳେ ଲମ୍ବି କରି ଥାଏ ।

ସେ ଷ୍ଟେଚୁଟାକୁ ଦେଖିଲେ କି ତା କଥା ମନେ ପଡ଼ିଲେ ମୋତେ କାହିଁକି କେଜାଣି ବଡ଼ ହସ ମାଡ଼େ । ଥରେ କ'ଣ ହେଲାନା ମୁଁ ସାଇକେଲରେ ସେ ବାଟେ ଟିଉସନରୁ ଫେରୁଥାଏ, ସେଇଟା ମୋ ରାସ୍ତା । ସମୟ ବୋଧେ ଦିନ ଦଶ କି ଏଗାର ହେବ । ମୋ ବେକରେ ବହିର ଗୋଟାଏ ବିରାଟ ବେଗ୍ ପଛକୁ ଝୁଲୁଥାଏ । ମୁଁ ଟିକିଏ ସଅଳ ସଅଳ ଫେରିବାକୁ ଚେଷ୍ଟା କରୁଥାଏଁ । କାରଣ ସେ ଦିନ ଆମ ସାଇ, ମାନେ 'ମକର ସାଇ' ସହିତ 'ଦଇତା ପଡ଼ା' ସାଇର ନବ ଯୁବକ ସଂଘର ଫାଇନାଲ କ୍ରିକେଟ ମେଚ୍ ହେବାର ଥାଏ । ଖେଳଟା ୧୨ଟାରେ ଷ୍ଟେଡିଅମରେ ହେବାର ଥିଲା ଏବଂ ସେଥିରେ ଆମ ମ୍ୟୁନିସିପାଲଟିର ଚେୟାରମେନ ମୁଖ୍ୟ ଅତିଥି ହିସାବରେ ଯୋଗ ଦେବାର ଥାଏ । ସେଇ ମେଚରେ ମୋର ଖେଳିବାର ଥିଲା ।

କିନ୍ତୁ କି ଆଶ୍ଚର୍ଯ୍ୟ ! ମୁଁ ଆସି ଦେଖିଲି ଛକ ପାଖରେ ପ୍ରବଳ ଭିଡ଼ । ରାସ୍ତା ଚାରିଆଡୁ ବଂଦ । ଚାରି ଦିଗରୁ ଲୋକ, ଗାଡ଼ି, ମୋଟର, ରିକ୍ସା, କାର ସବୁ ଏମିତି ଜମି ଯାଇଛି ଯେ ଆଉ ତିଳ ପକେଇବାକୁ ଜାଗା ନ ଥାଏ । କେଉଁ କାରଣରୁ ଏତେ ଭିଡ଼ ହେଇଛି ସେତକ ଜାଣିବାର ମଧ ଉପାୟ ନଥାଏ । କାରଣ ମୁଁ ସେତେବେଳେ ଛକ ଠାରୁ ପ୍ରାୟ ପାଞ୍ଚ ଶହ ମିଟର ଦୂରରେ । ସାଇକେଲ ନେଇ ଆଗକୁ ଯିବାର ଆଉ କୌଣସି ଉପାୟ ନଥାଏ । ସାଇକେଲକୁ ଷ୍ଟାଣ୍ଡ ମାରି ମୁଁ ଦୁଇ ରାସ୍ତା ମଝିରେ ଥିବା ଲୁହାବାଡ଼

ଉପରେ ଚଢ଼ି ଆଗକୁ ଦେଖିବାକୁ ଚେଷ୍ଟା କଲି । ସେଥିରେ ମଧ୍ୟ ସଫଳ ହେଇ ପାରିଲାନି ।

ମୁଁ ଦଶମ ଶ୍ରେଣୀରେ ପଢୁ ଥିବାରୁ ମୋର ବାଲ୍ୟ ଚପଳତା ସେତେବେଳକୁ ଆଉ ନଥାଏ କହିଲେ ଚଳେ । କିନ୍ତୁ ଏ ଅବସ୍ଥାରେ ମୋର ସେ ନଇଁ ପଡ଼ିଥିବା ଦୁଷ୍ଟାମି ଟିକକ ମୋ ଭିତରେ ଉଙ୍କି ମାରିଲା । ମୁଁ ତାର ସଦୁପଯୋଗ କରିବାକୁ ଚାହିଁଲି । ମୁଁ ତାକୁ ହାତ ଠାରି ଡାକିଲି, କହିଲି, ଏୟ ଟିକିଏ ଏ ଆଡ଼େ ଆସିଲୁ । ସେ ବୋଧେ ପ୍ରଥମେ ଟିକିଏ ଥତ ମତ ହେଉଥିଲା । କାରଣ ସେ ସେତେବେଳେ ମୋତେ ଦୋ-ଦୋ ଚିହ୍ନା କରୁଥିଲା । ଅନେକ ଦିନ ପରେ ଦେଖୁଥିଲା କି ନା । ପରେ ଯେତେବେଳେ ତାର ମୋ ସହିତଅନେକ ଦିନର ବଂଧୁତା କଥା ମନେ ପଡ଼ିଗଲା ସେ ଚଟ୍ କରି ଦୂରତ୍ୱର ବାଡ଼ ଡେଇଁ ମୋ ପାଖକୁ ଦୌଡ଼ି ଆସିଲା । ମୁଁ ତାକୁ କୁଣ୍ଢେଇ ପକେଇଲି । ଅନେକ ଦିନ ପରେ ଭେଟା ଭେଟିରେ ଯେ କି ଆନନ୍ଦ ସେ କଥା ଏବେବି ମନେ ପଡ଼ିଲେ ମୋ ଦେହ କୁରୁଳି ଉଠେ । ସେ ମୋତେ କହିଲା ଆରେ ତୁ ଯା ଭିତରେ କେଡୁଟିଏ ହେଇ ଗଲୁଣି ମ ? ତୋର କଅଣ ଅଳ୍ପ ଅଳ୍ପ ନିଶ ଗଜୁରିଲାଣି ? ତୋ ଆଖିଟାତ ବେଶ ପାୱାରଫୁଲ ଦେଖା ଯାଉଛି ? ଛାତିଟାବି ବେଶ ମୋଟେଇ ଆସିଲାଣି ।

ମୁଁ ହସି ହସି କହିଲି- 'ଧେତ୍ ସେମିତି କଅଣ କହୁଛୁ ମ ? ମୁଁ ତ ଯେମିତି ଥିଲି ସେମିତି, ଯେଉଁଠି ଥିଲି ସେଇଠି । ତୁ କଅଣ ମୋତେ ଜାଣିନୁ କି ?' ତାପରେ ଟିକିଏ ରହି କହିଲି 'ହେୟ ! ରହ ସେ କଥା ଟିକିଏ ପରେ ହେବା । ଏବେ ସେ ପୁରୁଣା କଥା ଆରମ୍ଭ କଲେ, ମାନେ କେମିତି ସେ ଆଗ ସ୍କୁଲରେ କଅଣ କରିଥିଲୁଁ, କେମିତି ଖେଳ ଛୁଟିରେ ସ୍କୁଲ ପଡ଼ିଆରେ ବରକୋଳି ଗଛରେ ଚଢ଼ି କୋଳି ଖାଉ ଥିଲାବେଳେ ୭ମ ଶ୍ରେଣୀର, ସେ ତାର ନାଁ କଅଣ କହିଲୁ ? ସିପ୍ରା ନା ? ମୁଁ ତାକୁ ଦେଖି କହିଲି... ଆଛା ସେ କଥ ବି ଥାଉ । ଏବେ ତୁ ଟିକିଏ ମୋତେ ସାହାଯ୍ୟ କଲୁ, ମୁଁ ଟିକିଏ ତୋ କାନ୍ଧରେ ଚଢ଼ି ଦେଖିବି ସେ ଛକରେ କାହିଁକି ଏତେ ଭିଡ଼ ।

ସେ କହିଲା- ଆରେ ଏଇଟା ଗୋଟାଏ କି କଥା ? ଚଢ଼ି ଯାଉନୁ ମୋ କାନ୍ଧରେ ! ଯା ଉପରେ ତୁ ତ କେତେଥର ଚଢ଼ିଥିବୁ ।

ମୁଁ ସାଙ୍ଗେ ସାଙ୍ଗେ କୁଦି ପଡ଼ିଲି ତା ଉପରକୁ ଏବଂ ସିଧା ଠିଆ ହେଇ ଗଲି । ତାପରେ ନଜର ପକେଇଲି ସେ ଛକ ଆଡ଼କୁ । ହଠାତ୍ ପଛରୁ କିଏ ଜଣେ ପାଟି କଲା । ଆରେ, ଏୟ ଇଏ କଅଣ ? ତୁ କଅଣ ସିଧା ଚଢ଼ି ଗଲୁ ? କାହାକୁ ବୋଲା ନାହିଁ ପୁଛା ନାହିଁ । ଏୟ, ଓହ୍ଲାଉଛୁ ନା ନାହିଁ ?

ମୁଁ ଶୁଣୁଥାଏ, ଶୁଣୁ ନଥାଏ ମଧ୍ୟ । ତାର ସେ କଥା ଗୁଡ଼ାକ ମୋର ଏ କାନରେ ପଶି ସେ କାନରେ ବାହାରି ଯାଉଥାଏ । ମୋଟ କଥା ସେ ଯେ ମୋତେ କହୁଚି ଏ କଥା ମୋତେ ମୋଟେ ଜଣା ପଡୁ ନଥାଏ । କାରଣ ମୋ ମନ ଥାଏ ଛକ ଆଡ଼େ ।

ମୁଁ ଦେଖିଲି ଅନେକଗୁଡ଼ିଏ ଟ୍ରାଫିକ ପୁଲିସ । ସେମାନେ ସବୁ ପେଁ-ପାଁ ହୁଇସିଲ୍

ମାରି ଯେତେ ଟ୍ରାଫିକ୍ କଣ୍ଟ୍ରୋଲ କରିବାକୁ ଚେଷ୍ଟା କରୁ ଥାଆନ୍ତି ମୋଟେ ପାରୁ ନଥାନ୍ତି । ଗୋଟାଏ ଟ୍ରାଫିକ ହାବିଲଦାର ହବ କି କଅଣ, ରୁମାଲରେ ନିଜ ବେକରୁ ଝାଳ ପୋଛି ପକଉଥାଏ । କିନ୍ତୁ ମୁଁ ମୋଟେ ବୁଝି ପାରୁ ନଥାଏଁ ଏତେ ଭିଡ଼ ହେଲା କାହିଁକି । ଏକସିଡେଣ୍ଟ ହୋଇଥିଲେ ତ ପାଞ୍ଚ ମିନିଟରେ ରାସ୍ତା ସାଫ୍ ହେବା କଥା । କାରଣ ମୁଁ ନିଜେ ଦେଖିଛି ଆମ ଟ୍ରାଫିକ୍ ପୁଲିସ ଏତେ କମ୍ପିଟେଣ୍ଟ ଯେ ବଡ଼ ବଡ଼ କ୍ରିକେଟ ଖେଳରେ ଯେତେ ଭିଡ଼ ହେଇଥାଉ ନା କାହିଁକି ମନ୍ତ୍ରୀ କି ମାଜେଷ୍ଟ୍ରେଟଙ୍କ ରାସ୍ତା ସାଫ୍ କଲା ପରି ପାଞ୍ଚ ମିନିଟରେ ସବୁ ସଫା କରିଦିଅନ୍ତି ।

ଘଟଣାଟା ବୁଝୁ ବୁଝୁ କଅଣ ନା, ଗୋଟାଏ ପାଗଳ ସେ ଷ୍ଟେଚୁଟା ସାମନାରେ ଛିଡ଼ା ହେଇ ପାଟି କରି, ତାକୁ କହୁଛି, ''ଏୟ ! ମୋତେ ସେ ଆଡ଼କୁ କାହିଁକି ହାତ ଦେଖାଉଛୁ ? ମୁଁ ତ ଯିବି ଏ ଆଡ଼େ ।'' ସେ ଷ୍ଟେଚୁ ଉପରେ ରାଗି ଯାଉଚି । କାରଣ ସେ ତା କଥା ଶୁଣୁ ନାହିଁ । ସେ ବୋଧେ ଭାବୁଚି ସେ ଷ୍ଟେଚୁଟା ଟ୍ରାଫିକ୍ କନଷ୍ଟେବଲ । ତାକୁ ଗାଳି ଦେଇ କହୁଛି, ହେଇ ଦେଖୁନୁ ଆମେ ସମସ୍ତେ ଏ ଆଡ଼େ ଯିବୁଁ । ଅଥଚ ତୁ ମଦ ପିଇ ଡ୍ୟୁଟି କରୁଛୁ କି କଅଣ, ତୁ ହାତ ଦେଖଉଛୁ ବିପରୀତ ଦିଗକୁ ?'' ପାଗଳଟା ସେତେବେଳକୁ ଖୁବ୍ ରାଗି ଗଲାଣି । ସେ ଶେଷରେ ଅନ୍ୟ ଉପାୟ ନ ଦେଖି ଜଣେ ବଡ଼ ପୁଲିସ ଅଫିସରଙ୍କୁ ଧରିଆଣି କହିଲା, ତୁମେ ୟାକୁ ଆଗ ସସ୍‌ପେଣ୍ଡ କର । ତାପରେ ଯେଉଁ କଥା । ସେ ମଧ୍ୟ ଅଟକି ଥିବା ଲୋକମାନଙ୍କୁ ସମ୍ବୋଧନ କରି କହିଲା, ଭାଇମାନେ, ଆପଣମାନେ ୟାର ପ୍ରତିବାଦ କରନ୍ତୁ । ଆଜି ଏ ସମସ୍ତଙ୍କର ଯେଉଁ ଅସୁବିଧା ହେଲା, ତା ପାଇଁ ଦାୟୀ କିଏ ?

ଏ ପିଲା ! ଉହ୍ଲଉଚୁ ନା ଦେଖିବୁ ? ସେ ଏତେ ଜୋର୍‌ରେ ପାଟି କଲେ ଯେ ମୁଁ ଚମକି ପଡ଼ିଲି । ବୁଲିପଡ଼ି ଦେଖିଲି ଗୋଟିଏ ଲମ୍ବା ହଳଦିଆ ହାତ ମୋ ଜଂଘ ଉପରେ ଥିବା ହାଫ୍ ପେଣ୍ଟକୁ ଟାଣୁଛି । ସେ ହାତଟା କୋଉଠୁ ଆସିଚି ବୋଲି ଦେଖିବାକୁ ଯାଇ ଜାଣିଲି ଯେ ମୁଁ କାର୍‌ର ପିଠି ଉପରେ ଠିଆ ହୋଇଚି । ମୋତେ ଲାଜ ମାଡ଼ିଲା । ମୁଁ ସେ ହାତଟାକୁ ଧରି ପକେଇ କହିଲି ଟିକିଏ ରହନ୍ତୁ ।

ସେ ହସି ଦେଲେ । ମୁଁ ବି ।

ମୁଁ ତଳକୁ ଡେଇଁ ପଡ଼ିଲି । ବାସ୍ । ତାପରେ ରାସ୍ତା ସାଫ୍ ହେଇଗଲା । ମୁଁ ସଂଗେ ସଂଗେ ସାଇକେଲ ଛୁଟେଇ ଦେଲି ।

ବରୁନ ଦେଙ୍କୁ ସମସ୍ତେ 'ବରୁଦେ' ବୋଲି ଡାକନ୍ତି । ସେଇ ନାଁରେ ସେ ସବୁଠି ପରିଚିତ । ବରୁଦେ କହିଲେ ଆଉ କିଛି ପରିଚୟ ଦରକାର ନାହିଁ । ମୁଁ ତାଙ୍କୁ ଯେତେଥର ସଭା ସମିତିରେ ଭାଷଣ ଦେବାର ଦେଖିଚି ସେତିକି ଆଶ୍ଚର୍ଯ୍ୟ ହେଇଚି । ଏମିତିବି ବେଳେ ବେଳେ ହେଇଚି ଯେଉଁ ସଭାରେ ବରୁଦେ ନାହିଁ ସେ ସଭାଟା ଯେମିତି ସଭା ନୁହେଁ । ଲୋକେ ବରୁଦେଙ୍କ ନାଁ ଶୁଣିଲେ ସଭାସ୍ଥଳରେ ଜୁଟି ଯାଆନ୍ତି । କିଏ ଥିଲିରେ ପରିବା

ଧରିବି ତ କିଏ ପିଲାପାଇଁ କ୍ଷୀର ନେଇ ଯାଉଚି । ଏପରିକି ସ୍ତ୍ରୀ ପାଇଁ ଔଷଧ ଆଣିବାକୁ ଯାଇ ଆସି ପାରୁନି- ଅଟକି ଯାଉଚି ।

ବରୁନ୍ଦେର କଥାରେ ଯେମିତି ଯାଦୁ ଥାଏ । ସେ ଯାଦୁର ବାଡ଼ି ବରୁନ୍ଦେ ଥରେ ହାତରେ ଧରିଲେ ଲୋକମାନେ ମନ୍ତ୍ରମୁଗ୍ଧ ହେଇଯାଆନ୍ତି । ଟେବୁଲ ଫେନ୍ ପରି ବରୁନ୍ଦେ ମଂଚ ଉପରେ ବୁଲି ଭାଷଣ ଦେଲେ ତାଳିର ଅଭାବ ରହେନା । ମନ ଯେତିକି ତାପ ଆହରଣ କରେ ସେତିକି ଶରୀରକୁ ଉତ୍ତପ୍ତ କରିବାର ଉପାଦାନ ମଧ ଥାଏ ସେ ଭାଷଣରେ । କୌଣସି କାରଖାନାର ଗେଟ୍ ପାଖରେ ବରୁନ୍ଦେ ଭାଷଣ ଦେଉଥିବାର ଦେଖିଲେ ଲୋକେ ଭାବନ୍ତି ସେ କାରଖାନାର ତାଲା ବନ୍ଦ ହେବାର ଅଛି । ଖାଲି ସେତିକି ନୁହେଁ ବରୁନ୍ଦେଙ୍କ ନିର୍ବାଚନ ଭାଷଣ ଶୁଣିବାର କଥା । ଯେଉଁ ସାମ୍ବାଦିକମାନେ କେବେ କୁଆଡ଼େ ବାହାରନ୍ତି ନାହିଁ, ସେମାନେ ସେ ଦିନ ଦୁଇ ପକେଟରେ ପାନ ସିଗାରେଟ୍ ଭରି କରି ଯାଇ ଥାଆନ୍ତି । ହାସ୍ୟରସ, କରୁଣରସ ଉଭୟ ସେ ପରିବେଷଣ କରନ୍ତି । ସେଇଥିପାଇଁ ଭାଷଣରେ ଶେଷ ଶବ୍ଦ ଶୁଣିବା ପାଇଁ ଲୋକେ ସେମିତି ବସିବା ଜାଗାରେ ବସିଥାଆନ୍ତି କିମ୍ବା ଠିଆ ହେବା ଜାଗାରେ ଠିଆ ହୋଇ ଥାଆନ୍ତି ।

ମୁଁ ସେଇ ବରୁନ୍ଦେଙ୍କ କଥା କହୁଚି । ମୁଁ ତାଙ୍କୁ ସେଦିନ ଯେତେବେଳେ ଦେଖିଥିଲି ସେତେବେଳେ ମୋ ଭିତରର ମଣିଷଟା ଦାନା ବାନ୍ଧି ସାରିଥାଏ । ଜୀବନକୁ ଟିକିଏ ବୁଝିବାରେ, ତାକୁ ଭୋଗିବାରେ, ମନ ଭିତରେ ଆଉଟିବାରେ ଏବଂ ଶେଷରେ ନେଇଥିବା ଗୋଟାଏ ମଂଜ ବାହାର କରିବାର ଅବସ୍ଥାକୁ ମୁଁ ପ୍ରାୟ ଆସି ସାରିଥାଏ । ତେଣୁ ମୁଁ ଯେତେଥର ତାଙ୍କ ଭାଷଣ ଶୁଣିବାର ସୁଯୋଗ ପାଇଚି ସେତେଥର ତାଙ୍କ ଆଡ଼କୁ ସେମିତି କେଜାଣି ଆଉଜି ଯାଇଥିବାର ଅନୁଭବ କରିଚି ।

ମୋତେ ଥରେ ଜଣେ କହିଲେ, ବରୁନ୍ଦେ ସାଧାରଣ ଭାବରେ ମଧ୍ୟ ଅତି ଅମାୟିକ ; ଅତି ସାଧାରଣ । ସବୁବେଳେ କଥାବାର୍ତ୍ତାରେ ଏବଂ ଆଚାର ବ୍ୟବହାରରେ ମଧ୍ୟ ଅତି ଆପଣାର କରି ପାରୁଥିବା ଗୋଟାଏ ଅସୀମ ଶକ୍ତି ତାଙ୍କ ପାଖରେ ଥାଏ ।

ଏକଥା ସତ, ମୁଁ ଅନେକ ଥର ତାଙ୍କୁ ପାଖରୁ ଦେଖିଚି । ଏବଂ କେତେଥର ଏତେ ପାଖକୁ ଯାଇଚି ଏଇ ମନ ନେଇ ଯେ ଯେମିତି ସେ ମୋତେ କିଛି କହନ୍ତୁ । କିଛି ନ ହେଲେ ବି ମୋ ନାଁ କଣ, କଅଣ ପଢ଼ୁଛି, କଅଣ କରେଁ, କୋଉଠି ଓ କୋଉ ଧାଇଡେ ଘର, ବାପା କଅଣ କରନ୍ତି । ନା, ସେ କଥା ନ ପଚାରିଲେ ବି ଚଳିବ । ମୋ ବାପାତ ଡାଲି ଚାଉଳ ଦୋକାନ କରେ । ସେ କଥା ଶୁଣିଲେ ସେ ହୁଏତ ଖରାପ ଭାବି ପାରନ୍ତି । ତେଁ ମୋତେ ଆଉ କିଛି ପଚାରିଲେ ଚଳିବ ।

ଏଇ ପ୍ରକାର ଆଶା ନେଇ ମୁଁ ତାଙ୍କ ପାଖକୁ ଯେତେଥର ଯାଇଚି କିମ୍ବା ତାଙ୍କ ନଜର ପଡ଼ିବା ଭଳି ସ୍ଥାନରେ ଯେତେଥର ଠିଆ ହେଇଚି ସେ କିନ୍ତୁ ମୋ ଆଡ଼କୁ ମୋଟେ ଅନେଇ ନାହାନ୍ତି । ଯେମିତି ଏଇ ମାନେ କରନ୍ତୁ, ଗାଁରେ ଯାତ୍ରା ହେଉଥିଲା ବେଳେ ଅର୍ଥାତ୍

ଯାତ୍ରା ପରେ, ରାମ କି ରାବଣ ହେଉଥିବା ଲୋକଟିକୁ ସାଜଘର ସାମ୍ନାରେ ଠିଆ ହେଇ ତାକୁ ଆଉ ଥରେ ଦେଖିବାର ଗୋଟାଏ ପ୍ରବଳ ଲୋଭ ଆମର ଥାଏ । ଆମେ ଯାଉଁ । ସେଠି ଛାତିରେ ହାତ ଛନ୍ଦି ଠିଆ ହେଇ ଆଉ ଥରେ ଦେଖୁଁ । କେମିତି ସେ ତାର ରାବଣ ନିଶ ଖୋଲେ, କେମିତି ସେ କେଶ ଖୋଲେ ଏବଂ ତାପରେ ମୁହଁ ସଫା କରି ଆମର ଏକଦମ ପାଖରେ ଠିଆ ହେଇ ଲୁଙ୍ଗିଟାକୁ ଆଣ୍ଠୁ ଉପରକୁ ଟେକି ଦେଇ ଯାତ୍ରାରେ କଟୁଆଳ ହେଇଥିବା ଲୋକଟା ପାଖରୁ ବିଡ଼ି ମାଗି ଆଣି ଟାଣେ । ଏ ସବୁ ଦେଖି ଆମେ ଆଶ୍ଚର୍ଯ୍ୟ ହେଇଯାଉ । ଆରେ ଏ ଲୋକଟା ଏତେ ପରାକ୍ରମୀ ଥିଲା ଏଇ ଟିକକ ଆଗରୁ, ଅଥଚ ଏବେ ତାକୁ ଦେଖ ! ଛି ! ମନଟା କେମିତି ପିତେଇ ଉଠେ ।

ଏ କଥା ଗୁଡ଼ାକ ମନେ ପଡ଼ିଲେ ମୁଁ ଏବେ ମଧ ଫେଁ କିନା ହସି ଦିଏଁ । କିନ୍ତୁ ବରୁଦେଙ୍କ ପାଖରେ ଠିଆ ହେଲେ ମୋର ସେମିତି କିଛି ଭାବନା ସୃଷ୍ଟି ହେଉ ନଥିଲା । ତେଣୁ ଥରେ ନୁହେଁ କି ଦି ଥର ନୁହେଁ କେତେ ଥର ମୁଁ ତାକୁ ଏମିତି ପାଖରୁ ଦେଖିଛି ।

ଥରେ ମୋତେ ଗୋଟାଏ ସୁଯୋଗ ମିଳିଗଲା । ସେ ସେଥର ଆମ କଲେଜକୁ ଆସିବାର ହେଲା ମୁଖ୍ୟବକ୍ତା ହେଇ । ମୁଁ ଥାଏଁ ଇଉନିଅନର ସେକ୍ରେଟେରୀ । ବାସ୍, ଆଉ କଥା ନାହିଁ । ତାଙ୍କୁ ଆମ କଲେଜକୁ ଆଣିବାରେ ମୋର ପ୍ରଚ୍ଛନ୍ନ ହାତ ଥିଲା । ବରଂ ଏମିତି କହିବା ଠିକ୍ ହେବ ଯେ ମୁଁ ମୁଖ୍ୟ ବକ୍ତା ପାଇଁ ତାଙ୍କ ନାଁ ପ୍ରିନ୍ସିପାଲଙ୍କୁ ସଜେଷ୍ଟ କରିଥିବାରୁ ଏବଂ ତାହା ବିନା ବାକ୍ୟବ୍ୟୟରେ ଗୃହୀତ ହେଇ ଯାଇଥିବାରୁ ମୋ ଭିତରେ କେମିତି ଗୋଟାଏ ଗର୍ବ ଉଛୁଳି ଉଠୁଥିଲା ପରି ଲାଗୁଥାଏ ।

ଆମେ ତାଙ୍କୁ ଗଲୁଁ କଣ୍ଟାକ୍ଟ କରିବାକୁ । ତାଙ୍କ ଘର ଆଗରେ ପହଞ୍ଚି ଯାହା ଦେଖିଲି ସେଥିରେ ଆମେ ଆଉ ଭିତରକୁ ଯିବୁଁ କି ନାହିଁ ଚିନ୍ତା କରୁଥିଲୁଁ ! ଏ ମା । ଏତେବଡ଼ ଲୋକଟାର ଘର ଏମିତିକା ? ଇଏ ତ ଯାତ୍ରାର ଲଙ୍କେଶ୍ୱର ରାବଣର କଟୁଆଳ ଠାରୁ ମାଗି ଆଣି ବିଡ଼ି ପିଇବା ପରି ହୋଇଗଲା । ନିହାତି ଛୋଟିଆ ଚାଳ ଘରଟାଏ । ଚାଳ ବି ବୋଧେ ଗୋଟାଏ ଦିଟା ଜାଗାରେ କଣା କି କଅଣ ହେଲାପରି ଦେଖା ଯାଉଥିଲା । ତେବେ ଚାଳର ଉପର ଭାଗରେ ଥିବା ବତାଟା ପରିଷ୍କାର ଦେଖାଯାଉ ଥାଏ ଏବଂ ତାର ଗୋଟାଏ ଅଂଶ ତଳକୁ ଓହଳି ପଡ଼ିଥାଏ ।

ମାଟି କାନ୍ଥ ଓ ମାଟି ପିଣ୍ଡା । କାନ୍ଥର ଅନେକ ଯାଗା ଖୋଳି ହୋଇ ଗୋଟାଏ ଅନେକ ଦିନର ପୁରୁଣା ଯାଦୁଆ ମଣିଷ ଭଳି ଦିଶୁଥାଏ । କାଠ କବାଟକୁ ବୋଧେ ଉଇ ଅଧା ଖାଇ କଣା କରି ଦେଇଚି । ଆମ ଭିତରୁ କିଏ ଜଣେ କହିଲା, ସେ ଗତ ଏମରଜେନ୍ସି ସମୟରେ ବର୍ଷେ କାଳ ଅଣ୍ଡରଗ୍ରାଉଣ୍ଡରେ ଥିଲାବେଳେ ଘରଟା ଏମିତି ହେଇ ଯାଇଛି । ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି, ଆରେ ତାଙ୍କ ବାପା ମାଆ କି ପିଲାଛୁଆ କେହି ନଥିଲେ ? ସେ କହିଲେ, ସେ କଅଣ ବାହା ହେଇଛନ୍ତି କି ? ତା ଛଡ଼ା ସେତେବେଳେ ତାଙ୍କ ବାପାମାଆଙ୍କୁ ପୁଲିସି ଏମିତି ହଇରାଣ କଲେ ଯେ ସେମାନେ ଏ ଘର ଛାଡ଼ି ଅନ୍ୟ ଆଡ଼େ

ଯାଇ କୁ'ଠି ରହିଲେ । ସେମାନେ ଆଉ ପୁଅ ପାଖକୁ ଫେରି ନାହାନ୍ତି ।

ମୋ ମନଟା ତାଙ୍କ ପ୍ରତି ଆହୁରି ନରମ ହେଇ ଆସିଲା । ଆହା, ଏତେ ବିରାଟ ଲୋକଟା କେତେ ଦୁଃଖ ନ ପାଉଚି ସତେ !

ଯା ହେଉ, ଆମେ ତାଙ୍କୁ କଣ୍ଟାକ୍ଟ କରି ଆସିଲୁଁ ଏବଂ ସେ ମଧ୍ୟ ରାଜି ହେଇଗଲେ । ସେଥର ନିମନ୍ତ୍ରଣ ପତ୍ର ବାଣ୍ଟିଲା ବେଳେ ମୁଁ ଅନ୍ତତଃ ଅନେକ ଜଣଙ୍କୁ କହିଥିବି ଯେ ବରୁଦେଙ୍କୁ ମୁଖ୍ୟ ବକ୍ତା କରିବାକୁ ମୁଁ ପ୍ରସ୍ତାବ ଦେଇଥିଲି ଏବଂ ପ୍ରିନ୍ସିପାଲ ନାଁ ଟା ଶୁଣି ସଙ୍ଗେ ସଙ୍ଗେ ରାଜି ହେଇଗଲେ ; ଏମିତି କହିବା ପଛରେ ମୋର ଯେ କିଛି ଉଦ୍ଦେଶ୍ୟ ଥିଲା, ନା ନୁହେଁ, କିନ୍ତୁ କାହିଁକି କେଜାଣି ମୋତେ ଏତକ କହିବାକୁ ଖୁବ୍ ଭଲ ଲାଗୁଥିଲା ।

ସେଥର କଲେଜ ଫଙ୍କସନ୍‌ରେ ମୁଁ ତାଙ୍କ ସହିତ ଏକଦମ ପାଖାପାଖି ମିଶିବାର ସୁଯୋଗ ପାଇଲି । ତାଙ୍କୁ ଚା' ଜଳଖିଆ ଦେବା, ସଭାରେ ବସିଥିଲା ବେଳେ ତାଙ୍କ ହାତକୁ ପାଣିଗ୍ଲାସେ ବଢ଼େଇ ଦେବାରେ ମୁଁ ଖୁବ୍ ତତ୍ପର ଥିଲି । ଏପରିକି ସଭା ଚାଲୁଥିବାବେଳେ ଯେତେ ଫଟୋ ଉଠିଚି ସବୁ ଥିରେ ମୁଁ ତାଙ୍କ ପାଖରେ କିମ୍ବା ପଛକୁ ଥିବାର ଦେଖା ଯାଇଛି । ହୁଏନ ମୋ ପୁରୁଣା ଆଲବମ୍ ଖୋଜିଲେ ଏବେ ବି ସେ ଫଟୋରୁ ଖଣ୍ଡେ ଦି'ଖଣ୍ଡ ମିଳିପାରେ । ଅନେକ ଦିନ ପର୍ଯ୍ୟନ୍ତ ସେସବୁ ଥିବାର ମୁଁ ଦେଖିଥିଲି

ସେଇ ବରୁଦେଙ୍କୁ ମୁଁ ଆଜି ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ପ୍ରାୟ ଘଣ୍ଟାଏ କାଳ ବାହାରେ ଅପେକ୍ଷା କଲାପରେ ମୋତେ ଯେତେବେଳେ ଭିତରକୁ ଆସିବାକୁ ନିର୍ଦ୍ଦେଶ ଆସିଲା, ମୁଁ ଗଲି । ବିରାଟ ଡ୍ରଇଂ ରୁମଟାରେ ମୁଁ ଏକୁଟିଆ ବସିଥିଲି । ଘରଟାରେ ଖୁବ୍ ସାମାନ୍ୟ ଲାଇଟ୍ ଥାଏ । କେମିତି କେଜାଣି ମୋତେ ଟିକିଏ ଅନ୍ଧାରୁଆ ଅନ୍ଧାରୁଆ ଲାଗୁଥାଏ । ଝରକା ଗୁଡ଼ାକ ପ୍ରାୟ ବଂଦ ଥାଏ, ନଚେତ୍ ଅଳ୍ପ ଖୋଲାଥାଏ । ତେବେ ବାହାର ପଟ ଝରକା ପୂରା ବନ୍ଦ । କବାଟଟା ମଧ୍ୟ ମୁଁ ଭିତରକୁ ପଶି ଆସିଲା ମାତ୍ରେ ଆପେ ଆପେ ବନ୍ଦ ହୋଇଗଲା । ଘରର ଗୋଟିଏ କୋଣରେ ଅଳ୍ପ ପାୱାରବାଲା ଟେବୁଲ ଲେମ୍ପଟିଏ ଜଳୁଥାଏ । ସେଣ୍ଟର ଟେବୁଲ ଉପରେ କେତୋଟି ଦେଶୀ ବିଦେଶୀ ଖବର କାଗଜ ଓ ମେଗାଜିନ୍ ପଡ଼ିଥାଏ । କିନ୍ତୁ ସେ ମେଗାଜିନ ବା ଖବର କାଗଜକୁ ପଢ଼ିବା ପାଇଁ ସେ ଘରେ ଯଥେଷ୍ଟ ଆଲୁଅ ନଥାଏ । ମୁଁ ଖାଲି ଥରେ ଖଣ୍ଡିଏ ଖବର କାଗଜ ଉଠେଇ ନେଲି ଓ ପୁଣି ରଖି ଦେଲି । ଅନ୍ୟ ଦିଗରେ ଘରର ଗୋଟିଏ କୋଣରେ ଗୋଟିଏ ଛୋଟ ଟେବୁଲ ଉପରେ ପ୍ରାୟ ଚାରି ଫୁଟ ଉଚ୍ଚର ବ୍ରୋଞ୍ଜ ମୂର୍ତ୍ତିଟିଏ ଥିଲା । ଶକ୍ତ ମାଂସ ପେଶୀ ଦେଖା ଯାଉଥିବା ମୂର୍ତ୍ତିଟିର ଦେହ ଫୁଙ୍ଗୁଳା । ଆଣ୍ଠୁ ଉପରକୁ ଲୁଗା ପିନ୍ଧିଛି । କାନ୍ଧ ଉପରେ ଗୋଟିଏ ବିରାଟ ପଥର । ସେ ପଥର ଭାରରେ ଲୋକଟା ନଇଁ ପଡ଼ିଚି ।

ମୁଁ ଭାବିଲି, ଧେତ୍ । ଗୋଟାଏ ଶିବ କି କୃଷ୍ଣ କିମ୍ବା ଲକ୍ଷ୍ମୀ ସରସ୍ୱତୀଙ୍କ ମୂର୍ତ୍ତି ନ ରଖି ଏଇଟା କଅଣ ? ଯଦି ତା ନ ହେଲା, ତେବେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ଭଲ

ମୂର୍ତ୍ତି ରଖାଯାଇ ପାରିଥାଆନ୍ତା କିମ୍ବା କିଛି ନହେଲେ ଶ୍ରୀକୃଷ୍ଣ ସାରଥି ହୋଇ ଅର୍ଜୁନଙ୍କ ରଥକୁ ନେଇ ମହାଭାରତର ମହାସମର ଉଦ୍ଦେଶ୍ୟରେ କୁରୁକ୍ଷେତ୍ରକୁ ଯାତ୍ରା କରୁଥିବା ରୂପାର ତାରକସୀ କାମ ବଜାରରେ ଅନେକ ମିଳୁଛି । ସେ ତାରକସି କାମ ନ ହେଲେ ତାର ବଂଧେଇ ଫଟୋଟାଏ ଆଣିଥିଲେ ମଧ ଚଳିଥାଆନ୍ତା । ଅଥଚ ସେ ସବୁ ବଦଳରେ... ମୁଁ ବୁଝି ପାରିଲିନି ଏଇଟା କି ରୁଚି ।

ସେ ଆସିଲେ ଏବଂ ମୁଁ ତାଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କରିବା ପୂର୍ବରୁ ମୋ ପାଖ ସୋଫାରେ ଧପ୍ କରି ବସି ପଡ଼ିଲେ । ମୋତେ ବସିବାକୁ କହି ସେ ପଚାରିଲେ କେମିତ ଅଛ ? କୋଉଠି ଆଜିକାଲି ?

ସେ କଥା କହିଲା ବେଳେ ମୋତେ ଲାଗିଲା ଯେମିତି ତାଙ୍କ ଗଳାର ସ୍ୱର ଅନେକ ବଦଳି ଯାଇଛି । କେମିତି ଓ କେତେ ବଦଳି ଯାଇଛି ସେ କଥା ମୁଁ ସେତେବେଳେ ସେଇ ପରିସ୍ଥିତିରେ ଅନୁମାନ କରିପାରୁନଥିଲେ ମଧ ସ୍ୱରଟା ଯେ ବଦଳି ଯାଇଛି ଏଥିରେ ମୋର ଆଉ ସଂଦେହ ନଥିଲା । ମୋତେ 'କେମିତି ଅଛ' କହିବାରେ ଏବଂ ତାଙ୍କର ହସିବାରେ ମଧ ଜଣାଗଲା ଯେମିତି ଅନେକ କୃତ୍ରିମତା ମିଶି ଯାଇଛି । ଯେତିକି ଦରକାର ସେତିକି ହସୁଛନ୍ତି, ସେତିକି କହୁଛନ୍ତି । ମୋଟ କଥାରେ ତାଙ୍କ କଥାବାର୍ତ୍ତା ଚାଲିଚଳନ ଏକଦମ ମାପଚୁପ, ଆବଶ୍ୟକତା ଠାରୁ ଗୋଟିଏ ମିଲିମିଟର ମଧ ଆଗକୁ ନୁହେଁ କି ପଛକୁ ନୁହେଁ ।

ସେ ବେଶ୍ ମୋଟା ଓ ହୃଷ୍ଟପୁଷ୍ଟ ଦେଖାଯାଉଥିଲେ । ତାଙ୍କ ବେକର ଲମ୍ବା ଏବଂ ମୋଟା ରୁଦ୍ରାକ୍ଷ ମାଳାଟା ତାଙ୍କୁ ଗୋଟାଏ ପବିତ୍ରତାର ପ୍ରତୀକ ବୋଲି ଜଣେଇ ଦେଉଥାଏ । ତାଙ୍କ ଆଖି ଦିଟା ଆଗ ପରି ନଥିଲା । କେମିତି ଗୋଟାଏ ସତର୍କ, ସନ୍ଦିହାନୀ ଏବଂ କୌଣସି ଏକ ନାଟକର ଶିକାରିର ଆଖି ପରି ଜଣା ପଡୁଥାଏ ।

ମୁଁ କହିଲି 'ମୋତେ ଚିହ୍ନିଲେ ନା ?'

ଆରେ ଚିହ୍ନିଲି ନାହିଁ ମାନେ ? ବେଶ୍ ମନେ ପଡୁଛି । ଖାଲି ତମଂନାଁଟା ଟିକିଏ ଭୁଲି ଯାଇଛି । ଅନେକ ଦିନର କଥା ହେଲାଣି କି ନା ।

ସଙ୍ଗେ ସଙ୍ଗେ ପିପ୍ କରି କଅଣ ଶବ୍ଦଟାଏ ହେଲା । ସେ ପକେଟରୁ କଅଣଟାଏ ବାହାର କଲେ ଏବଂ କାନ ପାଖରେ ରଖି କହିଲେ, କୁହ ।

ମୋତେ କହିବାକୁ କହିଲେ ଭାବି ମୁଁ କହିବାକୁ ଯାଉଥିଲା ବେଳେ ସେ ଡାହାଣ ହାତ ଦେଖେଇ ମୋତେ ଚୁପ୍ ରହିବାକୁ କହିଲେ ।

ତାପରେ ସେ କହିଲେ, 'ମିଟିଂ ? କେତେବେଳେ ? ୧୧.୩୦ ? ଠିକ୍ ଅଛି ।... ଚିଫ୍ କଅଣ ଫେରିଲେଣି କି ?... ଫ୍ଲାଇଟ ଘଣ୍ଟାଏ ଲେଟ୍ ଅଛି ?... ଠିକ୍ ଅଛି । ମୁଁ ଠିକ୍ ସମୟରେ ପହଞ୍ଚିବି ।'

ସେ ପୁଣି ସେଇଟା ପକେଟରେ ରଖି ଦେଲେ ।

ତା ପରେ ମୋତେ କହିଲେ 'ଏଥର କୁହ ।'

ମୁଁ ମୋ ପୁଅ କଥା କହିଲି । ଏମ.ଏ ପାଶ କରିଚି । ଚାରିବର୍ଷ ହେଲା ଘରେ ବସିଚି । ମୁଁ ତ ରିଟାୟାର କଲିଣି ।

ସେ କହିଲେ, 'ସରକାରୀ ଚାକିରି କଥା ଛାଡ଼, ସେ ସବୁ ଆଉ ସ୍ୱପ୍ନରେ ମିଳିବନି । ଆହୁରି ହଜାର ହଜାର ଛଟେଇ କରିବାକୁ ହେବ । ନ କରି ଉପାୟ ନାହିଁ । ଦରମା ଦେବାକୁ ପଇସା ନାହିଁ ? ସରକାର କେମିତି ଚଳିବ ? ଟଙ୍କା କାହିଁ ? ତେବେ ତୁମେ ଯଦି କୌଣସି ପ୍ରାଇଭେଟ କମ୍ପାନୀ କଥା କହିବ ତେବେ ଦେଖିବି ।'

ମୁଁ କହିଲି 'ଯା ହେଲେ ଚଳିବ । ଯେମିତି ହେଲେ ଗୋଟାଏ କେଉଁଥିରେ ଲଗେଇ ଦିଅନ୍ତୁ । ଆଉ କିଏ ଅଛି ଯେ କାହାକୁ କହିବି ?'

ସେ ଗୋଟାଏ ବୋତାମ ଟିପିଲେ । ତାଙ୍କ ପି.ଏ. ହବ କି କଅଣ । ସେ ଆସି ଠିଆ ହେଲେ । ତାଙ୍କୁ ସେ କହିଲେ ୟାଙ୍କ ପୁଅର ନାଁ ଓ ଠିକଣା ଇତ୍ୟାଦି ଟିପନିଅ । ତାପରେ ଦୁଇ ତିନିଟା 'କମ୍ପାନୀର ନାଁ କହି ତାଙ୍କୁ କହିଲେ- ଏମାନଙ୍କ ଭିତରୁ କାହାକୁ ଗୋଟେ କହି ତାଙ୍କୁ ଟିକିଏ ରଖେଇ ଦିଅ ।

ସେ ଉଠିଲେ । ମୁଁ ବି ।

ତାପରେ ମୋତେ କହିଲେ 'ଆଜିକାଲି କମ୍ପାନୀ ଚାକିରି ମଧ ମିଳୁନି। ଦେଶ ଗୋଟାଏ ସାଂଘାତିକ ଅବସ୍ଥାକୁ ଆସି ଗଲାଣି । ତେବେ ତମର ଏଇଟା ବୋଧେ ହେଇଯିବ । ତୁମେ ୟାଙ୍କ ସହିତ ଟିକିଏ ଯୋଗାଯୋଗ କରୁଥିବ । କିନ୍ତୁ...' ସେ ଟିକିଏ ରହିଗଲେ । ତାପରେ କହିଲେ- 'ଆଜିକାଲି ଯୁଗତ ଦେଖୁଛ । ମୁଁ ଆଉ କଅଣ କହିବି ।'

ଏଥର ସେ ପି.ଏକୁ ଚାହିଁ କହିଲେ- ତମେ ୟାଙ୍କ କଥା ଟିକିଏ ବୁଝିବ । ସେ ଆମ ନିଜ ଲୋକ । ଯଦି ତମର ଅସୁବିଧା ହୁଏ ମୋତେ କହିବ ।'

ସେ ମୋ ଆଡ଼କୁ ବୁଲି ପଡ଼ି କହିଲେ- 'ମୁଁ ଯାଉଚି । ଯେତେବେଳେ ଅସୁବିଧା ହେବ ଆସିବ ।'

ସେ ଭିତରକୁ ଚାଲିଗଲେ । ତାଙ୍କ ପଛ ପଛେ ତାଙ୍କ ପି.ଏ. ମଧ ।

ମୁଁ ଧୀରେ ଧୀରେ ବାହାରକୁ ଆସିଲି । ରାସ୍ତା ଉପରକୁ ଆସିଲି । ହଠାତ୍ ମୋର ମନେ ହେଲା ରାସ୍ତାଟା ଯେମିତି ଅଚାନକ ଲମ୍ବା ହେଇ ଯାଇଛି । ଅନେକ ଲମ୍ବା ।

କେମିତି କେଜାଣି ମୋର ସେଦିନ ମଧ ରାସ୍ତାର ସେ ସ୍କେଚ୍ ସହିତ ସେ ପାଗଳର କଥୋପକଥନ କଥା ମନେ ପଡ଼ିଗଲା । ସେ ପାଗଳଟିକୁ ସେ ଦିନ ମୋର ଖୋଜିବାକୁ ଖୁବ୍ ଇଚ୍ଛା ହେଲା । ଭାବିଲି ଆଉ ଥରେ ତାକୁ ଦେଖନ୍ତି କି ? ନା, ସେ ହୁଏତ ମରି ସାରିବଣି, ଆଉ ଯଦି ବା ବଞ୍ଚିଥିବ, ସେ କଅଣ ଯାଇ ସେ ସ୍କେଚ୍‌କୁ ପଚାରୁଥିବ ତାର ସେଇ ପୁରୁଣା ପ୍ରଶ୍ନ ? କେବେ ନୁହେଁ ।

*(ନବପତ୍ର, ଜୁଲାଇ-ଅଗଷ୍ଟ-୧୯୯୮)*



ଖୋଳ

# ଅଂଧାରରେ ଅନିରୁଦ୍ଧ

ଅନିରୁଦ୍ଧ ସେମିତି ଚୁପ୍ ଚାପ୍ ବସିଥିଲା । ଶ୍ରାବଣଟା ସରି ଆସୁଥାଏ । ବର୍ଷାର ତୀବ୍ରତାବି କମି ଆସିଥାଏ । କମିଯାଇଥାଏ ହଠାତ୍ ଉଚ୍ଛେଇ ହେଇ ଆସିଥିବା ପବନ ବା ତୁଫାନ । ମେଘଟା ସଫା ଥାଏ । ନିର୍ମଳ କୁହାଯାଇ ପାରେ । ନିର୍ମେଘ ଆକାଶଟା ସଂଜ ବେଳେ ଦେଖିବାକୁ ଭଲ ଲାଗେ । ସୂର୍ଯ୍ୟ ବୁଡ଼ି ଯାଇଥିବ । ଏପଟେ ଅଂଧାର ଧୀରେ ଧୀରେ ମାଡ଼ି ଆସୁଥିବ । ପାଦ ଥାପି ଥାପି । ନିଃଶବ୍ଦରେ । କେହି ଜାଣି ପାରୁ ନ ଥିବେ । କାହାକୁ ସେ ଶବ୍ଦ ମୋଟେ ଶୁଭୁ ନଥିବ । ଅଂଧାରତ ଆସିଲା ବେଳେ ବରାବର ସେମିତି ଆସେ । ଗୋଟାଏ ପଟେ ଆଲୋକ ଧୀରେ ଧୀରେ ଲୁଚି ଲୁଚି ପଳଉ ଥିବ । କାହାକୁ ଖବର ନ ଦେଇ । କାହାକୁ ନ ଜଣେଇ । ଅଣପାରମ୍ପରିକ ଭାବରେ ବା ଯାହାକୁ କହନ୍ତି ଅନ୍‌ସେରିମୋନିଆସ୍‌ଲି । ତା ଆଡ଼କୁ କେହି ଅନଉ ନ ଥିବେ । ନିଘା କରୁ ନ ଥିବେ ଯେମିତି ଅନାବଶ୍ୟକ କି ଅଚିହ୍ନା ଅଜଣାଟିଏ ଚାଲିଯାଉଛି । ତାକୁ କେହି କେବେ ଦେଖି ନାହାନ୍ତି କି ଜାଣି ନାହାନ୍ତି । ଗାଁ ଦାଣ୍ଡରେ ଡରି ଡରି, ଭୟ ଓ ସଂକୋଚରେ ଘାରି ହେଇ ହାଡ଼ି କି ପାଣଟାଏ ସବର୍ଣ୍ଣଂକ ଭୟରେ ତଳକୁ ମୁହଁ ପୋତି ଯାଇଥାଏ । ଆଲୁଅ ସେମିତି ଯାଇଥିବ । ଯାଉ । କାହାର କଅଣ ଯାଏ ସେ ଦିନ ଯାକତ ଥିଲା । ଦାଣ୍ଡରେ ଘାଟରେ ଗଡୁଥିଲା । ଗଛ ପତ୍ରରେ ବାଗୁଡ଼ି ଖେଳୁଥିଲା । ମାଂକଡ଼ମାନଂକ ସାଥିରେ ଏ ଡାଳରୁ ସେ ଡାଳକୁ ଡେଉଁଥିଲା । ସମସ୍ତେ ଦେଖିଚନ୍ତି । କିଏ ଦେଖିନି କି ? କାହାର କ'ଣ କରି ପକଉଥିଲା ? ଆମେ କଅଣ ଆଲୁଅକୁ ଦେଖୁନୁଁ ? ଦେଖୁନୁଁ ତାର ଆଦବ କାଇଦା ? ତାର ବହ୍ବାଡ଼ମ୍ବରର ଆସିବା ଓ ତାର ହଟଚମଟ ଦେଖେଇବାର ଢ଼ଂଗ । ସେ ଆସିବାରେ ବା କି ମୂଲ୍ୟ ଅଛି ? ରାଜନେତାମାନେ ସେମିତି ଆସୁନାହାନ୍ତି କି ? ଆସୁନାହାନ୍ତି କି ସେମାନେ କେତେ ଥାଟରେ ? କଣ ଦେଖିବ ତାଙ୍କର ସେ ଫୁଲ ଫୁଟା ଶୋଭାକୁ ? କଅଣ ଦେଖିବ ତାଂକର ସେ ବାହାପିଆ କଥାକୁ ? ଆଲୁଅ ସେମିତି ଆସେ । ଖାଲି ଆଖିକୁ ଝଲସେଇ ଦିଏ । କଣ ତାର ମୂଲ୍ୟ ?

ଆଉ ଅନ୍ୟପଟେ ବାଛିମାରି ଛିଡି ଯାଇଥିବା ପଶାପାଲିର ଖେଳୁଆଡ଼ ପରି ହସି ହସି କୁରୁଳି ଉଠି ଆସୁଥିବ ଦାମ୍ଭିକ ଅଂଧାର । ଦେଶ ଜିଣୁଥିବା ସୈନ୍ୟମାନଂକ ପରି । ଗାଁ, ନଈ, ବିଲ, ମାଳ, ବଣ , ପାହାଡ଼, ପର୍ବତ ନମାନି ମାଡ଼ି ମାଡ଼ି ଆସୁଥିବା ଶୀତ ଦିନର କୁହୁଡ଼ି ପରି । ଅଂଧାର-ଖାଲି ଅଂଧାର । ମେଞ୍ଚାକୁ ମେଞ୍ଚା । ନଈ ବଢ଼ି ପରି ମାଡ଼ି ଆସୁଥିବ । ଦେଖିବ ସେତେବେଳେ ଅଂଧାରର ପରାକ୍ରମକୁ ।

ଅନିରୁଦ୍ଧ ତାକୁଇ ବସି ଦେଖୁଥିଲା । ଦେଖୁଥିଲା ହାରିଯାଇ ଥରକୁ ଥର ପଛକୁ ଫେରି ଦେଖୁଥିବା ଏବଂ ଅତର୍କିରେ ଦଉଡୁଥିବା ଆଲୋକର ଗତିକୁ । ଏବଂ ତା ପଛରେ ବୀର ଦର୍ପରେ, ରେ ରେ କାର କରି ଗୋଡ଼ାଉ ଥିବା ଅଂଧାରକୁ, ତାର ଛବିକୁ। ତାର ପାରିଲା ପଣକୁ, ତା ଗର୍ଜନକୁ । ତାର ବୀରତ୍ୱର ହୁଂକାରକୁ ଓ ତା ସ୍ପର୍ଦ୍ଧାକୁ । ଅଂଧାର ଭାବୁଥିଲା ଏଇନେ ଯଦି ସେ ଥରେ ଆଲୋକକୁ ଧରି ପାରନ୍ତା, ତାକୁ କାବୁ କରି ପାରନ୍ତା, ତାର ବେକଟାକୁ ଏଇଠି ମୋଡ଼ି ଦିଅନ୍ତା । ତାକୁ ଦଳି ମକଚି ମାଟିରେ ମିଶେଇ ଦିଅନ୍ତା । ଚିର ଦିନକୁ ତାକୁ ଓ ତାର ନାଁକୁ ସିଲଟରେ ଗାର ପୋଛିଲା ପରି ପୋଛି ଦିଅନ୍ତା ।

ଅଂଧାର ଜାଣେଁ ଆଲୁଅ ହିଁ ତାକୁ ହୀନସ୍ତା କରେ । ଆଲୁଅ ତାର ଏକମାତ୍ର ଶତ୍ରୁ । ସେ ଶତ୍ରୁକୁ ଶେଷ ନ କଲା ଯାଏ ତାର ବିଶ୍ରାମ ନାହିଁ ।

ଅନିରୁଦ୍ଧ ଦେଖୁଥିଲା ସତକୁ ସତ ଯହୁଁ ଯହୁଁ ଅଂଧାର ସାରା ପୃଥିବୀଟାକୁ ଆକ୍ରମଣ କରି କରାୟତ୍ତ କରିପକାଉଚି, ରାହୁ ଚନ୍ଦ୍ରକୁ ଗ୍ରାସ କଲାପରି ପାଟି ଆଁ କରି ଗିଳି ପକାଉଚି, ସେତିକି ଆଲୋକ ଛାଟିପିଟି ହେଉଚି । ମୋତେ ରକ୍ଷାକର ରକ୍ଷାକର କହି ପ୍ରାଣ ମୂର୍ଚ୍ଛା ଦଉଡୁଚି ।

ଅନିରୁଦ୍ଧ ଦେଖିଲା ଆଲୋକର ଦଉଡ଼ିବାର ଯେମିତି ଶେଷ ନାହିଁ, ଅଂଧାରର ଗୋଡ଼େଇବାର ବି ସେମିତି ଶେଷ ନାହିଁ । ସୃଷ୍ଟିର ଆବହମାନ କାଳରୁ ସେ ଦୌଡ଼ା ଦୌଡ଼ି ସେମିତି ଚାଲିଚି । ଆରମ୍ଭରୁ ସେ ଅଛିଣ୍ଡା ପ୍ରଶ୍ନଟା ସେମିତି ଅମିମାଂସିତ ହେଇ ରହି ଆସିଚି ।

ଆସ୍ତେ ଆସ୍ତେ ଅଂଧାରଟା ଅନିରୁଦ୍ଧକୁବି ଘୋଡ଼ାଇ ପକାଇଲା । ତାର ଦେହ, ହାତ, ଗୋଡ଼, ମୁହଁ, ନାକ, ଆଖି ଓ କାନ ଓ ତାର ସମଗ୍ର ସତ୍ତାକୁ ଅଂଧାର ଲୋପ କରିଦେଲା । ଅନିରୁଦ୍ଧ ଆଶ୍ଚର୍ଯ୍ୟ ହେଲା ଆରେ କଣ ହେଲା ? ସେ କାହିଁ ? ସେ କୁଆଡ଼େ ଗଲା ? କୁଆଡ଼େ ଗଲା ଅନିରୁଦ୍ଧର ଶରୀର । ଅଂଧାର ତାକୁ ଅଶରୀରି କରି ଦେଲା କି ? ଅଂଧାରର ଅତ୍ୟାଚାର ତାର ଅସ୍ତିତ୍ୱକୁ ବି ଲୋପ କରି ଦେଲା ?

ଆଃ କେମିତି କିଟି କିଟି ଅଂଧାର ? ଚିନ୍ତା କଲା ଅନିରୁଦ୍ଧ । ସେ ଅଂଧାରକୁ

ଦେଖିପାରୁଚି । ଅଥଚ ଅଂଧାରରର ଅସ୍ତିତ୍ୱ ନାହିଁ । ସେ ନିଜେ ଅଛି । ତାର ଅସ୍ତିତ୍ୱ ଅଛି । ଅଥଚ ଅଂଧାର ତାକୁ କବଳିତ କରି ଦେଇ ଥିବାରୁ ତାର ଅସ୍ତିତ୍ୱ ମିଳୁ ନାହିଁ । ଅର୍ଥାତ୍ ଯାହାର ଅସ୍ତିତ୍ୱ ନାହିଁ, ସେ ମିଳୁଚି, କିନ୍ତୁ ଯାହାର ଅସ୍ତିତ୍ୱ ଅଛି ସେ ମିଳୁନି ।

ବିଚିତ୍ର କଥା । ଆଶ୍ଚର୍ଯ୍ୟ କଥା ମଧ । ଚାରିଆଡ଼େ ଅଂଧାରରର ଅଖଣ୍ଡ ରାଜତ୍ୱ । ସେ ମଣିମୟ ସିଂହାସନରେ ଅଂଧାର ଏବେ ଗାର୍ବ୍ବେନସୀନ ହୋଇ ରାଜୁତି କରୁଚି । ସେ ଗୋଟିକ ପରେ ଗୋଟିଏ ରାଜ୍ୟ ଜୟ କରି ଚାଲିଚି । ନିଜର ବିଜୟ ପତାକା ଉଡ଼େଇ ଚାଲିଚି । ଅନିରୁଦ୍ଧ ଦେଖିଲା ଅଂଧାରରର ଶାସନ । ତାର ପ୍ରଭାବସ୍ପଳତା । ତାର ମାୟା, ମମତା । କେହି କିଛି ଦେଖିପାରୁ ନ ଥିଲେ ସମସ୍ତେ ଭଲରେ ଅଛନ୍ତି ବୋଲି ଭାବିବାର କଥା । ଯେଉଁଠି କିଛି ଦେଖା ନଯାଏ ସେଠି ଭଲ ମନ୍ଦର ବାଛ ବିଚାର ନ ଥାଏ । ଭଲ ମନ୍ଦ ଭିତରେ ଗାର ଟାଣି ହୁଏନା । ସେମାନଙ୍କ ଭିତରେ ସୀମାରେଖା ଟାଣି ଅଲଗା କରି କାହାକୁ ଦେଖେଇ ହୁଏନା । ଅଂଧାରଟା ସେ ଦୁଇ ଅଲଗା ରାଜ୍ୟକୁ ମିଶେଇ ଏକାକାର କରି ଦିଏ । ସମୁଦ୍ର ପାଣିରେ ନଈ ପାଣି ମିଶିଲା ପରି ନିର୍ମଳ ଓ ଗୋଳିଆ ସବୁ ସମାନ । ଦେଖିବା ଲୋକ କିଛିବି ବାରି ପାରେନା ।

ଅନିରୁଦ୍ଧ ଏଥର ନିଜକୁ ଖୋଜିଲା । ସେ ତାର ଦୁଇ ହାତରେ ନିଜ ଦେହ, ମୁଣ୍ଡ, ସବୁକୁ ଅଣ୍ଡାଳିଲା । ସବୁଠି ହାତ ମାରି ଦେଖିଲା ଏବଂ ପରଖିଲା । ଦେଖିଲା ସବୁତ ଠିକ୍ ଅଛି । ସବୁ ଯେମିତି ଥିଲା ସେମିତି ଅଛି, ଯଥା ସ୍ଥାନରେ ଅଛି । କେବଳ ଗୋଟିଏ କଥା ନାହିଁ । ସେ ମୁଣ୍ଡ, ସେ ଛାତି, ପେଟ ଗୋଡ଼ ଏ ସବୁ ଯେ ତାର ସେ ପ୍ରମାଣ କାହିଁ ? ସେ ଭାବିଲା ମୁଁ ଦେଖି ପାରୁଥିଲେ ସିନା ମୋର ବୋଲି କହନ୍ତି, ଦେଖି ପାରୁ ନଥିଲେ କେମିତି ମୋର ବୋଲି କହିବି ? ଅଂଧାର ଗୋଟିଏ ନିରାଟ ସତ୍ୟକୁ ଲୁଚେଇ ପକାଉଚି । ସତ୍ୟକୁ ଲୁଚେଇ ପକେଇବା କ୍ଷମତା କେବଳ ଅଂଧାରରହିଁ ଥାଏ ।

ସେ ଚିନ୍ତାରେ ପଡ଼ିଲା । ଅଂଧାରରର କରାମତି ସେ ସେତେବେଳେ ଭଲ ଭାବରେ ବୁଝି ପାରିଲା । ସେ ବୁଝିଲା ଯେ ଆଲୋକ ଅପେକ୍ଷା ଅଂଧାର ଯଥେଷ୍ଟ ପରାକ୍ରମୀ । ସେ ଏପରି ଅଲୌକିକ କ୍ଷମତାର ଅଧିକାରୀ ଯେ ସେ ବସ୍ତୁକୁ ଅବସ୍ତୁରେ, ଏବଂ ଅସ୍ତିକୁ ନାସ୍ତିରେ ପରିଣତ କରି ଦେଇପାରେ । ସେ ସତ୍ୟକୁ ମିଥ୍ୟାରେ, ଦେବତାକୁ ରାକ୍ଷସରେ, ଜନ୍ମକୁ ମୃତ୍ୟୁରେ ଏବଂ ଏପରିକି ମଣିଷକୁ ପଶୁରେ ମଧ ରୁପାନ୍ତରିତ କରିପାରେ ।

ଅନିରୁଦ୍ଧ ଦେଖିଲା ଅଂଧାରଟା ଆସ୍ତେ ଆସ୍ତେ ଭୟଙ୍କର ହେଇଉଠୁଚି । ସେ ତାର ଭୀଷଣ ରୂପର କାୟା ବିସ୍ତାର କରୁଚି । ସେ ବିଶାଳ କାୟା ଭିତରେ ଯୁଗ ଯୁଗର ଭୟାବହତା ଆହୁରି ବିକଟାଳ ରୂପ ଧାରଣ କରୁଚି । ବିରାଟ ବିରାଟ ଆଖି ଲହ ଲହ

ଛିଦ୍ର, ବିଶାଳକାୟ ଦାନ୍ତ, ପାତାଳ ଗର୍ତ୍ତର ପାଟି ଯେମିତି ଆଁ କରି ରହିଚି । ଇସ୍ ସମଗ୍ର ପୃଥିବୀଟାକୁ ଗିଳି ଦେବ କି ? ଚଳୁ କରି ଦେବକି ସମଗ୍ର ସୃଷ୍ଟି ସତ୍ତାର ମହିମାନ୍ୱିତ ମହତ୍ୱକୁ ? ଅଗସ୍ତି ପରି ଗୋଟାଏ ଆଂଜୁଳାରେ ପିଇ ଯିବ ସବୁ ? ଅନିରୁଦ୍ଧ ଡରରେ ଆଖି ବୁଜି ଦେଲା । ଆଖି ବୁଜି ସେ ଅଂଧାରର ଆକ୍ରମଣରୁ ବର୍ତ୍ତି ଯିବାକୁ ଚେଷ୍ଟା କଲା । କିନ୍ତୁ ସେ ଜାଣି ନଥିଲା ଆଖି ବୁଜି ଦେଲେ ମଧ ଅଂଧାର । ଅଂଧାର ଏପରି ଏକ ସତ୍ତା ଯାହା ଆଖି ଖୋଲିଲେ କି ବୁଜିଲେ ଏକା ପରି ଉଗ୍ର, ଭୀମ, ଭୟଙ୍କର ଓ ଭୀଷଣ ଦେଖାଯାଏ । ମୃତ୍ୟୁର ଭୟ ଅପେକ୍ଷା ଅଂଧାରର ଭୟ ଅନିରୁଦ୍ଧକୁ ଆହୁରି ଭୟଂକର ମନେ ହେଲା ।

ସେ ଦୁଇ ବାହୁ ଟେକି ଶକ୍ତ ହାତ ମୁଠା କରି ଠିଆ ହେଇ ପଡ଼ିଲା ଏବଂ ଚିତ୍କାର କରି ଡାକିଲା, ''ଅନିରୁଦ୍ଧ ତୁମେ କେଉଁଠି ?'' କିଛି ସମୟ ପରେ ପବନରେ ପୁଣି ଭାସି ଆସିଲା, ଅନିରୁଦ୍ଧ ତୁମେ କେଉଁଠି ?

ଅନିରୁଦ୍ଧ ବୁଝିଲା ସେ ହୁଏତ ଅଂଧାରରେ ହଜିଯାଇଚି । ସେ ଅଂଧାରର ଅତଳଗହ୍ୱରରେ ଲୁଚି ଯାଇଚି । ସେ ପୂରାପୂରି ପାତାଳକୁ ଚାଲିଯାଇଛି । ସେ ତାର ଆତ୍ମସତ୍ତା ହରାଇଚି ।

ତେବେ ଉପାୟ ? ଅନିରୁଦ୍ଧ ସେଥିରୁ ମୁକ୍ତି ପାଇବାର ଉପାୟ ଖୋଜିଲା । ସେ ଗଭୀର ଭାବରେ ଚିନ୍ତା କରିବାକୁ ଲାଗିଲା । ଅଂଧାରରୁ ମୁକ୍ତି ପାଇବାର କଣ କିଛି ଉପାୟ ନାହିଁ ? କେହି କଅଣ ସେ ଉପାୟର ସୂତ୍ରଟିଏ କେବେ ଖୋଜି ନାହାନ୍ତି ? ଅନ୍ଧାରତ ଏବେ ସୃଷ୍ଟି ହେଇ ନାହିଁ, ଆଲୋକର ସୃଷ୍ଟି ପୂର୍ବରୁ ଅନ୍ଧାର ଜନ୍ମ ହେଇ ସାରିଥିଲା । ସେତେବେଳେ କେବଳ ଅନ୍ଧାର ଜନ୍ମ ହେଇ ସାରିଥିଲା । ସେତେବେଳେ କେବଳ ଅନ୍ଧାର ହିଁ ଥିଲା । ଯେତେବେଳେ ମୋଟେ କିଛି ନଥିଲା, ସେତେବେଳେ ଅନ୍ଧାର କେବଳ ତା ବିଶାଳ ରାଜ୍ୟର ରାଜା ଥିଲା । ଆଉ ସମଗ୍ର ଆକାଶ ମହାକାଶକୁ ବ୍ୟାପି ଥିଲା ବେଳେ ଅନ୍ଧାର ନିଜକୁ କେତେ ଭାଗ୍ୟବାନ ମନେ କରୁନଥିବ ସତେ । ଯୁଗ ଯୁଗର ଅଖଣ୍ଡ ରାଜତ୍ୱକୁ କେବଳ ଅନ୍ଧାର ଛଡ଼ା ଆଉ କିଏ ବା ଉପଭୋଗ କରୁ ଥିବ ସେତେବେଳେ ? ଅନିରୁଦ୍ଧ ଭାବିଲା ଚିନ୍ତା ଓ ଚେତନା ପାଉ ନ ଥିବା ସମୟରୁ ଆଜିଯାଏ ଅନ୍ଧାର କବଳରୁ ମୁକ୍ତିରପଥ କେହି କଣ କେବେ ଖୋଜି ନାହାନ୍ତି ?

ଅନିରୁଦ୍ଧର ହଠାତ୍ ମନେ ପଡ଼ିଲା, ଆରେ ମଣିଷର ଜନ୍ମ ମଧ ଅଂଧାରରେ । ପ୍ରଥମେ ସେ ଅଂଧାରରେ ଜନ୍ମ ଲାଭ କରେ । ତା ପରେ ସେ ଆଲୋକକୁ ଆସେ କାହିଁକି ଏମିତି ହୁଏ ? ଅଂଧାରକୁ ବାଦ ଦେଇ କଅଣ ସୃଷ୍ଟି ସମ୍ଭବ ନୁହେଁ ? ସୃଷ୍ଟି ପାଇଁ ଅଂଧାର କଅଣ ଅନିବାର୍ଯ୍ୟ କି ? ମଣିଷର ସୃଷ୍ଟି ସତ୍ତା ଯଦି ପ୍ରଥମେ ଆଲୋକରେ

ସମ୍ଭବ ହେଇ ଥାଆନ୍ତା, ତେବେ କଅଣ ହେଇ ଥା<ାନ୍ତା ? ସେ ପୁଣି ଭାବିଲା ଯଦି ସେପରି ହେଇନାହିଁ, ତେବେ ଏବେ ସୃଷ୍ଟିରେ ଆଲୋକ ଓ ଅଂଧାର ଦୁହେଁ ଦୁଇ ଭାଇ ପରି ଭାଗ ବଂଟୁର ହେଇ ଚିର ଦିନକୁ ରହିଥିବେ ଏମିତି ନିୟମଟିଏ କେହି କରି ଦେଇଚିକି ? ଯଦିବା କେହି କରି ଦେଇ ଥାଏ ତାକୁ ବଦଳେଇ ଦେଇ ହେବ ନାହିଁକି ?

ଅନିରୁଦ୍ଧ ଆତୀତକୁ ସ୍ମରଣ କଲା । ଯେ ପର୍ଯ୍ୟନ୍ତ ତାର ସ୍ମରଣ ଶକ୍ତି ଯାଇ ପାରୁଚି ସେ ପର୍ଯ୍ୟନ୍ତ ଖୋଜିଲା । ସବୁ ଶାସ୍ତ୍ର ପୋଥି ପୁରାଣ ଗ୍ରନ୍ଥ ଓ ଶିଳା ଲେଖ ସବୁ ତନ ତନ କରି ସେ ଖୋଜିଲା । ଆହୁରି ପଛକୁ ସେ ଗଲା । ସ୍ତର ସ୍ତର ସ୍ତୁପିକୃତ ଶିଳା ମାଟିତଳୁ ଖୋଳି ବାହାର କଲା ଅନିରୁଦ୍ଧ । ଅନେକ ଖୋଜିଲା । ପାତାଳକୁ ମଧ ସେ ଗଲା । କିନ୍ତୁ କାହିଁ ?

ସେ ନିରାଶ ହେଲା । ଅଂଧାରକୁ ଜୟ କରିବାର କୌଣସି ପଥ ସେ ଦେଖିଲା ନାହିଁ । ଅଂଧାର ସହ ଲଢ଼ିବାର କୌଣସି ଅସ୍ତ୍ର ଆଜିଯାଏ ଆବିଷ୍କୃତ ହୋଇ ନାହିଁ କି ଅଂଧାରକୁ କାରାରୁଦ୍ଧ କରିବାର କୌଣସି ମନ୍ତ୍ର ମୁନିଋଷି ମାନେ କେବେ ଲେଖି ନାହାନ୍ତି । ଅନ୍ତତଃ ସେମିତି କିଛି ଥିବାର ସେ ଜାଣି ନାହିଁ ବୋଲି ତାର ମନେ ହେଲା ।

ତେବେ ଅଂଧାର କଅଣ ଅଜେୟ ? ଯୁଗେ ଯୁଗେ ସେ ଏମିତି ସୃଷ୍ଟିକୁ କବଳିତ କରି ଥିବ ?

ଅନିରୁଦ୍ଧ ମଣିଷମାନଂକ କଥା ଭାବିଲା । ସେ ଭାବିଲା ମଣିଷ ଯଦି ଏତେ ଶକ୍ତିମାନ (ଅନ୍ତତଃ ଏମିତି ଗୋଟାଏ ଧାରଣା ସେ ଏଯାଏ ସମସ୍ତଙ୍କୁ ଦେଇ ଆସିଚି) ମଣିଷ ଯଦି ଏତେ ପରାକ୍ରମୀ, ମଣିଷ ଯଦି ଦେବତାର ପରିମାର୍ଜିତ ସଂସ୍କରଣ, ସର୍ବଶ୍ରେଷ୍ଠ ପରିଗ୍ରହ, ମଣିଷ ଯଦି ସର୍ବୋତ୍ତମ ତେବେ ଏ ଯାଏ ଅଂଧାରକୁ ଜୟ କରି ପାରି ନାହିଁ କାହିଁକି ? କାହିଁକି ସେ ନିଜେ ଯୁଗ ଯୁଗ ଧରି ତାର ବଶ୍ୟତା ସ୍ୱୀକାର କରି ଆସିଚି ? କାହିଁକି ସେ ଅଂଧାରକୁ ଦେଖିଲା ମାତ୍ରେ ଭୟରେ ଜଡ଼ ସଡ଼ ହେଇ ପଡ଼େ ? ବିପଦର ଆଶଙ୍କାରେ ଭୟଭୀତ କଇଁଛ ପରି ମୁଣ୍ଡଟାକୁ ଖୋଳପା ଭିତରେ ପୂରେଇ ଆଖି ବୁଜି ଚୁପ୍ ଚାପ୍ ବସିଯାଏ ? ଏବଂ ଅଂଧାର ଅପସରି ଯିବା ଯାଏ ଅପେକ୍ଷା କରେ ନିର୍ବେଦ ଓ ନିସ୍ତେଜ ହେଇ ?

ଅନିରୁଦ୍ଧ ଏବେବି ଅଂଧାରର କବନ୍ଧ ଭିତରେ ଅବରୁଦ୍ଧ । ଯୁଗରୁ ଯୁଗକୁ ସ୍ୱର୍ଗରୁ ପାତାଳକୁ, ଆକାଶରୁ ମହାକାଶକୁ ସେ ଟାଣି ଓଟାରି ବିଦାରୀ ପକାଉଚି ଏବଂ ଖୋଜୁଚି ତାର ସେଇ ଗୋଟିଏ ଉତ୍ତର ।

(ସପ୍ତର୍ଷି - ୧୯୯୮)



ଖୋଳ